# ଭାଗବତ କଥା

( ଊନଚତ୍ୱାରିଂଶ ଖଣ୍ଡ )

ଲେଖକ :

ଶ୍ରୀ ପ୍ରଭୁଦତ୍ତ ବ୍ରହ୍ମଚାରୀ

ସମ୍ପାଦନା :

ଡକ୍‌ଟର କୃଷ୍ଣପ୍ରସାଦ ମିଶ୍ର

ଅନୁବାଦକ :

ଡକ୍‌ଟର ଭଗବାନ ପଣ୍ଡା

ପ୍ରକାଶକ :



ଧର୍ମଗ୍ରନ୍ଥ ଷ୍ଟୋର

# ଭାଗବତ କଥା

ଊନଚତ୍ୱାରିଂଶ ଖଣ୍ଡ

ପ୍ରକାଶିକା :
ଶ୍ରୀମତୀ ଅନ୍ନପୂର୍ଣ୍ଣା ମିଶ୍ର
କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର
ବାଲୁବଜାର, କଟକ-୭୫୩୦୦୨
ପ୍ରକାଶନ ଉପଦେଷ୍ଟା :
ଡକ୍ଟର କୃଷ୍ଣପ୍ରସାଦ ମିଶ୍ର
ପ୍ରଥମ ସଂସ୍କରଣ : ୧୯୯୧
ପ୍ରଚ୍ଛଦ :
ଅସିତ୍ ମୁଖାର୍ଜୀ
ମୁଦ୍ରଣ :
କଲ୍ୟାଣୀ ପ୍ରିଣ୍ଟର୍ସ
ପିଠାପୁର, କଟକ-୧
ମୂଲ୍ୟ :
ସାଦା —ଟ ୧୯-୦୦
ବନ୍ଧାଇ—ଟ ୨୨-୦୦

# BHAGABAT KATHA

( Thirtynine Part )

Sri Prabhudatta Brahmachari

Publisher :
Srimati Annapurna Mishra
Cuttack Students' Store
Balubazar, Cuttack-753002
Publication Adviser :
Dr. K. P. Mishra
First Edition : 1991
Price :
Popular—Rs. 19 00
Deluxe—Rs. 22 00

# ସୂଚୀ

ବିଷୟ | ପୃଷ୍ଠା
---|---

# ଭୂମିକା

## ଅତୀତର ସ୍ମୃତି

ଅପି ନଃ ସ୍ମର୍ଯ୍ୟତେ ବ୍ରହ୍ମନ୍ ବୃତ୍ତଂ ନିବସତାଂ ଗୁରୌ ।
ଗୁରୁଦାରୈଶ୍ଚୋଦିତାନାମିନ୍ଧନାନୟନେ କ୍ୱଚିତ୍ ॥

ଶ୍ରୀ ଭା ୧୦ ସ୍କ, ୮ ଅ, ୩୫ ଶ୍ଳୋକ

### ଛପ୍ପୟ

ହାୟ ! କହାଁ ମମ ଗୟୋ ବାଲପନ ପ୍ରତୋ ବତାଓ ।
ଅରେ, ମୋଇ କର କୃପା ନେକ ଗୃହ ଦୃଶ୍ୟ ଦିଖାଓ ॥
ସେର ହୋତ ଭଟି ଖାତ ଖେଲ ମେଁ ସମୟ ବିତାଓ୍ୱତ ।
ହଁସତ ହଁସାଓ୍ୱତ ରହତ ପ୍ୟାର ସବହୀ କୋ ପାଓ୍ୱତ ॥
ସଖନ ସଙ୍ଗ ସୁଖତେଂ ସରୟୁ, ଖେଲେଂ ଖେଲ ଅନେକ ଜତ ।
ଚହଲ ପହଲମହଁ ଧନ କଟତ, ଚିନ୍ତା ଲପଟେ ନହୀଁ ରତି ॥

ସେଦିନର ଘଟଣାବଳୀ ଆଜି ସ୍ୱପ୍ନ ପରି ମନେ ହେଉଛି । ସେଦିନ ଆଜି ଅତୀତର ଗର୍ଭରେ ବିଲୀନ ହୋଇଯାଇଛି ; କିନ୍ତୁ ତା'ର ସ୍ମୃତି ମାତ୍ର ଅବଶେଷ ରହିଛି, ଆଉ ତାହା ହିଁ ମୋର ମୂଳ ସମ୍ପତ୍ତି । ସେହି ପିତା ଫଳର ଭୁଞ୍ଜି, କଞ୍ଚା କସ୍ପାଁ, କଅଁଳିଆ ତେନ୍ତୁଳିପତ୍ର ଓ କଞ୍ଚା ଆମ୍ବ ଆଉ ଜୀବନରେ ଖାଇବାକୁ ମିଳିବ ନାହିଁ । ସେଗୁଡ଼ିକ ମିଳିଲେ ବି ଏବେ ଆଉ ଖାଇବା ସମ୍ଭବ ନୁହେଁ । ବାଜରା, ମକା ପ୍ରଭୃତିର ସେକା ରୋଟି ଖାଇବାରେ ଯେଉଁ ଆନନ୍ଦ ତାହା ଏବେ ରସଗୋଲାରେ ମିଳିବା ସମ୍ଭବ ନୁହେଁ । କଞ୍ଚା ଆମ୍ବର ଚଟଣି, ଲଙ୍କା ଆଳୁର ସହିତ ଗରମ ଟୁମକା ରୋଟି ଖାଇବାରେ ଯେଉଁ ସନ୍ତୋଷ ମିଳୁଥିଲା ତାହା ଆଜିକାଲି ତେଲ, ଘିଅ, ମସଲାଦିଆ ତରକାରୀରେ କେଉଁଠୁ ମିଳିବ ? ଅତୀତର ସେହି ଆନନ୍ଦ ଆଉ ସନ୍ତୋଷ ଆଜି ଦୁର୍ଲଭ ହୋଇଯାଇଛି । ସାଙ୍ଗସାଥି ମେଳରେ ଧୂଳିବାଲିରେ ଖେଳିବା, ଦୁଇପହରର ଖରାରେ ଏଣେତେଣେ ବୁଲିବା, ମୁଷଳଧାରାରେ ବର୍ଷା ହେଉଥିବାବେଳେ ନୂଆ ପାଣିରେ ଖେଳିବା ଆଜି ଅତୀତର ସ୍ମୃତି ପାଲଟି ଗଲାଣି । ଆଜି

ସେସବୁ କଥା ମନେ ପଡ଼ିଲେ ହୃଦୟରୁ କୋହ ଝରୁଛି । କ'ଣ ଥିଲି ହେଲି କ'ଣ ? ବଡ଼ ହେବାର ଯେଉଁ ଅଦମ୍ୟ ଅଭିଳାଷ, ତାହା ବାଲ୍ୟସୁଲଭ ଚପଳତା, ସରଳତା, ନିର୍ଭୟତା ଓ ସାହସକୁ ନଷ୍ଟଭ୍ରଷ୍ଟ କରିଦେଇଛି ଏବଂ ସୁଖ, ସନ୍ତୋଷ, ଆନନ୍ଦରୁ ଦୁଃଖମୟ ଅବସ୍ଥା ଭିତରକୁ ଟାଣିନେଇଛି । ଏ ବିଷୟରେ ଏକ ଉଦାହରଣ ଦିଆଯାଇପାରେ ।

ଜଣେ ମହାତ୍ମା ଥିଲେ । ନିଜର ଶିଷ୍ୟକୁ ସେ ସବୁବେଳେ କହୁଥିଲେ—"ବାପ ! କେବେ କିଛି ଗୋଟାଏ ହେବୁ ବୋଲି ଆଶା କରିବୁ ନାହିଁ । ଯେ କିଛି ହେବ ସେ ଦୁର୍ଗତିରେ ବୁଡ଼ିଯିବ; କିନ୍ତୁ ଶିଷ୍ୟ ବିଚରା ଗୁରୁଙ୍କ କଥାର ମର୍ମ କ'ଣ ତାହା ବୁଝିପାରୁ ନ ଥିଲା ।

ଦିନେ ଗୁରୁଶିଷ୍ୟ ଦୁହେଁ ଗୋଟିଏ ଜାଗାକୁ ଯାଉଥିଲେ । ବାଟରେ ଏକ ସୁନ୍ଦର ଉଦ୍ୟାନ ପଡ଼ିଲା । ଗୁରୁ ଥିଲେ ଫକଡ଼ଶ୍ରମ ଗିରିଧାରୀ; କିନ୍ତୁ ଉଦ୍ୟାନରେ ସୁନ୍ଦରଭାବେ ସଜା ହୋଇଥିବା ଏକ ଘର ଥିବାର ଦେଖି ଗୁରୁଙ୍କ ମନରେ ଆନନ୍ଦ ଜାତହେଲା । ସେ ଶିଷ୍ୟକୁ କହିଲେ—"ବାପ ! ଆମେ ତ କ୍ଳାନ୍ତ ହୋଇପଡ଼ିଛେ । ଚାଲ ଏହି ଘରେ କିଛି ସମୟ ବିଶ୍ରାମ ନେବା ।"

ଏହାପରେ ଗୁରୁଶିଷ୍ୟ ଦୁହେଁ କାହାରିକୁ ନ କହି, ନ ଜଣାଇ ସେହି ଉଦ୍ୟାନର ସୁସଜ୍ଜିତ ଘରଭିତରକୁ ପଶିଗଲେ । ସେହି ଘରେ ରାଜା ଓ ରାଣୀଙ୍କ ପାଇଁ ପୃଥକ୍‌ଭାବେ ସଜା ହୋଇଥିବା ଦୁଇଟି ଶେଯରେ ଗୁରୁ ଓ ଶିଷ୍ୟ ଶୋଇପଡ଼ିଲେ । ଗୁରୁ ଗୋଟିଏ କୋଠରିରେ ଓ ଶିଷ୍ୟ ଅନ୍ୟ ଏକ କୋଠରିରେ ଶୋଇଗଲେ ।

କିଛି ସମୟ ପରେ ରାଜା ଓ ରାଣୀ ଆସି ପହଞ୍ଚିଲେ । ନିଜ ଶେଯରେ ଜଣେ ଅପରିଚିତ ବ୍ୟକ୍ତିକୁ ଶୋଇଥିବାର ଦେଖି ରାଜା ରାଗିଯାଇ ପଚାରିଲେ—"ତୁ କିଏ, ଏଠାରେ କିପରି ଶୋଇଲୁ ?"

ଗୁରୁଜୀ ସବୁକଥା ବୁଝିପାରୁଥିଲେ । ସେ କିଛି କହିଲେ ନାହିଁ । ରାଜାଙ୍କ ଆଡ଼କୁ ଚାହିଁ ସେ କେବଳ ହସିବାକୁ ଲାଗିଲେ । ଗୁରୁଜୀ ଭୟ କରୁନାହାନ୍ତି କି କିଛି ଉତ୍ତର ଦେଉନାହାନ୍ତି । ଏହା ଲକ୍ଷ୍ୟ କରି ରାଜା କହିଲେ—"ବୋଧହୁଏ ଲୋକଟା ଏକ ପାଗଳ । ଶୀଘ୍ର ଏହାକୁ ବାହାର କରିଦିଅ । ଏହାପରେ ସେବକମାନେ କହିବାରୁ ଗୁରୁ ବାହାରକୁ ଚାଲିଗଲେ । ତାଙ୍କର କୌଣସି ଅସୁବିଧା ହେଲାନାହିଁ ।"

ରାଜା ପୁଣି ଭିତର ଘରକୁ ଯାଇ ଦେଖିଲେ ସେଠାରେ ବି ଜଣେ ଅପରିଚିତ ବ୍ୟକ୍ତି ଶୋଇଛି । ରାଜା ପଚାରିଲେ—"କିଏ ତୁ ?"

ଶିଷ୍ୟ ତ ପିଲାଲୋକ । ଗୁରୁଙ୍କ ପରି ବୁଦ୍ଧି ତା'ର ପାକଳ ହୋଇ ନ ଥିଲା ; ତେଣୁ ରାଜାଙ୍କ ପ୍ରଶ୍ନରେ ହଡ଼ବଡ଼େଇ ଯାଇ ଶିଷ୍ୟ କହିଲା—"ଆମେ ସାଧୁ ମହାତ୍ମା ।"

ରାଜା କ୍ରୋଧାନ୍ୱିତ ହୋଇ ପଚାରିଲେ—"ସାଧୁ କ'ଣ ଏହିପରି ହୁଅନ୍ତି ? କିଛି ନ ପଚାରି ବୁଝି ସାଧୁ କ'ଣ ଯାହା ତାହା ଘରେ ପଶନ୍ତି ; ତେଣୁ ତୁମେ ଏକ ଠକ । ରାଜା କହିଲେ—କିଏ ଅଛରେ, ପିଟ ଏ ଠକକୁ ।"

ରାଜାଙ୍କ ଆଦେଶ ପାଇବାମାତ୍ରେ ସେବକମାନେ ଶିଷ୍ୟକୁ ବହୁତ ପିଟିଲେ ଓ ଧକ୍କା ମାରି ବାହାର କରିଦେଲେ । କାନ୍ଦି କାନ୍ଦି ଶିଷ୍ୟ ଆସି ଗୁରୁଙ୍କ ପାଖରେ ପହଞ୍ଚି କହିଲା—"ଗୁରୁଜୀ, ଆଜି ବହୁତ ମାଡ଼ ଖାଇଲି ।"

ଗୁରୁ କହିଲେ—"ବାପ ! ତୁ ନିଶ୍ଚୟ ନିଜର ବଡ଼େଇ କରି କିଛି କହିଥିବୁ । ଶିଷ୍ୟ ଉତ୍ତର ଦେଲା—"ମୁଁ କିଛି ବଡ଼େଇ କରିନାହିଁ । କେବଳ କହିଲି—ମୁଁ ଜଣେ ସାଧୁ ମହାତ୍ମା ।"

ଗୁରୁଦେବ ହସି ହସି କହିଲେ—"ତୁ ମହାତ୍ମା ନୁହେଁ; କିନ୍ତୁ ସାଧୁ ମହାତ୍ମା ବୋଲି ପରିଚୟ ଦେଲୁ । ଯେ ଯାହା ନୁହେଁ ସେ ନିଜକୁ ସେହିପରି ଦେଖାଇହେଲେ ତା'ର ଦୁର୍ଗତି ନିଶ୍ଚିତ ।

ବାସ୍ତବରେ ଦେଖିବାକୁ ଗଲେ ମଣିଷ ଯେତିକି ବଡ଼ ହେବାକୁ ଯାଏ ସେତିକି ଦୁଃଖଭୋଗ କରେ । ଭ୍ରମରୁ ଏ ସଂସାରର ଉତ୍ପତ୍ତି ଓ ଭ୍ରମରେ ହିଁ ତା'ର ସ୍ଥିତି । ଭ୍ରମ ଦୂର ହୋଇଗଲେ ସଂସାରଭାବନା ସ୍ୱତ ଦୂର ହୋଇଯାଏ । ପିଲାମାନେ ମନେ ମନେ ରାଜା ରାଣୀ କେତେ କ'ଣ ହୁଅନ୍ତି । ସେମାନେ ଭାବନ୍ତି ରାଜାରାଣୀ କମିତି ହୋଇଥିବେ, କ'ଣ ଖାଉଥିବେ । ଦିନସାରା କେବଳ ମିଠାଇ ଖାଉଥିବେ । ରାଜାରାଣୀ ବଡ଼ ସୁଖରେ ରହୁଥିବେ ଓ ଯେଉଁଆଡ଼େ ଯାଉଥିବେ ହଜାର ହଜାର ଟଙ୍କା ଉଡ଼ାଇ ଦେଉଥିବେ; କିନ୍ତୁ ରାଜା ରାଣୀ ଯେ ସାଧାରଣଙ୍କ ପରି ଭାତ, ରୋଟି, ଶାଗ, ଡାଲି ପ୍ରଭୃତି ଖାଆନ୍ତି, କୃପଣ ହୁଅନ୍ତି, ଦୁଃଖୀ ଓ ଚିନ୍ତିତ ହୁଅନ୍ତି ଏବଂ ଗୋଟି ଗୋଟି କରି ପଇସାର ହିସାବ ରଖନ୍ତି ତାହା ବଡ଼ ହେଲେ ସମସ୍ତେ ଜାଣିପାରନ୍ତି । ଯାହା ପାଖରେ ଶହେ ଟଙ୍କା ଥାଏ ସେ ସହସ୍ରପତିକୁ ଓ ସହସ୍ରପତି ଲକ୍ଷପତିକୁ ଏବଂ ଲକ୍ଷପତି, କୋଟିପତିକୁ ସୁଖୀ ବୋଲି ମନେକରେ । ଏହା ହିଁ ବିଭ୍ରାନ୍ତି ବା ଭ୍ରମର ମୂଳ ଉତ୍ସ । କାରଣ, ଯାହା ପାଖରେ ଭୋଗସାମଗ୍ରୀ ଯେତେ ଅଧିକ ଥାଏ ସେ ସେତିକି ଚିନ୍ତିତ ଓ ଦୁଃଖୀ ହୁଏ । ଅନେକ ସମୟରେ ଲୋକେ ଭାବନ୍ତି, ଆମେ ବଡ଼ ହେଲୁଣି, ବୁଦ୍ଧିମାନ ହେଲୁଣି ଇତ୍ୟାଦି; କିନ୍ତୁ ପ୍ରକୃତରେ ସେମାନେ ଶ୍ରେଷ୍ଠ ହୋଇଯାଆନ୍ତି, ବୁଦ୍ଧିମାନ ହେବା ପରିବର୍ତ୍ତେ ମୂର୍ଖ ପାଲଟି ଯାଉଛନ୍ତି । ଯେ ସୁଖୀ ଓ ନିଶ୍ଚିନ୍ତ ତାକୁ ହିଁ ବଡ଼ ଓ ବୁଦ୍ଧିମାନ କୁହାଯାଏ ; ତେଣୁ ଆପଣମାନେ ନିଜ ଛାତିରେ ହାତଦେଇ ବିଚାର କରନ୍ତୁ ଯେତେବେଳେ ଆପଣମାନେ ପିଲା ଥିଲେ ସେତେବେଳେ ସୁଖି ଓ ନିଶ୍ଚିନ୍ତ ଥିଲେ ନା ଏବେ ଅଛନ୍ତି ।

ବାଲ୍ୟକାଳରେ ଉଚ୍ଚ ନୀଚ, ଧନୀ ନିର୍ଦ୍ଧନ ପ୍ରଭୃତି ଭେଦଭାବନା କି ମାନ ଅପମାନର ଚିନ୍ତା ନ ଥାଏ । ଘୃଣା, ଦ୍ୱେଷ, କ୍ରୋଧାଦି ବାଳକ ମନରେ ସ୍ଥାୟୀ ପ୍ରଭାବ ବିସ୍ତାର କରିପାରେ ନାହିଁ । ଶିଶୁ ଯାହା ପାଖକୁ ଯାଏ ତା'ଠାରୁ ସ୍ନେହ, ଆଦର ପାଏ । ଯେ କୌଣସି ସମୟରେ ଯେ କୌଣସି ସ୍ଥାନ ଓ ଯେ କୌଣସି ଗୋଷ୍ଠୀ ଭିତରକୁ ବିନା ବାଧାରେ, ନିର୍ଭୟ ଓ ନିଃସଙ୍କୋଚରେ ସେ ଯାଇପାରେ ; ତେଣୁ ପବିତ୍ର ଗଙ୍ଗାଜଳ ପରି ବାଳକକୁ ସମସ୍ତେ ଆଦର କରନ୍ତି । ସେଥିପାଇଁ ଋଷିମାନେ ବାଲ୍ୟଜୀବନକୁ ପୁଣି ପାଇବା ପାଇଁ ଉପଦେଶ ଦିଅନ୍ତି । ମହାଜ୍ଞାନୀ ଦତ୍ତାତ୍ରେୟ କହିଥିଲେ—"ବିଚରାମୀହ ବାଳବତ୍ ଅର୍ଥାତ୍ ଶ୍ରେଷ୍ଠ ପିଲା ପରି ମୁଁ ବିଚରଣ କରୁଛି । ଦତ୍ତାତ୍ରେୟ ନିଜର ଚବିଶ ଗୁରୁଙ୍କ ମଧ୍ୟରେ ଏକ ବାଳକକୁ ଗୁରୁରୂପେ ଗ୍ରହଣ କରିଥିଲେ ଏବଂ ଏହି ସିଦ୍ଧାନ୍ତରେ ଉପନୀତ ହୋଇଥିଲେ ଯେ, ସଂସାରରେ ଚିନ୍ତାରହିତ ଓ ଆନନ୍ଦିତ ହେଉଛନ୍ତି ଦୁଇଜଣ । ସେ ଦୁଇଜଣଙ୍କ ମଧ୍ୟରେ ଜଣେ ହେଲା ସରଳ ହୃଦୟ ବାଳକ ଓ ଅନ୍ୟ ଜଣେ ହେଲେ ଗୁଣାତୀତ ଜ୍ଞାନୀ ପୁରୁଷ ।"

ବାସ୍ତବରେ ଜ୍ଞାନୀ ମଧ୍ୟ ସର୍ବଥା ବାଳକ ପାଲଟି ଯାଆନ୍ତି । ବାଳକ ପରି ନିଷ୍କପଟ ହୃଦୟରେ ସେମାନେ ଖେଳନ୍ତି, ହସନ୍ତି ଓ କାର୍ଯ୍ୟ କରନ୍ତି । ଅଗାଧ ଜ୍ଞାନର ଅଧିକାରୀ ହୋଇ ମଧ୍ୟ ବାହାରକୁ ସେମାନେ ଯେପରି ଧୀର, ସ୍ଥିର ଓ ଶାନ୍ତ ଦେଖାଯାନ୍ତି ସେହିପରି ନିର୍ବୋଧ ଓ ଅଜ୍ଞ ମନେ ହୁଅନ୍ତି । ଶ୍ରୀଜଗନ୍ନାଥ ପୁରୀରେ ଜଣେ ମହନ୍ତ ଅଛନ୍ତି । ତାଙ୍କ ଶିଷ୍ୟ ବି ମହନ୍ତ ହେଲେଣି । ବୁଢ଼ା ମହନ୍ତ ଏକାନ୍ତରେ ଗୋଟିଏ କୋଠରୀରେ ରହନ୍ତି । ଲୋକେ କହନ୍ତି, ସେ ଯେତେବେଳେ ମହନ୍ତ ଥିଲେ ସେତେବେଳେ ଲୋକେ ଆସି କହନ୍ତି—"ମହାରାଜ ! ଆପଣଙ୍କ କାନ ଭିତରକୁ ଏକ ପୋକ ପଶିଗଲା । ମହନ୍ତ ପଚାରନ୍ତି—ହଁ ସେହିପରି ଲାଗୁଛି । ପୋକଟା ବାହାରିବ କିମିତି ? ଲୋକେ କହନ୍ତି—ପାଞ୍ଚଶହ ଟଙ୍କା ଦେଲେ ହେବ । ସେ ନିଜ କୋଠରୀରେ ଥାଇ ଶିଷ୍ୟକୁ କହନ୍ତି—ଆରେ, ଏମାନଙ୍କୁ ପାଞ୍ଚଶହ ଟଙ୍କା ଦେ' । ଶିଷ୍ୟ ଟଙ୍କା ଆଣି ଦେବା ପରେ ଲୋକେ ଏକ ତାଳିମାରି ଦେଇ କହନ୍ତି—ମହାରାଜ ! କାନରୁ ପୋକଟା ବାହାରିଗଲା । ମହନ୍ତ କହନ୍ତି—ହଁ ବାହାରିଯାଇଛି, ମୋତେ ଆଉ କଷ୍ଟ ହେଉନାହିଁ ।" ଏହିପରି ଯେ ଯାହା ତାଙ୍କୁ କହେ ପିଲାଙ୍କ ପରି ସେ ତାହା ମାନିଯାଆନ୍ତି । ଏପରି ଅବସ୍ଥା ଦେଖି ଶିଷ୍ୟ ମଠର ଦାୟିତ୍ୱ ହାତକୁ ନେଇଗଲେ ।

ବାବାଜୀ ଶ୍ରୀ ହରିଦାସ କହୁଥିଲେ—"ଦିନେ ମା' ଆନନ୍ଦମୟୀଙ୍କ ସହିତ ସେ ତାଙ୍କୁ ଦର୍ଶନ କରିବାପାଇଁ ଯାଇଥିଲେ । ଅଧଘଣ୍ଟେ ପାଇଁ ଯାଇଥିଲେ ;କିନ୍ତୁ ଅଢ଼େଇ ଘଣ୍ଟା ତାଙ୍କ ପାଖରେ ବସି ରହିଲେ । ତାଙ୍କ ପାଖରୁ ଉଠି ଆସିବାକୁ ଆଦୌ ଇଚ୍ଛା ହେଲା ନାହିଁ । ତାଙ୍କର କଥାବାର୍ତ୍ତା, ଉଠିବା ବସିବା ଖେଳିବା, ହସିବା, ସବୁରେ ଏକପ୍ରକାର ଅପୂର୍ବ ସରଳତା

ପ୍ରକଟିତ ହୋଉଥିଲା । ଶ୍ରୀ ହରବାବା କହୁଥିଲେ—ଥରେ ଯେତେବେଳେ ତାଙ୍କ ପାଖରେ ପହଞ୍ଚିଲୁ ସେତେବେଳେ କେହି ଜଣେ ତାଙ୍କୁ କହିଲା—ଆପଣଙ୍କୁ ଦେଖିବାପାଇଁ ମହାତ୍ମା ଆସିଛନ୍ତି । ଏହା ଶୁଣିବାମାତ୍ରେ ସେ ସିଂହାସନରୁ ଆସି ଆମ ପାଖରେ ବସିଗଲେ । ଜଣେ କହିଲା—ଏ ହେଉଛନ୍ତି ଶ୍ରୀହରବାବା । ସେ ଗୋରକ୍ଷପୁରରେ ରହନ୍ତି ଓ କୀର୍ତ୍ତନ କରନ୍ତି । ଏହା ଶୁଣିବାମାତ୍ରେ ସେ କହିଲେ—କୀର୍ତ୍ତନ କରୁଛନ୍ତି, ଭଲ କରୁଛନ୍ତି । କୀର୍ତ୍ତନ କରିବା ଉଚିତ । ପୁଣି ଜଣେ କହିଲା—ଏ ହେଉଛନ୍ତି ମା' ଆନନ୍ଦମୟୀ । ସେ କହିଲେ—ହଁ ମା' ତ ଆନନ୍ଦମୟୀ ହୁଅନ୍ତି ।

ଶ୍ରୀ ହରବାବା କହୁଥିଲେ—"ପିଲାମାନେ ତାଙ୍କୁ ବିବାହ ହେବାପାଇଁ କହୁଥିବାର ଶୁଣି ମୁଁ ବି ସେଇକଥା କହିଲି । କଥାପ୍ରସଙ୍ଗରେ ମୁଁ କହିଲି—ମହାଶୟ ! ଅମୁକ ରାଜାଙ୍କର ଝିଅଟିଏ ଅଛି । ସେ ଆପଣଙ୍କୁ ବିବାହ କରିବାପାଇଁ ଚାହୁଁଛି । ତାଙ୍କୁ ବିବାହ କଲେ ବହୁତ ଧନରତ୍ନ ମିଳିବ । ଏହା ଶୁଣି ସେ କହିଲେ—ହଁ, ଠିକ୍ ଅଛି, ଝିଅଟି ବିବାହ କରିବାପାଇଁ ଚାହୁଁଛି ଓ ଧନରତ୍ନ ବି କିଛି ମିଳିବ । ନିଜ ଶିଷ୍ୟଙ୍କୁ ଡାକି ସେ ଆଦେଶ ଦେଲେ—ସେ ଲୋକଙ୍କୁ ଡାକିଆଣ । ଏ ମହାଶୟ କହୁଛନ୍ତି ଅମୁକ ରାଜାଙ୍କ ଝିଅକୁ ବିବାହ କଲେ ବହୁତ ଧନ ମିଳିବ । କ୍ଷତି କ'ଣ ? ବିବାହ କରିବା, ସାଧୁ ସେବା ବି ହେବ । ଶିଷ୍ୟ ଏହା ଶୁଣି କହିଲା—ହଁ ମହାରାଜ ! ବିବାହ କରନ୍ତୁ ।

ଏହିପରି ତାଙ୍କ ଜୀବନରେ ପୁନର୍ବାର ପିଲାଳିଆ ଭାବ ଫେରି ଆସିଥିଲା । ଲୋକେ ତାଙ୍କୁ ପାଗଳ ବୋଲି କହନ୍ତି ; କିନ୍ତୁ ମୂର୍ଖ ପରି ସେମାନେ ଭାବନ୍ତି ନାହିଁ ଯେ ସେମାନେ ନିଜେ ସମସ୍ତେ ପାଗଳ । ଯେଉଁ ମାଟିରୁ ହଳଦିଆ ଓ ଧଳା ମାଟି ବା ପଥର ମିଳେ ସେହି ମାଟିରୁ ସୁନା, ରୁପା ବି ମିଳେ । ତେବେ ମାଟି ଓ ସୁନା ମଧ୍ୟରେ ପାର୍ଥକ୍ୟ କ'ଣ ? କିନ୍ତୁ ସୁନାପାଇଁ ଲୋକେ ଯେପରି ପାଗଳ ହେଉଛନ୍ତି ସେ ପାଗଳାମିର କୌଣସି ସୀମା ନାହିଁ । କୌଣସି ପିଲାର ମାଟି ତିଆରି ଖେଳନାଟି ଭାଙ୍ଗିଗଲେ ସେ କାନ୍ଦେ । ତା'ର କାନ୍ଦ ଶୁଣି ବୟସ୍କମାନେ କହନ୍ତି—ପିଲାଟିଏ ତ ? ସେଥିପାଇଁ ଏକ ତୁଚ୍ଛ କଥାରେ କେତେ କାନ୍ଦୁଛି । ଲକ୍ଷେ ହଜିଗଲେ ଲକ୍ଷପତି ଯେପରି ଦୁଃଖ କରେ, ଟଙ୍କାଟିଏ ହଜିଗଲେ ନିର୍ଦ୍ଧନ ଲୋକ ସେହିପରି ଦୁଃଖ କରେ । ପିଲାଟିଏ ଗୋଟିଏ ପଇସା ପାଇଲେ ଯେତେ ଖୁସି ହୁଏ ଜଣେ ରାଜା ରାଜ୍ୟଟିଏ ପାଇଲେ ବି ସେତେ ଖୁସି ହୋଇପାରେ ନାହିଁ । ଭାରତର ଜନୈକ ରାଷ୍ଟ୍ରପତି କହିଛନ୍ତି, ପିଲାଦିନେ ବଡ଼ଭାଇଠାରୁ ପଇସାଟିଏ ପାଇଲେ ସେ ଯେତେ ଆନନ୍ଦିତ ହେଉଥିଲେ ରାଷ୍ଟ୍ରପତି ହବେ ଯେତେ ମୂଲ୍ୟବାନ୍ ବସ୍ତୁ ପାଇଲେ ବି ସେପରି ଆନନ୍ଦିତ ହୋଇପାରୁ ନାହାନ୍ତି । ସ୍ନେହ, ପ୍ରେମ, ପ୍ରୀତିରେ ତୃଷ୍ଣାର ସ୍ଥାନ ନାହିଁ । ଜଣେ ତୃଷ୍ଣାର୍ତ୍ତଙ୍କୁ ଦଶ୍ରାପାଣି ଯେତିକି ସୁଖ ଦିଏ, ମାଳା, ଚନ୍ଦନ, ବାହନାଦି ସେ ସୁଖ ଦେଇପାରନ୍ତି ନାହିଁ । ତୃଷ୍ଣାର୍ତ୍ତ ଜଳ ପାଇଁ ଅନ୍ୟ ସମସ୍ତ ସୁଖକୁ ଜଳାଞ୍ଜଳି ଦିଏ । ଇଂଲଣ୍ଡର ଜଣେ ରାଜା ଏକ ଗ୍ଲାସପାଇଁ

ରାଜ୍ୟସୁଖ ପରିତ୍ୟାଗ କରିଥିଲେ । ପିଲାର ଖେଳନା ହେଉଛି ସର୍ବସ୍ୱ । ରାଜ୍ୟ, ଧନ, ସୁନ୍ଦରୀ କନ୍ୟା ପ୍ରତି ତା'ର ଅଭିଳାଷ ନ ଥାଏ ; ତେଣୁ ଦେଖାଯାଏ, ସାଧାରଣତଃ ସମସ୍ତଙ୍କଠାରେ ପିଲାଳିଆ ଭାବ ଥାଏ ; କିନ୍ତୁ କେତେକ ନିଜକୁ ବଡ଼ ଓ ବୁଦ୍ଧିମାନ୍ ବୋଲି ଭାବି, ପିଲାମାନେ କିଛି ହେଲେ ନାହିଁ, ଏପରି ଚିନ୍ତାରେ ମଗ୍ନ ରହନ୍ତି । ଏପରି ଚିନ୍ତାର କୌଣସି ମୂଲ୍ୟ ନାହିଁ ।

ପିଲାମାନେ କେତେ ପ୍ରକାର ଖେଳ ଖେଳନ୍ତି । ସେ ଖେଳର ସ୍ୱରୂପ ଓ ସଂଖ୍ୟା ନିର୍ଣ୍ଣୟ କରିବା ସହଜ ନୁହେଁ । ପାଠକ ପାଠିକାଗଣ ନିଜ ନିଜର ବାଲ୍ୟଜୀବନର ସ୍ମୃତି ସ୍ମରଣ କଲେ ସଂସାର ଚିନ୍ତାରୁ କିଛି ସମୟ ପାଇଁ ମୁକ୍ତିଲାଭ କରିପାରିବେ । କାରଣ, ମଣିଷ ଯେତେବେଳେ ଯେଉଁ ଚିନ୍ତା କରେ ସେତେବେଳେ ସେହି ଭାବ ପୋଷଣ କରେ । ବାଳକ ପରି ସରଳ ଓ ନିଷ୍କପଟ ହେବା ପାଇଁ ସମସ୍ତ ବାଲ୍ୟସ୍ମୃତି ସ୍ମରଣ କରିବା ସର୍ବଥା ଉଚିତ, ଅନେକ ମୋତେ ମୁକ୍ତ କଣ୍ଠରେ ହସଖେଳ କରୁଥିବା'ର ଦେଖି ଉପହାସ କରନ୍ତି । ସେ ଯାହା କହନ୍ତୁ ପଛକେ ବାଲ୍ୟସ୍ମୃତି ଅନୁଶୀଳନ ହିଁ ମୋର ପ୍ରସନ୍ନତାର କାରଣ, ଏହା ମୁଁ ନିଜେ ଜାଣେ । ମୋର ମନରେ ଚିନ୍ତା ଆସେ ନାହିଁ ଯେ ମୁଁ ବୁଢ଼ା ହୋଇଗଲିଣି ଅଥବା ବୁଢ଼ା ହନେ ହେବ । ମୁଁ ଚିରଦିନ ଅର୍ଥାତ୍ ଆଜୀବନ ବାଳକ ହୋଇ ରହିବି ଏହି ଭାବନା ସର୍ବଦା ପୋଷଣ କରେ ; କିନ୍ତୁ ଏ ସଂସାର ମୋର ବାଳ୍ୟଭାବକୁ ସୁରକ୍ଷିତ ରଖିଲା ନାହିଁ । କଳାରଙ୍ଗ ଥିବା ପାତ୍ରରେ ଯେ ପଡ଼ିଲା ସେ କଳା ନ ହୋଇ ରହିପାରିଲା ନାହିଁ । ଅବତାର ପରେ ଅବତାର ଆସିଲେ ଏବଂ ନ କରିବା କଥା କଲେ । ସୀତାଙ୍କଠାରୁ ବିଯୁକ୍ତ ହେବାର ଇଚ୍ଛା ନ ଥିଲେ ମଧ୍ୟ ଦୁଷ୍ଟ ରାବଣ ମୈଥିଳୀଙ୍କୁ ହରଣ କରି ନେଲା । ରାବଣକୁ ମାରି ଅଯୋଧ୍ୟା ଫେରିବାବେଳକୁ ସେଠାରେ ଶହ ଶହ ରାବଣ ସୃଷ୍ଟି ହୋଇଗଲେ । ଶ୍ରୀରାମ ସେମାନଙ୍କୁ ନ ମାରି ନିଜ ମାନକୁ ମାରିଦେଲେ ଏବଂ ପ୍ରାଣେଶ୍ୱରୀ ସୀତାଙ୍କୁ ତ୍ୟାଗ କଲେ ; ତେଣୁ ସଂସାରର ସମ୍ବନ୍ଧ ଏହିପରି ଦୁଃଖଦାୟକ ।

ଶ୍ରୀକୃଷ୍ଣ କେବେହେଲେ ନିଜର ବଂଶୀ, ମୟୂର ମୁକୁଟ ପ୍ରଭୃତି ଛାଡ଼ିବାକୁ ଇଚ୍ଛା କରି ନ ଥିଲେ ; କିନ୍ତୁ ଯାଦବମାନେ ତାହା କରିବାକୁ ଦେଲେ ନାହିଁ । ବାଧ୍ୟ ହୋଇ ତାଙ୍କୁ ବୃନ୍ଦାବନ ଛାଡ଼ିବାକୁ ପଡ଼ିଲା । ଗୋପୀମାନଙ୍କର ହୃଦୟବିଦାରକ ବିରହପ୍ରସଙ୍ଗ ଶୁଣି ଅନେକ କହନ୍ତି—ବୃନ୍ଦାବନରୁ ମଥୁରାର ଦୂରତ୍ୱ ମାତ୍ର ଦୁଇକୋଶ । ଗୋପୀମାନେ ମଥୁରା ଯାଇ ଶ୍ରୀକୃଷ୍ଣଙ୍କୁ ଦେଖି ଆସିବାରେ କୌଣସି ଅସୁବିଧା ନ ଥିଲା । ସେମାନେ ମଥୁରା ନ ଯାଇ ଏପରି ମାନସିକ ପୀଡ଼ା ଭୋଗ କରିବାର କାରଣ କ'ଣ ? କିନ୍ତୁ ମନେରଖିବା ଉଚିତ ଯେ, ବୃନ୍ଦାବନବିହାରୀ କୃଷ୍ଣଙ୍କ ସହିତ ଗୋପୀମାନଙ୍କର ସମ୍ପର୍କ ଥିଲା । ମଥୁରାରେ ଥିବା କୃଷ୍ଣଙ୍କୁ ଦେଖି ସେମାନଙ୍କର ବିରହବେଦନା ଅଧିକ ବଢ଼ିଯାନ୍ତା । ପ୍ରତିଦିନ ତ ସେମାନେ ଦୁଧଦହି ବିକିବାକୁ ମଥୁରା ଯାଉଥିଲେ ; କିନ୍ତୁ ମଥୁରାର କୃଷ୍ଣଙ୍କୁ ଦେଖି ତାଙ୍କର ତୃପ୍ତି

ଆସିପାରି ନ ଥିଲି । କାରଣ, କୃଷ୍ଣ ଓ ଗୋପୀଙ୍କ ମଧ୍ୟରେ ଦେଶ, କାଳ ଓ ପରିସ୍ଥିତିର ବ୍ୟବଧାନ ସୃଷ୍ଟି ହୋଇଯାଇଥିଲା ।

ମୋର ଜଣେ ସମ୍ମାନନୀୟ ବନ୍ଧୁ ଅଛନ୍ତି । ଦୀର୍ଘକାଳ ଧରି ଆମେ ଦୁହେଁ ସାଙ୍ଗ ହୋଇ କାରାଗାରରେ ଥିଲୁ । ମୁଁ ବନାରସରେ ଥିବାବେଳେ ପ୍ରତିଦିନ ତାଙ୍କ ପାଖକୁ ଯାଉଥିଲି । ଦିନେ ବି ଯଦି କୌଣସି କାରଣରୁ ଯାଇପାରୁ ନ ଥିଲି ତେବେ ମନ ବଡ଼ ବ୍ୟାକୁଳ ହେଉଥିଲା । ଦ୍ୱିତୀୟ ଦିନ ତାଙ୍କ ପାଖରେ ପହଞ୍ଚିଲେ ସେ ପଚାରୁଥିଲେ—କାଲି କାହିଁକି ଆସି ପାରିଲେ ନାହିଁ । ତାଙ୍କର ପିଲାମାନଙ୍କୁ ବଡ଼ ସ୍ନେହ କରୁଥିଲି । ସମସ୍ତ ବଦଳିଗଲା । ମୋର ମନରେ ମହାତ୍ମା ହୋଇଥିବାର ଅଭିମାନ ଆସିଗଲା । ସେ ମଧ୍ୟ ଏକ ବଡ଼ ପଦବୀରେ ପ୍ରତିଷ୍ଠିତ ହୋଇଗଲେ । ପ୍ରୟାଗ ଓ ଲକ୍ଷ୍ନୌ ମଧ୍ୟରେ ବିଶେଷ ପାର୍ଥକ୍ୟ ନାହିଁ । ଇଚ୍ଛା କଲେ ପ୍ରତିଦିନ ଦେଖାସାକ୍ଷାତ ହୋଇପାରିବ ; କିନ୍ତୁ ମଝିରେ ପଦ ଓ ପ୍ରତିଷ୍ଠାର ଏପରି ବ୍ୟବଧାନ ସୃଷ୍ଟି ହୋଇଗଲା ଯେ, ଇଚ୍ଛାକଲେ ଆମେ କେହି କାହାରି ସହିତ ଦେଖାସାକ୍ଷାତ ବା ଆଳାପ ଆଲୋଚନା କରିପାରିଲୁ ନାହିଁ । ଏହାଦ୍ୱାରା ମୋର ସମ୍ମାନ ଓ ତାଙ୍କର ସ୍ନେହରେ କୌଣସି ପ୍ରକାର ବିକୃତି ଜାତ ହୋଇ ନାହିଁ ; କିନ୍ତୁ ଅବସ୍ଥା ଆମର ମିଳନ ପାଇଁ ସୁଯୋଗ ଦେଉ ନାହିଁ ; ତେଣୁ ପ୍ରତ୍ୟକ୍ଷ ମିଳନ ଅପେକ୍ଷା ବର୍ତ୍ତମାନ ସେହି ଅତୀତ ସ୍ମୃତିରେ ହିଁ ଅଧିକ ଆନନ୍ଦର ସମ୍ଭାବନା ରହିଛି । ଉଭୟ ସେହି ଅତୀତକୁ ସ୍ମରଣ କରୁଛୁ ଓ ଆନନ୍ଦରେ ଅଛୁ । ଏହିପରି ଅନେକ ବନ୍ଧୁ ଅଛନ୍ତି । ଅନେକ ଜନ ସନ୍ନ୍ୟାସ ପରିଆର ଘୋର ଅଭିମାନ କରନ୍ତି ; ତେଣୁ ମୋ' ସହିତ ସେମାନଙ୍କର ମିଳନ ସମ୍ଭବ ହେଉ ନାହିଁ । ସେହିପରି ଶ୍ରୀ ରାଧାଙ୍କ ସହିତ ମଥୁରାବାସୀ କୃଷ୍ଣଙ୍କର କି ଶ୍ରୀକୃଷ୍ଣଙ୍କ ସହିତ ରାଧାଙ୍କର ମିଳନ ଘଟି ନ ଥିଲା । କୁରୁକ୍ଷେତ୍ରରେ ହଠାତ୍ ଉଭୟଙ୍କ ମଧ୍ୟରେ ସାକ୍ଷାତ୍ ହେଲା । କନୈକା ସହଚରୀ ରାଧାଙ୍କୁ ପଚାରିବାରୁ ରାଧା କହିଲେ—ହଁ ସେହି କୃଷ୍ଣ ସେ ଏବଂ ମୁଁ ମଧ୍ୟ ସେହି ରାଧା ; କିନ୍ତୁ ମୋର ମନ କାଳିନ୍ଦୀ ତଟବର୍ତ୍ତୀ ଶ୍ରୀ ବୃନ୍ଦାବନର କୃଷ୍ଣଙ୍କୁ ଖୋଜୁଛି । ବୃନ୍ଦାବନବିହାରୀ ଶ୍ରୀକୃଷ୍ଣଙ୍କୁ ଦେଖିଲେ ହିଁ ତୃପ୍ତି ପାଇପାରିବି ; ତେଣୁ ବିରହ-ବେଦନାରେ ଆତୁର ହୋଇ ମଧ୍ୟ ଜଣେ ହେଲେ ଗୋପୀ ବ୍ରଜରୁ ମଥୁରାକୁ ଯାଇ ନ ଥିଲେ ।

ଶ୍ରୀକୃଷ୍ଣ ମଧ୍ୟ ବ୍ରଜରୁ ମଥୁରା ଓ ମଥୁରାରୁ ଦ୍ୱାରକା ଯାଇ ସୁଖୀ ହୋଇ ପାରି ନ ଥିଲେ । ବାଲ୍ୟକାଳର ଅତୀତ ସ୍ମୃତିକୁ ମନେ ପକାଇ ଶ୍ରୀକୃଷ୍ଣ କିପରି ବ୍ୟାକୁଳ ହୋଇ ପଡ଼ୁଥିଲେ ତାହା ରସିକ କବି ରସଖାନ୍, ଭକ୍ତକବି ସୁରଦାସ ପ୍ରଭୃତି କବିଗଣ ହୃଦୟସ୍ପର୍ଶୀ ଭାଷାରେ ବ୍ୟକ୍ତ କରିଯାଇଛନ୍ତି । ସେଥିପାଇଁ ବୃନ୍ଦାବନର ଉପାସକଗଣ ମଥୁରାବାସୀ ଚତୁର୍ଭୁଜ ବାସୁଦେବଙ୍କୁ ସ୍ୱୀକାର କରନ୍ତି ନାହିଁ । ସେମାନଙ୍କ କୃଷ୍ଣ ହେଉଛନ୍ତି ନନ୍ଦନନ୍ଦନ । ବୃନ୍ଦାବନର ସୀମା ବାହାରକୁ ସେ ଯାଇପାରିବେ ନାହିଁ । ବ୍ରଜରେ ସଖ୍ୟ, ବାତ୍ସଲ୍ୟ ଓ

ମଧୁର ରସର ହିଁ ପରିପୁଷ୍ଟି ସାଧିତ ହୋଇଛି । ଏ ପ୍ରସଙ୍ଗରେ ଅଧିକ କିଛି ଆଲୋଚନା କରିବାର ଅଭିଳାଷ ଥିଲେ ବି ବାଧ୍ୟ ହୋଇ ମୋର ବକ୍ତବ୍ୟ ଏଇଠି ରଖୁଛି । ଶ୍ରୀକୃଷ୍ଣଙ୍କର ଜୟ ହେଉ ।

ସଙ୍କୀର୍ତ୍ତନ ଭବନ, ପ୍ରତାପ୍ଗଡ଼ନପୁର
ମାଘ, କୃଷ୍ଣ ଦ୍ୱିତୀୟା, ୧୯୫୦ ପ୍ରଭୁଦତ୍ତ

•

# ଫଳବାଲୀ ପ୍ରତି ଦୟା

ଫଳବିକ୍ରୟିଣୀ ତସ୍ୟ ଚ୍ୟୁତଧାନ୍ୟଂ କରଦ୍ୱୟମ୍ ।
ଫଳୈରପୂରୟଦ୍ ରତ୍ନୈଃ ଫଳଭାଣ୍ଡମପୂରି ଚ ॥

(ଶ୍ରୀ ଭା ୧୦ ସ୍କ, ୧୧ ଅ, ୧୧ ଶ୍ଳୋକ

## ଛପ୍ପୟ

ବ୍ରଜମହଁ କାଛନୀ ହତୀ ଏକ ସୁଖିଆ ହରପ୍ୟାରୀ ।
କୃଷ୍ଣ ପ୍ରେମମହଁ ରହତ ସତତ ପଗଲୀ ମତବାରୀ ॥
ହଁସହଁସିକୀ ସବ୍ ଜାନ ଉପେକ୍ଷା ସବ ଦଖାଓେଁ ।
ତ୍ୟୋଁ ଉତ୍କଣ୍ଠା ତାସୁ ଦିନହୁଁ ଦିନ ଅଧିକ ବଢ଼ାଓେଁ ॥
ଜବ ଅତ ଉତ୍କଣ୍ଠା ବଢ଼ୀ, ସଦୟ ସାଁଵରେ ହ୍ୱୈ ଗୟୋ ।
ଅଭିଳାଷା ପୂରନ କରୀ, ସୁଖିୟାକୁଁ ଅତସୁଖ ଦୟୋ ।

କେଉଁ ଅନାଦି କାଳରୁ ଏ ଜୀବ ଅମୃତ ତୁଲ୍ୟ ଜଳପାଇଁ ତୃଷାର୍ତ୍ତ ଓ ପ୍ରେମ ରୂପକ ଆହାର ପାଇଁ କ୍ଷୁଧାର୍ତ୍ତ ହୋଇ ରହିଆସିଛି ତାହା କେହି କହିପାରିବ ନାହିଁ । ଯଦି ପେଟପୂରା ଖାଦ୍ୟ ଓ ସନ୍ତୋଷଜନକ ନିଦ୍ରା ଲାଭ କରିବା ଜୀବର ଏକମାତ୍ର ଲକ୍ଷ୍ୟ ହୋଇଥାନ୍ତା ତେବେ ଯାହାର ପର୍ଯ୍ୟାପ୍ତ ଖାଦ୍ୟ ସାମଗ୍ରୀ ଅଛି, ସେ କେବେହେଲେ ଦୁଃଖୀ ଦେଖାଯାଆନ୍ତା ନାହିଁ । ଜୀବ ଯେ ଅନ୍ନ ଆହାର ବ୍ୟତୀତ ଅନ୍ୟ କିଛି ଅଭିଳାଷୀ ତାହା ଏଥିରୁ ପ୍ରମାଣିତ ହୁଏ । ସେହି ଅଭିଳଷିତ ବସ୍ତୁ ପାଇବା ପରେ ମଧ ତା'ର ଅନ୍ୟ କୌଣସି ବସ୍ତୁ ପାଇଁ ପିପାସା ଥାଏ । ସେହି ବସ୍ତୁ ହେଉଛି ପ୍ରେମ । ସମସ୍ତେ ପ୍ରେମ ଇଚ୍ଛା କରନ୍ତି । ପ୍ରେମ ବିନା

ଅମୃତ ପିଇଲେ ମଧ୍ୟ ଶାନ୍ତି ମିଳେ ନାହିଁ । ପ୍ରେମ ସହିତ କେହି ବିଷ ଦାନ କଲେ ମଧ୍ୟ ସେହି ବିଷ ପାନ କରି ମରିବାରେ ଶାନ୍ତି ମିଳେ । ଜୀବ ପ୍ରେମ ପାଇଁ ଯୁଗ ଯୁଗ ଧରି ଘୂରି ବୁଲୁଛି । ଅନ୍ଧକାର ମଧ୍ୟରେ ସେହି ପ୍ରେମକୁ ସେ ଇତସ୍ତତଃ ଅନ୍ୱେଷଣ କରୁଛି । କେତେବେଳେ ସେ ଧନକୁ ପ୍ରେମ କରୁଛି ତ କେତେବେଳେ ସ୍ତ୍ରୀ, ପୁତ୍ର, ବନ୍ଧୁ, ସ୍ୱଜନଙ୍କ-ଠାରେ ତାହାକୁ ଖୋଜୁଛି । କେବେ ପ୍ରେୟସୀର କଟାକ୍ଷରେ ସେହି ପ୍ରେମକୁ ଅନ୍ୱେଷଣ କରୁଛି । ପ୍ରେମ ପାଇଁ ମଣିଷ ବିଭିନ୍ନ କ୍ଷେତ୍ରରେ କିଛି କିଛି ସମୟ ଅଟକିଯାଏ ଓ ପୁଣି ଆଗକୁ ଚାଲେ । କାରଣ, ଏଗୁଡ଼ିକ ପ୍ରେମର ଶାଶ୍ୱତ କ୍ଷେତ୍ର ନୁହେଁ । ଅନନ୍ତ କାଳ ହେଲା ଏହି ଅନ୍ୱେଷଣକ୍ରମ ପ୍ରଚଳିତ ଅଛି । ଶେଷରେ ଯଦି ଭାଗ୍ୟବଶତଃ ପ୍ରଭୁପ୍ରେମ ମିଳେ, ଯଥାର୍ଥ ପ୍ରେମାସ୍ପଦଙ୍କର ଦର୍ଶନ ଲାଭ ହୁଏ ତେବେ ଜୀବ କୃତାର୍ଥ ହୋଇଯାଏ ।

ଜୀବ ପୂରାପୂରି ଆତ୍ମସମର୍ପଣ ପାଇଁ କୁଣ୍ଠିତ ହେଲେ ପ୍ରଭୁ ତାହା ସହିପାରନ୍ତି ନାହିଁ କାରଣ ସେ ସର୍ବସ୍ୱ ନେଇଯିବା ପାଇଁ ଇଚ୍ଛା କରନ୍ତି । ସେହିପାଇଁ ପ୍ରଭୁ ଦୁଇହାତ ମେଲାଇ ଧରନ୍ତି । ପ୍ରେମର ଆବେଗରେ ଯେ ନିଜର ସର୍ବସ୍ୱ ତାଙ୍କୁ ସମର୍ପଣ କରେ ତାଙ୍କର ଦୁଇହାତକୁ ପୂର୍ଣ୍ଣ କରିଦିଏ ତା'ର ଆଉ କର୍ତ୍ତବ୍ୟ ବୋଲି କିଛି ରହେ ନାହିଁ । ଭଗବାନ୍ ହେଉଛନ୍ତି ଦାତା ଓ ଜୀବ ହେଉଛି ଭୋକ୍ତା । ଜୀବ ଯେଉଁଠି ନିଜର ବା ମୋର ବୋଲି ଭାବନା ତ୍ୟାଗ କରେ ସେଇଠି ଭଗବାନ ତା'ର ସମସ୍ତ ଶୂନ୍ୟ ପାତ୍ରକୁ ଅମୂଲ୍ୟ ଧନ ରତ୍ନରେ ପୂର୍ଣ୍ଣ କରି ଦିଅନ୍ତି ।

ମହର୍ଷି ସୂତ କହିଲେ—"ମୁନିଗଣ ! ପ୍ରଭୁଙ୍କର ଅବତାର ରୂପରେ ପ୍ରକଟ ହେବାର ଏକମାତ୍ର ଉଦ୍ଦେଶ୍ୟ ହେଉଛି ପ୍ରେମଭକ୍ତି ପ୍ରଚାର କରିବା । ପ୍ରେମ ପାଇଁ ଜୀବ ଅନନ୍ତକାଳ ହେଲା ଘୂରିବୁଲୁଛି । କେବେ କେବେ ବନ୍ୟା ହେଲେ ଯେପରି କୂଳରେ ଥିବା ଘର, ବୃକ୍ଷଲତା ପ୍ରଭୃତି ବୁଡ଼ିଯାଏ ସେହିପରି ପ୍ରେମର ବନ୍ୟା ଆସିଲେ ପୃଥିବୀରେ ଅତ୍ୟଧିକ ପ୍ରେମପିପାସୁ ଏକ ସମୟରେ ଜନ୍ମଗ୍ରହଣ କରନ୍ତି । ସେମାନଙ୍କର ପ୍ରେମ ପିପାସାକୁ ଚରିତାର୍ଥ କରିବା ପାଇଁ ଭଗବାନ ସ୍ୱୟଂ ଅବତାର ରୂପରେ ଅବତୀର୍ଣ୍ଣ ହୋଇ ଆଚାର୍ଯ୍ୟ ବା ଗୁରୁ ରୂପରେ ପ୍ରକଟ ହୁଅନ୍ତି । ଦ୍ୱାପର ଯୁଗର ଶେଷରେ ଏହିପରି ପ୍ରେମର ଏକ ପ୍ରବଳ ବନ୍ୟା ସୃଷ୍ଟି ହୋଇଥିଲା । ସେଥିରେ ସ୍ତ୍ରୀ, ପୁରୁଷ, ବାଳକ, ଯୁବକ, ବୃଦ୍ଧ, ଉଚ୍ଚ, ନୀଚ, ପଶୁ, ପକ୍ଷୀ, କୀଟ, ପତଙ୍ଗ ସମସ୍ତେ ପ୍ଲାବିତ ହୋଇ ଯାଇଥିଲେ । କିଛି କାଳପାଇଁ ବ୍ରଜପୁରରେ ଏପରି ପ୍ରେମର ପ୍ରବାହ ପ୍ରବହିତ ହେଲା ଯେ ସେଥିରେ ସମସ୍ତେ କୃତାର୍ଥ ହୋଇଗଲେ । ପ୍ରେମର ପ୍ରବାହ ଶାଶ୍ୱତ । ଏହା ନିରନ୍ତର ପ୍ରବାହିତ ହୁଏ; କିନ୍ତୁ ସାମାନ୍ୟ ଗତିରେ । ସେତେବେଳେ ପ୍ରବଳ ବନ୍ୟା ଆସିଯାଇଥିଲା । ସେହି ପ୍ରବଳ ପ୍ରବାହରେ ମର୍ଯ୍ୟାଦାର ବନ୍ଧ ଭାଙ୍ଗିଗଲା ; ବେଶ୍ କୁଳ ଓ ଜାତିର କୌଣସି ମର୍ଯ୍ୟାଦା ରହିଲା ନାହିଁ ।

ଯେଉଁ ସମୟରେ ନନ୍ଦ-ନନ୍ଦନ ବାଲଲୀଳାଦ୍ୱାରା ବ୍ରଜବାସୀମାନଙ୍କୁ ସୁଖ ଓ ଆନନ୍ଦ ପ୍ରଦାନ କରୁଥିଲେ ସେହି ସମୟରେ ଅତ୍ୟନ୍ତ ଅନୁରାଗିଣୀ ସୁଖୀ ନାମରେ ଏକ ଫଳବାଲୀ ମଥୁରାରେ ରହୁଥିଲା । ଥରେ କୃଷ୍ଣ କଥା ତା' କାନରେ ପଡ଼ିଲା । କାମୁକ ବା କାମୁକୀର କାମରେ ଯେପରି ତୃପ୍ତି ଆସେ ନାହିଁ, ଯେତେ ଧନ ସଂଗ୍ରହ କଲେ ବି ଲୋଭୀ ଯେପରି ତୃପ୍ତି ଲାଭ କରିପାରେ ନାହିଁ, ସେହିପରି କୃଷ୍ଣକଥା ଯେତେ ଶୁଣିଲେ ବି ସୁଖୀର ତୃପ୍ତି ଅସିଲା ନାହିଁ । ସେ ସମୟରେ ବ୍ରଜମଣ୍ଡଳର ଘରେ ଘରେ ଶ୍ରୀକୃଷ୍ଣଙ୍କ ଗୁଣଗାନ, ତାଙ୍କର ରୂପ, ସୌନ୍ଦର୍ଯ୍ୟ, ମାଧୁର୍ଯ୍ୟ ପ୍ରସଙ୍ଗ ଆଲୋଚିତ ହେଉଥିଲା । ବିଷାକ୍ତ ରୋଗ ଯେପରି ଚିକିତ୍ସା ବିନା ଏକ ଅଙ୍ଗରୁ ଅନ୍ୟ ଅଙ୍ଗକୁ ବ୍ୟାପିଯାଏ । ସେହିପରି ସୁଖୀର କୃଷ୍ଣପ୍ରସଙ୍ଗ କାନରୁ ଯାଇ ଆଖିକୁ ଅକ୍ରାନ୍ତ କଲା । ସେ ପ୍ରତିଦିନ ଆଖିରୁ ଲୁହ ଝରାଇ ଶ୍ରୀକୃଷ୍ଣଙ୍କୁ ଦେଖିବାପାଇଁ ବ୍ୟାକୁଳ ହେବାକୁ ଲାଗିଲା । ତା'ର ଏପରି ଅବସ୍ଥା ଦେଖି ଜଣେ କେହି କହିଲା—ଶ୍ୟାମ ତ ବହୁଦୂରରେ ନୁହେଁ ଏଇ ପାଖରେ ଗୋକୁଳରେ ରହୁଛନ୍ତି । ତୁ ଫଳ ନେଇ ଦିନେ ତାଙ୍କ ଘରକୁ ଯା' । ତାଙ୍କୁ ଦର୍ଶନ କରି ତୋର ନୟନସନ୍ତାପ ଦୂର କର ।

ସୁଖୀର କାମ ହେଲା ଫଳ ବିକିବା । ଲୋକଙ୍କ ପାଖରୁ ବଉଳ ନେଇ ସେ ଫଳ ଦେଉଥିଲା । ସେ ଭାବିଲା—ଏଥର ଫଳ ସବୁ ନେଇ ଶ୍ୟାମସୁନ୍ଦରଙ୍କୁ ଦେବି । ତାଙ୍କୁ ଫଳ ସହିତ ନିଜକୁ ବି ବିକିଦେବି । ଏହା ଭାବି ସେ ନନ୍ଦଭବନର ସିଂହଦ୍ୱାରରେ 'ଫଳ ନିଅରେ ଫଳ' ବୋଲି କହି ବୁଲିବାକୁ ଲାଗିଲା ; କିନ୍ତୁ ଏ ପ୍ରକାର ଚିତ୍କାର କଲେ ତ ଶ୍ରୀକୃଷ୍ଣ ଫଳ ନେବେ ନାହିଁ, ଫଳ ଦେବା ପାଇଁ ହୃଦୟରେ ଆବେଗ, ଉତ୍କଣ୍ଠା ମୂର୍ତ୍ତି ହେବା ଆବଶ୍ୟକ ଏବଂ ସର୍ବସ୍ୱ ସମର୍ପଣ କରିଦେବାର ଭାବନା ଆସିବା ଦରକାର ।

ସୁଖୀ ଯାଇଥିଲା ନେତ୍ରରୋଗ ଶାନ୍ତି ପାଇଁ; କିନ୍ତୁ ଫେରିଲା ଏକ ନୂଆ ରୋଗ ଧରି । ଶ୍ରୀକୃଷ୍ଣଙ୍କର ଅନୁପମ ରୂପଲାବଣ୍ୟ ଦେଖି ତା'ର ଆଖି ଦୁଇଟି ବନ୍ଦ ହୋଇଗଲା । ବାଙ୍କବିହାରୀଙ୍କଠାରେ ମନ ତା'ର ବାନ୍ଧିଗଲା । ଚକ୍ଷୁକୁ ତା'ର ଶ୍ରୀକୃଷ୍ଣଙ୍କ ମୋହିନୀ ମୂର୍ତ୍ତି ଅଧିକାର କରିନେଲା । ସୁଖୀ ସବୁକଥା ଭୁଲିଗଲା । ଲାଭ ଦ୍ୱାରା ଲୋଭ ବଢ଼େ । ଗୁଣ ଶ୍ରବଣ କରୁ କରୁ, ଲୀଳା ଅନୁସନ୍ଧାନ କରୁ କରୁ ତାଙ୍କୁ ଦେଖିବା ପାଇଁ ପ୍ରବଳ ଇଚ୍ଛା ହେଲା । ଦର୍ଶନ କରିବା ପରେ ସ୍ପର୍ଶ କରିବାର ଇଚ୍ଛା ଜାତ ହେଲା । ସୁଖଦ ସ୍ପର୍ଶ ବିନା ଦର୍ଶନରୁ ପୂର୍ଣ୍ଣ ସୁଖ ମିଳେନାହିଁ । ସେଥିପାଇଁ ମନ ଅଧିକ ବ୍ୟାକୁଳ ହୁଏ । ସେ ଶୁଣିଥିଲା, ଶ୍ରୀକୃଷ୍ଣଙ୍କ ହୃଦୟ ବଡ଼ କୋମଳ, ସେ ଦୀନବନ୍ଧୁ ଓ ଦୟାଳୁ; କିନ୍ତୁ ତାଙ୍କୁ ଦେଖିବା ପରେ ସୁଖୀର ଧାରଣା ବଦଳି ଗଲା । ସେ ଅନୁଭବ କଲା—ଶ୍ରୀକୃଷ୍ଣ ବଡ଼ ନିଷ୍ଠୁର । ମୁଁ ତାଙ୍କୁ ଦେଖିବା ପାଇଁ ବ୍ୟାକୁଳ ହେଉଥିଲେ ବି ସେ ଥରେ ହେଲେ ମୋ' ଆଡ଼କୁ ଚାହୁଁନାହାନ୍ତି । ମୁଁ ଶୁଣିଥିଲି ସେ ଅନ୍ତର୍ଯ୍ୟାମୀ, ସମସ୍ତଙ୍କ ହୃଦୟର କଥା ଜାଣନ୍ତି । ମୁଁ ତାଙ୍କୁ ପ୍ରେମ

କରୁଛୁ ବୋଲି କ'ଣ ସେ ଜାଣିପାରୁ ନାହାନ୍ତି, ପୁଣି ଏପରି ନିଷ୍ଠୁର ବ୍ୟବହାର କାହିଁକି କରୁଛନ୍ତି । ହଉ, ମୁଁ ବି ଆଉ ତାଙ୍କ ଆଡ଼କୁ ଚାହିଁବି ନାହିଁ ।

ସୁଖୀ ମନେ ମନେ ସିନା ଏପରି ଭାବୁଥିଲା; କିନ୍ତୁ କଥାଟା ତା'ର ଆୟତ୍ତରେ ନ ଥିଲା । ସେ ଯେତିକି ଯେତିକି ଶ୍ରୀକୃଷ୍ଣଙ୍କୁ ଭୁଲିବା ପାଇଁ ଚାହୁଁଥିଲା ସେତିକି ସେତିକି ଶ୍ରୀକୃଷ୍ଣ କଥା ତା'ର ମନକୁ ବ୍ୟାକୁଳ କରୁଥିଲା । ସୁଖୀ ଭାବିଲା—"ନିଷ୍ଠୁର କୃଷ୍ଣଙ୍କ ପାଲରେ ପଡ଼ି, ଜାଣି ଜାଣି ମହାବିପଦ ବରଣ କଲି । ପ୍ରେମରେ ପଡ଼ିଲେ ଏପରି ଦୁର୍ଗତି ଘଟେ, ଏହା ମୁଁ ଜାଣିଥିଲି । ତଥାପି ନିଜକୁ ଆୟତ୍ତରେ ରଖିପାରିଲି ନାହିଁ । ପ୍ରେମ ମାର୍ଗରେ ପ୍ରତି ପଦକ୍ଷେପରେ ଅଜସ୍ର ଦୁଃଖ, ଯନ୍ତ୍ରଣା ସହିବାକୁ ପଡ଼ିବ ବୋଲି ଜାଣିଥିଲେ ମୂଳରୁ ଶ୍ରୀକୃଷ୍ଣଙ୍କୁ ପ୍ରେମ କରି ନ ଥାନ୍ତି ।" କିନ୍ତୁ ଜାଣିଶୁଣି ତ ସେ ପ୍ରେମ କରି ନଥିଲା । ଶ୍ରୀକୃଷ୍ଣଙ୍କ ନାମ ଓ ଗୁଣରେ ଯେଉଁ ମୋହିନୀ ଶକ୍ତି ଅଛି ତାହାରିଦ୍ୱାରା କର୍ଣ୍ଣ ଓ ମନ ସ୍ୱତଃ ତାଙ୍କ ଆଡ଼କୁ ଆକର୍ଷିତ ହୋଇଯାଏ । ସୁଖୀ ସବୁକିଛି ଭୁଲିଗଲା ଏବଂ ପ୍ରତିଦିନ ମଥୁରାରୁ ଗୋକୁଳକୁ ଆସିଲା । ଶ୍ରୀକୃଷ୍ଣ ଯେଉଁଆଡ଼େ ଗଲେ ସେ ତାଙ୍କ ପଛେ ପଛେ ଗଲା ଓ ଉଚ୍ଚ ସ୍ୱରରେ ଡାକିବାକୁ ଲାଗିଲା—ଫଳ ନିଅରେ ଫଳ ।

ପ୍ରେମର ଗତି ଏପରି ବିଚିତ୍ର ଓ ବିପରୀତ ଯେ, ଯାହାକୁ ଆମେ ହୃଦୟର ସହିତ ପାଇବା ପାଇଁ ଚାହୁଁ, ସେ ଆମ ପ୍ରତି ଉଦାସୀନତା ପ୍ରକାଶ କଲେ ଉତ୍କଣ୍ଠା ଓ ଉଦ୍‌ବେଗ ବଢ଼ିଯାଏ । ଭଗବାନ ସହଜରେ ଯଦି ସମସ୍ତଙ୍କୁ ମିଳିଯାଉଥାନ୍ତେ ତେବେ ତାଙ୍କ ପ୍ରତି ଲୋକଙ୍କ ମନରେ ଏତେ ଉତ୍କଣ୍ଠା ଜାତ ହୁଅନ୍ତା ନାହିଁ । ପ୍ରେମର ଉପେକ୍ଷା ଉତ୍କଣ୍ଠାକୁ ଅଧିକ ବଢ଼ାଇଦିଏ । ଯେତେ ଅଧିକ ଉତ୍କଣ୍ଠା ପରେ ମିଳନ ହୁଏ ସେତିକି ଅଧିକ ସୁଖ ଅନୁଭୂତ ହୁଏ । ସୁଖୀର ଉତ୍କଣ୍ଠା ଚରମସୀମାରେ ପହଞ୍ଚିଗଲା । କ୍ଷୁଧା, ତୃଷ୍ଣା, ନିଦ୍ରା ସବୁକିଛି ସେ ଭୁଲିଗଲା । ସକାଳେ ଶ୍ରୀକୃଷ୍ଣ ନିଦରୁ ଉଠିବା ପୂର୍ବରୁ ସୁଖୀ ଆସି ନନ୍ଦଙ୍କ ଦୁଆର ମୁହଁରେ ପହଞ୍ଚିଯାଉଥିଲା । ସେ ଭାବୁଥିଲା, ମା' ଯଶୋଦା ମଧୁର ଗୀତ ଗାଇ ଶ୍ରୀକୃଷ୍ଣଙ୍କୁ ଉଠାଇବେ । ଶ୍ରୀକୃଷ୍ଣ ନିଦରୁ ଉଠି ମୁହଁହାତ ଧୋଇବାମାତ୍ରେ ମା' ଯଶୋଦା ରୋଟି ଓ ଲହୁଣୀ ତାଙ୍କ ହାତରେ ଦେବେ । ସେ ଛୋଟ ଛୋଟ ଦାନ୍ତରେ ଧୀରେ ଧୀରେ ତାକୁ ଖାଇବେ ଏବଂ ଖାଇସାରି ପିଲାମାନଙ୍କ ସହିତ ଖେଳିବାକୁ ଯିବେ, ମୁଁ ବି ତାଙ୍କ ପଛେ ପଛେ ଯିବି । ସେ ଗୋପ ମାନଙ୍କ ଘରଭିତରକୁ ପଶିଯିବେ, ମୁଁ ବି ତାଙ୍କ ସହିତ ଯିବି । ଫଳବାଲୀକୁ କିଏ ଅଟକାଇବ ? ଶ୍ରୀକୃଷ୍ଣ ଗୋପୀମାନଙ୍କୁ ନାନାଭାବରେ ହଇରାଣ କରିବେ । ହାୟ, ଗୋପୀମାନେ କେଡ଼େ ଭାଗ୍ୟବତୀ ? ସେମାନେ ଶ୍ରୀକୃଷ୍ଣଙ୍କୁ ବିନା ସଙ୍କୋଚରେ ଗୁଢରେ ଜାକିଧରନ୍ତି । ମୁଁ କେବଳ ହତଭାଗିନୀ, ଯାହାକୁ ଶ୍ରୀକୃଷ୍ଣ ଆଡ଼ ଆଖିରେ ବି ଚାହୁଁ ନାହାନ୍ତି । ଅନ୍ୟମାନଙ୍କ ସହିତ ହସି ହସି କଥା କହିଲାବେଳେ ସେ ମୋତେ ଥରେ ହେଲେ ଚାହୁଁ ନାହାନ୍ତି । ସେ ଠିକ୍ କରୁଛନ୍ତି । କାରଣ ମୋର ସେ

ଯୋଗ୍ୟତା କାହିଁ ? ମୁଁ ତ ଏକ ହତଭାଗିନୀ, ନୀଚଜାତୀୟା, ମୋତେ ଛୁଇଁବା କଥା ନୁହେଁ; କିନ୍ତୁ ଶ୍ରୀକୃଷ୍ଣ ତ ଅଶରଣର ଶରଣ, ଦୀନବନ୍ଧୁ, ହୁଏତ ମୋତେ ନୀଚ, ଅଧମ, ଅବଳା ବୋଲି ଭାବି ଦୟା କରିବେ । ଏହିପରି ଭାବି ଭାବି ବାଟ ପଟେ ଯାଇ ପାହୁଥାଉଥିଲା । ସୁଖୀର ଉତ୍କଣ୍ଠା ଯେତେବେଳେ ସୀମା ଅତିକ୍ରମ କରିଗଲା ସେତେବେଳେ ଶ୍ରୀକୃଷ୍ଣ ତା'ର ମନୋକାମନା ପୂର୍ଣ୍ଣ କରିଥିଲେ ।

ପୂର୍ବପରି ସୁଖୀ ଦିନେ ଗୋକୁଳରେ ଯାଇ ପହଞ୍ଚିଲା ଏବଂ ଅଭ୍ୟାସ ଅନୁସାରେ 'ଫଳ ନିଅ ଫଳ' ବୋଲି ଡାକପକାଉଥିଲା । ତା'ର ଡାକ ଶୁଣିବାମାତ୍ରେ ସର୍ବବିଧ ଫଳଦାତା ସ୍ୱୟଂ ଫଳ ନେବା ପାଇଁ ଆସି ପହଞ୍ଚିଲେ । ସେ ଥିଲେ ମହାଦାନୀ, କୃପଣ ପରି ଖାଲି ହାତରେ କିପରି ଆସିବେ । ଶ୍ରୀକୃଷ୍ଣ ଘର ଭିତରେ ଥାଇ ଡାକିଲେ—"ଏ ଫଳବାଲୀ ! ରହ ରହ ।" ଏହା ଶୁଣିବାମାତ୍ରେ ଫଳବାଲୀ ଠିଆ ହୋଇଗଲା ଆଉ ତା'ର ଚିରପୋଷିତ ବଳବତୀ ଆକାଙ୍କ୍ଷା ପୂର୍ଣ୍ଣ ହୋଇଗଲା । ସେ ଯାହା ଚାହୁଁଥିଲା ତାହା ପାଇଗଲା ଓ ତା'ର ମନୋକାମନା ପୂର୍ଣ୍ଣ ହେଲା । ଶ୍ରୀକୃଷ୍ଣ ତା'ର ନାମ ଧରି ଡାକିଲେ, ଫଳ ନେବାପାଇଁ ସ୍ୱୀକୃତ ଦେଲେ ଓ ଶ୍ରୀମୁଖରେ ରହିବାକୁ କହିଲେ ତେଣୁ ସୁଖୀ ନନ୍ଦଙ୍କ ଦ୍ୱାରଦେଶରେ ଠିଆହୋଇ ରହିଲା ।

ପୂର୍ବେ ଜନସପନ କିଣିବାରେ ପଇସାପତ୍ର କାରବାର ନ ଥିଲା । ଗାଁ ଗହଳରେ ପର୍ଯ୍ୟାପ୍ତ ଶସ୍ୟ ଉତ୍ପନ୍ନ ହେଉଥିଲା । ଧାନ, ଚାଉଳ, ଗହମ ବଦଳରେ ଲୋକେ ଅନ୍ୟାନ୍ୟ ଆବଶ୍ୟକୀୟ ବସ୍ତୁ ସଂଗ୍ରହ କରୁଥିଲେ । ଦ୍ରବ୍ୟ ବିନିମୟ ମାଧ୍ୟମରେ କିଣାବିକା ଚାଲୁଥିଲା । ତେଣୁ ଫଳ ନେବାପାଇଁ ଶ୍ରୀକୃଷ୍ଣ ଅଞ୍ଜୁଳାଏ ଶସ୍ୟ ଧରି ଆସିଲେ । କୋମଳ କମଳ ଦଳପରି ତାଙ୍କର କରପଦ୍ମ ସୁନ୍ଦର ଦେଖାଯାଉଥିଲା । ଆସିବାବେଳେ ଆଙ୍ଗୁଳି ଫାଙ୍କ ଦେଇ ଶସ୍ୟତକକୁ ଗଳିପଡ଼ୁଥିଲା । ତା'ଦ୍ୱାରା ସେ ସମସ୍ତଙ୍କୁ ଅନ୍ନ ବିତରଣ କଲାପରି ମନେ ହେଉଥିଲା । ଅଞ୍ଜଳିପୂର୍ଣ୍ଣ ଶସ୍ୟ ଧରି ଶ୍ରୀକୃଷ୍ଣ ସୁଖୀ ପାଖରେ ଆସି ପହଞ୍ଚିଲେ ଓ ପ୍ରେମପୂର୍ଣ୍ଣ ହୃଦୟରେ ଅମୃତମୟ ବଚନରେ କହିଲେ—ନେ, ମୋତେ ଫଳ ଦେ । ଏହା କହି ହାତରେ ଯାହା ଥିଲା ସବୁ ତାକୁ ଦେଇଦେଲେ । କୃପାସାଗର ଯାହାପ୍ରତି ସନ୍ତୁଷ୍ଟ ହୁଅନ୍ତି ତାକୁ ସବୁକିଛି ଦେଇ ଦିଅନ୍ତି । ଯେ ଯେତେ ଦାନ କରେ ସେ ସେତେ ଅଧିକ ଲାଭ କରେ, ଏହା ହେଉଛି ଶାସ୍ତ୍ରର ସିଦ୍ଧାନ୍ତ । ଭଗବାନ ଯେତେବେଳେ ନିଜର ସର୍ବସ୍ୱ ଦେଇଦିଅନ୍ତି, ସେତେବେଳେ ଭକ୍ତ କୌଣସି ଫଳ ନିଜ ପାଖରେ ନ ରଖି ସବୁ ଫଳ ଫଳଦାତାଙ୍କୁ ସମର୍ପଣ କରିଦିଏ । ଶ୍ରୀକୃଷ୍ଣ ନିଜର ପ୍ରିୟ ଅନୁଗତଙ୍କୁ ନିଃସ୍ୱ କରିଦେବେ କିପରି ? ତେଣୁ ସେ ଭକ୍ତର ଭକ୍ତିପାତ୍ରକୁ ରତ୍ନରେ ପୂର୍ଣ୍ଣ କରି ଦିଅନ୍ତି । ଭକ୍ତ ଓ ଭଗବାନଙ୍କ ମଧ୍ୟରେ ଏହିପରି ଆଦାନ ପ୍ରଦାନ ଚିରକାଳ ଚାଲିଥାଏ ।

ଭଗବାନ ଶ୍ରୀକୃଷ୍ଣ ଯେତେବେଳେ ଆଣିଥିବା ଶସ୍ୟ ଫଳବାଲୀକୁ ଦେଇ ହାତ ଖାଲି କରିଦେଲେ, ସେତେବେଳେ ଫଳବାଲୀ ଗୋଟିଏ ଗୋଟିଏ କରି ସବୁ ଫଳ ତାଙ୍କ ଦୁଇହାତରେ ରଖିଦେଲା । ଶ୍ରୀକୃଷ୍ଣଙ୍କର ଦୁଇହାତ ଫଳରେ ପୂର୍ଣ୍ଣ ହୋଇଯିବାରୁ ତାଙ୍କ ଅଣ୍ଟାରୁ ଖସି ପଡ଼ୁଥିବା ପୀତାମ୍ବର କିଏ ସମ୍ଭାଳି ରଖିବ ? କପୋଳରେ ଦେଖାଦେଇଥିବା ବିନ୍ଦୁ ବିନ୍ଦୁ ଝାଳକୁ କିଏ ପୋଛିବ ? ସୁଖୀର ସମସ୍ତ ସଙ୍କୋଚ ଦୂର ହୋଇଗଲା । ସେ ଶ୍ରୀକୃଷ୍ଣଙ୍କ ପୀତାମ୍ବରକୁ ଅଣ୍ଟାରେ ଭଲ କରି ବାନ୍ଧିଦେଲା । ନିଜ ଲୁଗାକାନିରେ ସୁଖୀ ଶ୍ରୀକୃଷ୍ଣଙ୍କ କପୋଳରୁ ଝାଳ ପୋଛି ଦେଲା ଆଉ ଆଦରରେ ବାରମ୍ବାର କହିଲା—"ଯାଅ, ଘରକୁ ନେଇଯାଅ ।"

ଶ୍ରୀକୃଷ୍ଣ ଦେଖିଲେ ସୁଖୀ ସବୁ ଫଳ ତାଙ୍କୁ ଦେଇ ପାତ୍ରକୁ ଖାଲି କରିଦେଲା । ସେ ବି ସୁଖୀର ପାତ୍ରକୁ ରତ୍ନରେ ପୂର୍ଣ୍ଣ କରିଦେଲେ । ସୁଖୀ କୃତାର୍ଥ ହୋଇଗଲା ଓ ନିଜକୁ କୃତକୃତ୍ୟ ମନେ କଲା । ସୁଖୀର ଜୀବନ ଧନ୍ୟ ହୋଇଗଲା । ଶ୍ରୀକୃଷ୍ଣ ସୁଖୀର ସବୁ ଫଳ ସହିତ ତା'ର ମନକୁ ନେଇଗଲେ ।

ମହର୍ଷି ସୂତ କହିଲେ—"ମୁନିଗଣ ! ଶ୍ରୀକୃଷ୍ଣ ଗୋକୁଳରେ ରହି ଏହିପରି ପ୍ରତିଦିନ ଏକରୁ ବଳି ଏକ ଅଦ୍ଭୁତ ସରସ ଲୀଳା କରିବାକୁ ଲାଗିଲେ । ନିଜର ଚରଣ ଧୂଳିଦ୍ୱାରା ବୃନ୍ଦାବନକୁ ପବିତ୍ର କରିବା ପାଇଁ ତାଙ୍କର ଇଚ୍ଛା ଜାତ ହେଲା । କାରଣ, ଗୋକୁଳ ହେଉଛି ବାଳଲୀଳାର କ୍ଷେତ୍ର । ବାତ୍ସଲ୍ୟ ରସର ଉପାସକମାନଙ୍କ ପାଇଁ ବାଳଲୀଳା ଅଧିକ ସୁଖଦାୟକ । ଶ୍ରୀକୃଷ୍ଣ ହେଲେ ସମସ୍ତ ରସର ଶ୍ରେଷ୍ଠ ଦାତା । ତେଣୁ ତାଙ୍କୁ ରସିକେଶ୍ୱର କହନ୍ତି । ସଖ୍ୟ ଓ ମାଧୁର୍ଯ୍ୟ ଲୀଳାର କ୍ଷେତ୍ର ହେଉଛି ବୃନ୍ଦାବନ । ଗୋକୁଳବାସୀ ବାତ୍ସଲ୍ୟ ରସର ଓ ବୃନ୍ଦାବନବାସୀ ମଧୁର ରସର ଉପାସନା କରୁଥିଲେ ; ତେଣୁ ଗୋକୁଳ ଓ ବୃନ୍ଦାବନରେ ଯଥାକ୍ରମେ ବାତ୍ସଲ୍ୟ ଓ ମଧୁର ରସର ପ୍ରାବଲ୍ୟ ଦେଖାଯାଏ । ବୃନ୍ଦାବନ ହେଉଛି ରାସରାସେଶ୍ୱରୀଙ୍କ ଲୀଳାଭୂମି । ସେଠାରେ ଶ୍ରୀକୃଷ୍ଣଙ୍କୁ କିଏ ପଚାରେ ? କିନ୍ତୁ ଭଗବାନ୍ ଶ୍ରୀକୃଷ୍ଣଙ୍କର ଯେତେବେଳେ ବୃନ୍ଦାବନ ଯିବାର ଇଚ୍ଛା ହେଲା ସେତେବେଳେ ଗୋପାଳମାନଙ୍କ ମନରେ ସେହି ପ୍ରେରଣା ଜାତ ହୋଇଗଲା । କାରଣ ପରମପ୍ରଭୁ ହିଁ ସବୁ ପ୍ରେରଣାର ମୂଳ ଉତ୍ସ । ସମଗ୍ର ଜଗତ୍ ତାଙ୍କର ପ୍ରେରଣାରେ ପରିଚାଳିତ । ବର୍ତ୍ତମାନ ଶ୍ରୀକୃଷ୍ଣଙ୍କର ଦୈନନ୍ଦିନ ଲୀଳା ବର୍ଣ୍ଣନା ପରେ ବୃନ୍ଦାବନ ଲୀଳା କଥା କହିବି ।

## ଛପପଦ୍ୟ

ନନ୍ଦ ଭବନ କେ ଲେଓ ଫଳ ସୁକ୍ରିୟା ବୋଲୀ ।
କାନ୍ଦୀ ଅନୁଗତ କୃଷ୍ଣ କୃପା କୀ ଗଠରୀ ଖୋଲୀ ।

ପସ ଭର ଲଇୟେ ଅନ୍ୟ ଦଇୟୋ କର ଅନେ କୀୟେ ।
ସୁଖିୟା ସବ ଫଳ ତୁରତ କରନ ମେଁ ହୀରକେ ଦୀୟେ ॥
କୃଷ୍ଣ ହାଥ ଫଳତେଁ ଭରେ, ହୀର ରତନନ ଡଲିଆ ଭରୀ ।
ୟୋ ସୁଖିୟା ସବ ଶ୍ୟାମକୁଁ, ଫଳ ଦୈକେଁ ଜଗତେଁ ତରୀ ॥



## କ୍ରୀଡ଼ାପ୍ରିୟ ରାମକୃଷ୍ଣ

ଇତ୍ଥଂ ଯଶୋଦା ତମଶେଷଶେଖରଂ ।
ମତ୍ୱା ସୁତଂ ସ୍ନେହନିବଦ୍ଧଧୀର୍ନୃପ ॥
ହସ୍ତେ ଗୃହୀତ୍ୱା ସହରାମମଚ୍ୟୁତଂ
ନୀତ୍ୱା ସ୍ୱବାଟଂ କୃତବତ୍ୟଥୋଦୟମ୍ ॥

ଶ୍ରୀ ଭା ୧୦ ସ୍କ, ୧୧ ଅ, ୨୦ ଶ୍ଳୋକ

### ଛପ୍ପୟ

ଅବ କ୍ରୀଡାପ୍ରିୟ କୃଷ୍ଣ ଗ୍ୱାଲ ବାଲକ ସଙ୍ଗ ଜାବେଂ ।
ହୋହୁଁ ଖେଲମେଁ ମଗ୍ନ ଭୁଲୟେଂ ମାତୁ ନ ଆବେଂ ॥
କହେଂ ମାତୁପ୍ରିୟ ବଚନ ପ୍ୟାର କରକେଂ ଫୁସଲାବେଂ ।
ଆବେଂ ଭର ତନୁ ଧୂର ଲାଲ ପୁନ ମାତୁ ନ୍ହବାବେଂ ॥
ମୈୟା ପରସେ ପ୍ରେମତେଁ ବାବା ସଙ୍ଗ ଭୋଜନ କରେଂ ।
କବହୁଁ ଉପଟେଁ ପ୍ରେମତେଁ, କବହୁଁ ମାତାତେଁ ଲରେଂ ॥

ତ୍ୟାଗୀ, ବୈରାଗୀ, ସନ୍ନ୍ୟାସୀମାନଙ୍କ ପାଇଁ ଏକାନ୍ତ ଭୋଜନ ବାଞ୍ଛନୀୟ ମନେହେଲେ ମଧ୍ୟ ସଂସାରୀମାନଙ୍କଠାରେ ସେ ନିୟମ ଲାଗୁହୁଏ ନାହିଁ । ଗୃହସ୍ଥ ଜୀବନରେ ଭୋଜନକାଳୀନ ଆନନ୍ଦ ସେତେବେଳେ ମିଳେ ଯେତେବେଳେ ଭୋଜନ କର୍ତ୍ତାର ଥାଳି ପାଖରେ ପିଲାମାନେ ବସିଥାନ୍ତି । ନିଜେ ଗୁଣ୍ଡାଏ ପାଟିକୁ ନେଇ ଗୃହସ୍ଥ ଅନ୍ୟ ଗୁଣ୍ଡାକ ପିଲାଙ୍କ ପାଟିରେ ଦିଏ । ପିଲାମାନେ ଥାଳି ପାଖରେ ବସି ଯାହା ସବୁଠୁ ଭଲ ଖାଦ୍ୟ ତାକୁ ଆଗ ଶୀଘ୍ର ଶୀଘ୍ର ଖାଇଦିଅନ୍ତି । ସେମାନଙ୍କ ମନରେ ଭୟ କି ସଙ୍କୋଚ ନଥାଏ କି ମିଥ୍ୟା

ଶିକ୍ଷାଗୁରୁ ଭାବନା ନ ଥାଏ । ଯାହା ସେମାନଙ୍କୁ ଭଲ ଲାଗେ ତାହା ସେମାନେ କରନ୍ତି ଏବଂ ଯାହା ସେମାନଙ୍କୁ ଭଲଲାଗେ ତାହା ଖାଆନ୍ତି ।

ଅରଣ୍ୟରେ ରହି ତପସ୍ୟା କରୁଥିବା ମୁନିପୁତ୍ରମାନଙ୍କ ପକ୍ଷରେ ଗାମ୍ଭୀର୍ଯ୍ୟ ରକ୍ଷା କରିବା ପ୍ରଶଂସନୀୟ କାର୍ଯ୍ୟ ହେଲେ ମଧ୍ଯ ଗାର୍ହସ୍ଥ୍ୟ ଜୀବନରେ ବାଳକମାନଙ୍କର ଚଞ୍ଚଳତା ପ୍ରଶଂସନୀୟ କାର୍ଯ୍ୟ ବୋଲି ବିବେଚିତ ହୁଏ । ବାଳକ ଯେତିକି ଚଞ୍ଚଳ ହେବ ପିତାମାତା ସେତିକି ଆନନ୍ଦିତ ହେବେ । ବାଳକମାନଙ୍କର ଚଞ୍ଚଳତା ଦେଖି ପିତାମାତାଙ୍କ ସହିତ ସ୍ୱଜନ ତଥା ବନ୍ଧୁବାନ୍ଧବମାନେ ମଧ୍ଯ ଆନନ୍ଦିତ ହୁଅନ୍ତି । ଭାଗ୍ୟବାନ ଗୃହସ୍ଥମାନଙ୍କ ପକ୍ଷରେ ଏ ପ୍ରକାର ଚେଷ୍ଟା ଦେଖିବାକୁ ସୁଯୋଗ ମିଳେ ।

ମହର୍ଷି ସୂତ କହିଲେ—"ମୁନିଗଣ ! ଶ୍ରୀକୃଷ୍ଣ ଗୋକୁଳଠାରୁ କିଛି ଦୂରରେ ଥିବା ଯମୁନା କୂଳକୁ ଖେଳିବା ପାଇଁ ଯିବାକୁ ଲାଗିଲେ । ସେଠାରେ ଓଦା ବାଲିରେ ଘର କରି, ଗାଈ ବାଛୁରି ଆଦି ତିଆରି କରି ସାଙ୍ଗମାନଙ୍କ ସହିତ ଖେଳିଲେ । ରାମ ଓ କୃଷ୍ଣଙ୍କ ଝିଅ ପିଅ ପାଇଁ ମା' ସକାଳୁ ଦୁଇପହର ପର୍ଯ୍ୟନ୍ତ ବ୍ୟସ୍ତ ରହୁଥିଲେ । ପ୍ରତିଦିନ ଷୋଡ଼ଶ ଭୋଗ କରିବା ସଙ୍ଗେ ସଙ୍ଗେ ଯେଉଁ ଖାଦ୍ୟକୁ ଶ୍ରୀକୃଷ୍ଣ ଅଧିକ ଭଲପାଆନ୍ତି ତାହା ଅଧିକ ରାନ୍ଧୁଥିଲେ । ମା' ପ୍ରତିଦିନ ଛପନ ପ୍ରକାର ବ୍ୟଞ୍ଜନ ପ୍ରସ୍ତୁତ କରୁଥିଲେ । ଯେତେପ୍ରକାର ଅନ୍ନବ୍ୟଞ୍ଜନ ରାନ୍ଧିଲେ ମଧ୍ଯ ମା' କୌଣସି ପ୍ରକାର କଷ୍ଟ ଅନୁଭବ କରୁ ନ ଥିଲେ । କାରଣ ପିଲାମାନଙ୍କୁ ପେଟଭରି ଖୁଆଇବାରେ ମା' ମାନେ ଆନନ୍ଦ ଅନୁଭବ କରନ୍ତି । ସକାଳୁ ଉଠିବାମାତ୍ରେ ମା' ନିତ୍ୟକର୍ମ ସାରି ଡାଲି, ଭାତ, ଘେଣ୍ଟି, ଶାଗ, ଭଜା ବିବିଧ ବ୍ୟଞ୍ଜନ ପ୍ରସ୍ତୁତ କରିବାରେ ଲାଗିଯାଇଥିଲେ । ପର୍ବପର୍ବାଣୀ ଦିନରେ ତାଙ୍କୁ ମୁହୂର୍ତ୍ତେ ବି ଅବସର ମିଳୁ ନ ଥିଲା । ସକାଳୁ ଉଠିବାମାତ୍ରେ ମା' ରାମକୃଷ୍ଣଙ୍କୁ ଲହୁଣୀ, ମିଶ୍ରି, ପୁରି, କଦଳୀ ଆଦି ଖୁଆଇ ଓ ବେଶଭୂଷା କରାଇ ଖେଳିବାକୁ ଛାଡ଼ିଦେଉଥିଲେ । ପିଲାମାନେ ଖେଳିବାକୁ ଚାଲିଗଲା ପରେ ରୋହିଣୀ ଓ ଯଶୋଦା ଅନ୍ୟାନ୍ୟ ପରିଚାରିକାମାନଙ୍କ ସାହାଯ୍ୟରେ ଘରେଇ କାର୍ଯ୍ୟରେ ଲାଗିପଡ଼ୁଥିଲେ । ପୂଜକ ଯେତେବେଳେ ନାରାୟଣଙ୍କୁ ପୂଜା କରିସାରି ଭୋଗ ଲଗାଇଦିଏ ସେତେବେଳେ ନନ୍ଦ ଆସି ପଚାରନ୍ତି—"ରାମ ଓ କୃଷ୍ଣ କୁଆଡ଼େଗଲେ ?"

ମା' କହନ୍ତି—"ସକାଳୁ ଖେଳିବାକୁ ଯାଇଛନ୍ତି ଯେ ଏ ପର୍ଯ୍ୟନ୍ତ ଫେରି ନାହାନ୍ତି ।"

ନନ୍ଦ କହନ୍ତି—"ଜଣେ ଜଣକୁ ବଳି ଖେଳୁଆଡ଼ ହୋଇ ଯାଇଛନ୍ତି । ସେ ଦୁହିଁଙ୍କୁ ଖେଳିବା ପାଇଁ ବେଶୀ ଦୂରକୁ ଛାଡ଼ିଦିଅ ନାହିଁ ।"

ମିଥ୍ୟା କ୍ରୋଧ ପ୍ରକାଶ କରି ମା' ଯଶୋଦା କହନ୍ତି—"ସେମାନେ ମୋ' କଥା ମାନିଲେ ତ ? ସେ ଦୁହେଁ ତ କାହାରି କଥା ଶୁଣି ନାହାନ୍ତି । ତୁମେ ତ ତାଙ୍କୁ ମୁଣ୍ଡ ଉପରେ ବସେଇଛ ।"

ନନ୍ଦ କଥା ବଢ଼ି ଯାଉଥିବାର ଲକ୍ଷ୍ୟ କରି ଧୀରେ ଧୀରେ କହନ୍ତି—"କ'ଣ ହେଲା ? ପୁଅ ପିଲା । ବର୍ତ୍ତମାନ ତାଙ୍କର ଖାଇବା ଓ ଖେଳିବାର ବେଳ । ବଡ଼ ହେଲେ ବିବାହ ହେବେ, ଗୃହସ୍ଥ ହୋଇଯିବେ । ତୁମେ ବି ଯେତେବେଳେ ପିଲା ଥିଲ ଏହିପରି କାହାରି କଥା ନ ଶୁଣି ଖେଳୁଥିବ ।"

ଦୁହେଁ ପରସ୍ପରକୁ ଗୁହାରି ହେଉଥିବାବେଳେ ରୋହିଣୀ ଆସି ପହଞ୍ଚିଲେ ଏବଂ ଦୁଇ ବ୍ରଜଜଣ ଦାସୀଙ୍କୁ ପୁଅ ଦୁହିଁଙ୍କୁ ଖୋଜି ଆଣିବା ପାଇଁ ପଠାଇଲେ । କାରଣ, ସେ ଦୁହେଁ ନ ଆସିବା ଯାଏ ନନ୍ଦ ଖାଇବେ ନାହିଁ । ଯେତେବେଳେ ସେମାନେ ଆସନ୍ତି ନନ୍ଦ କହନ୍ତି— "ଆରେ, ତୁମେ ଦୁହେଁ ତ ବଡ଼ ଦୁଷ୍ଟାମି କଲଣି । ମୁଁ କେତେ ସମୟ ହେଲା ଅପେକ୍ଷା କରି ବସିଛି । କ'ଣ ଏତେ ସମୟ ଧରି ଖେଳୁଛ । ଯାହା କର ପଛକେ ଖାଇବାବେଳକୁ ଫେରିଆସିବା ଉଚିତ ।"

ଶ୍ରୀକୃଷ୍ଣ ଗେହ୍ଲେଇ ହୋଇ କହନ୍ତି—"ବାପା, ଆମେ ଆଜି ସେଠାକୁ ଚାଲି-ଯାଇଥିଲୁ । ସେଠାରେ ବହୁତ ବଳିଚ କୋଳି ପାଚିଥିଲା । ଆମେ କୋଳି ତୋଳି ଖାଇଲୁ ।"

ଏହା ଶୁଣି ନନ୍ଦ କହନ୍ତି—'ଆରେ ବାବୁ ! ବଳିଚ କୋଳି ତୋଳିବ ନାହିଁ, ହାତରେ କଣ୍ଟା ଫୋଡ଼ିଯିବ । ହାତ ବିନ୍ଧିବ । କଞ୍ଚା କୋଳି ଖାଇବ ନାହିଁ, ତଣ୍ଟି ରନ୍ଧି ହୋଇଯିବ । ହଉ ଚାଲ, ଖାଇବା । ଏହା କହି ଦୁହିଁଙ୍କୁ ପାଖରେ ବସାଇ ଖାଆନ୍ତି । ନନ୍ଦ ରାମଶ୍ୟାମଙ୍କ ପାଟିରେ ଖାଦ୍ୟ ଦେଲେ କୃଷ୍ଣ ନନ୍ଦଙ୍କ ଦାଢ଼ିରେ ଖିରି ବୋଳିଦିଅନ୍ତି । ନନ୍ଦ କହନ୍ତି—ବାପ କହ୍ନେଇ ! ତୁ ବଡ଼ ଚଗଲା ହୋଇଗଲୁଣି ।"

କେବେ କେବେ ରାମକୃଷ୍ଣ ଭୋଗ ଲାଗିବା ପୂର୍ବରୁ ଆସି ଜିଦ୍‌ଧରି କହନ୍ତି—"ମା' ଆମକୁ ବଡ଼ ଭୋକ ଲାଗିଲାଣି, ଶୀଘ୍ର ଖାଇବାକୁ ଦିଅ ।"

ମା' ଯଶୋଦା କହନ୍ତି—"ପୁଅ ! ଟିକଏ ରହ । ଏ ପର୍ଯ୍ୟନ୍ତ ନାରାୟଣଙ୍କୁ ଭୋଗ ଦିଆଯାଇ ନାହିଁ । ଠାକୁରଙ୍କୁ ଭୋଗ ନ ଦେଇ ଖାଇଲେ କାନ ପାଚିଯାଏ ।"

ଶ୍ରୀକୃଷ୍ଣ ପୂଜକ ପାଖକୁ ଯାଇ କହନ୍ତି—' ପଣ୍ଡିତ ମହାଶୟ ! ଶୀଘ୍ର ଭୋଗ ଦିଅ । ଏହି ସମୟରେ ବାପା ଆସିଯାଆନ୍ତି ଏବଂ ପିଲାମାନଙ୍କୁ ଏଣୁତେଣୁ କଥାରେ ଭୁଲାଇ ଦିଅନ୍ତି । କୋଳରେ ବସାଇ ନାନାପ୍ରକାରେ ଗେହ୍ଲା କରନ୍ତି । ଶ୍ରୀକୃଷ୍ଣଙ୍କ ହାତକୁ ଆପୁଡ଼େଇ କହନ୍ତି, ଏ ଆଙ୍ଗୁଳିଟି ତୋର, ଏଇଟି ମୋର, ଏ ଆଙ୍ଗୁଳିଟି ତୋ' ମା'ର, ଏହା ତୋର କେଉଁଠିର ଆଙ୍ଗୁଳି । ଶେଷରେ ବୁଢ଼ା ଆଙ୍ଗୁଳିକୁ ଧରି କହନ୍ତି—ଏଟା ବଳଦର ଖୁଣ୍ଟ । ଏହା କହି ଶ୍ରୀକୃଷ୍ଣଙ୍କ ଦୁଇ ହାତକୁ ନେଇ ନିଜ ମୁହଁରେ ଲଗାନ୍ତି ଏବଂ କାଖରେ କୁତୁକୁତୁ କରନ୍ତି । ଶ୍ରୀକୃଷ୍ଣ ହସି ହସି ଗଡ଼ିଯାଆନ୍ତି । ଆନନ୍ଦରେ ଦୁଇ ଆଖିରୁ ଲୁହ ଗଡ଼ିପଡ଼େ ।

ଏହାପରେ ନନ୍ଦ କହନ୍ତି—"ଚାଲ, ଭୋକ ଲାଗିଯାଉଛି, ଖାଇବା ଚାଲ ।" ଏହିପରି ପ୍ରତିଦିନ ମାତା ପିତା ଓ ଆତ୍ମୀୟସ୍ୱଜନଙ୍କୁ ନିଜର ବାଲ୍ୟଲୀଳା ଦ୍ୱାରା ଶ୍ରୀକୃଷ୍ଣ ଆନନ୍ଦ ପ୍ରଦାନ କରିବାକୁ ଲାଗିଲେ ।"

ଦିନେ ଶ୍ରୀକୃଷ୍ଣଙ୍କ ଜନ୍ମ ନକ୍ଷତ୍ର ରୋହିଣୀ ନକ୍ଷତ୍ର ପଡ଼ିଲା । ମା' ସେଦିନ ନାନାପ୍ରକାର ସୁସ୍ୱାଦୁ ଖାଦ୍ୟ ପ୍ରସ୍ତୁତ କଲେ ଏବଂ ଦାନ କରିବା ଉଦ୍ଦେଶ୍ୟରେ ବହୁ ଗାଈଙ୍କୁ ସଜାଇଲେ । ନାରାୟଣଙ୍କୁ ଭୋଗ ଦିଆହୋଇଗଲା । ନନ୍ଦ ପଚାରିଲେ—"ଆରେ, ବଲିଆ ଆଉ କହ୍ନେଇ କୁଆଡ଼େ ଗଲେ, ଏପର୍ଯ୍ୟନ୍ତ ଫେରିଲେ ନାହିଁ !"

ସେଦିନ ରାମ ଓ ଶ୍ୟାମ ଯମୁନା କୂଳକୁ ଖେଳିବା ପାଇଁ ଚାଲିଯାଇଥିଲେ । ପିଲାମାନଙ୍କ ସହିତ ଖେଳରେ ମାତିଥା'ନ୍ତି । ଏଇସମୟରେ ମା' ଆସି କହିଲେ—"ଆରେ ଖାଇବ ଚାଲ । ବାପା କେତେବେଳୁ ଅପେକ୍ଷା କରି ବସିଛନ୍ତି" କିନ୍ତୁ ଶ୍ରୀକୃଷ୍ଣ କହିଲେ— "ନା ମା ! ଆମେ ଖେଳିସାରି ଯିବୁ ।" ମା' ନିରୁପାୟ ହୋଇ ପିଲାଙ୍କୁ ଅଧିକ ବିରକ୍ତ ନ କରିବା ଉଦ୍ଦେଶ୍ୟରେ ଫେରି ଆସିଲେ ଓ ନନ୍ଦଙ୍କୁ କହିଲେ—ପିଲାଙ୍କୁ ଅଧିକ ଗେହ୍ଲା କରିବାରୁ ସେମାନେ ଖରାପ ହୋଇଯାଉଛନ୍ତି । ସେମାନଙ୍କୁ ମୁଣ୍ଡ ଉପରେ ବସାଇଲେ ଏମିତି ଅମାନିଆ ହେବେ ।"

ରୋହିଣୀଙ୍କ କଥା ଶୁଣି ବାତ୍ସଲ୍ୟମୟୀ ଯଶୋଦା କହିଲେ—"ନାଣି, ତୁମେ ଏ ଭଜା ତରକାରୀକୁ ଦେଖ, ମୁଁ ସେମାନଙ୍କୁ ନେଇ ଆସୁଛି । ଏହା କହି ସେ ଯମୁନା କୂଳକୁ ଯାଇ ଦେଖିଲେ ପିଲାମାନେ ପୁରା ଦମ୍‌ରେ ଖେଳୁଛନ୍ତି । ପିଲାମାନଙ୍କୁ ଖେଳୁଥିବାର ଦେଖି ସ୍ନେହମୟୀ ଜନନୀଙ୍କ ସ୍ତନରୁ କ୍ଷୀର ଆପେ ଆପେ ଝରିପଡ଼ିଲା । ସେ ଦୂରରୁ ପିଲାମାନଙ୍କୁ ଉଚ୍ଚ ସ୍ୱରରେ ଡାକିଲେ—"ରେ କହ୍ନେଇ ! ଏଥର ଆ, କହ୍ନେଇ ମୋର ରଜା, ମୋ' କଥାରେ ସେ କେବେହେଲେ ଅମାନିଆ ହୁଏନାହିଁ । ଦେଖ, ଆଜି ବହୁତ ଡେରି ହୋଇଗଲାଣି । ସୂର୍ଯ୍ୟ ମୁଣ୍ଡ ଉପରକୁ ଉଠିଆସିଲେଣି । ଖେଳି ଖେଳି ତୁ ଥକିପଡ଼ିଲୁଣି, ମୁହଁ ଶୁଖି ଗଲାଣି । ଭୋକରେ ପେଟ ଯାଇ ପିଠିରେ ଲାଗିଲାଣି । ଆ, ଶୀଘ୍ର ଆ, ଖାଇବୁ ଚାଲ ।"

ଶ୍ରୀକୃଷ୍ଣ କିନ୍ତୁ ନିଜ ଖେଳରେ ଆତ୍ମବିସ୍ମୃତ ହୋଇପଡ଼ିଥିଲେ ; ତେଣୁ ମା'ଙ୍କ କଥା ସେ ଶୁଣିପାରିଲେ ନାହିଁ । ଯଶୋଦା ଭାବିଲେ, ପ୍ରଥମେ ବଳରାମଙ୍କୁ ବୁଝାଇ ନେଇଆସିଲେ କୃଷ୍ଣ ଆଉ ଏକୁଟିଆ ଖେଳିବ ନାହିଁ । ସେ ବଳରାମଙ୍କୁ ସମ୍ବୋଧନ କରି ଡାକିଲେ— "ଆରେ ବଳିଆ ! ଆଉ ଡେରି କରନା ପୁଅ । ସେଆଡ଼େ ଖାଦ୍ୟ ସବୁ ଥଣ୍ଡା ହୋଇଯାଉଛି । ସାନଭାଇକୁ ଧରି ଶୀଘ୍ର ଆ' । ଆଉ, କାଲିକି ଖେଳିବ । ସକାଳୁ କ'ଣ ଟିକିଏ ଖାଇକରି ଆସିଥିଲ, ଏବେ ଭୋକ ଲାଗୁଥିବ । ଖାଦ୍ୟ ପ୍ରସ୍ତୁତ ହୋଇ ରହିଛି ।

ନାରାୟଣଙ୍କୁ ଭୋଗ ଲଗାଯାଉଛି । ଏବେ ଆସ ଖାଇବ । ଆଜି ନାନାପ୍ରକାର ଖାଦ୍ୟ ରନ୍ଧା ହୋଇଛି । ଅଗଣାରେ ବସି ନନ୍ଦ ବ୍ରଜରାଜ ତୁମ ଦୁହିଙ୍କୁ ଅପେକ୍ଷା କରୁଛନ୍ତି ।"

ଖାଦ୍ୟ କଥା ଶୁଣି ଶ୍ରୀକୃଷ୍ଣଙ୍କ ପାଟିରୁ ଲାଳ ବହିବାକୁ ଲାଗିଲା । ସେ ସେଇଠି ଥାଇ ପଚାରିଲେ—"'ମା' ଆଜି କ'ଣ ପର୍ବ ଅଛି ?"

ମା' ଯଶୋଦା ଖୁସି ହୋଇ କହିଲେ—"ଆରେ ବୋକା, ତୁ ଏତିକି ଜାଣିନୁ, ଆଜି ତୋର ଜନ୍ମ ନକ୍ଷତ୍ର ଉତ୍ସବ । ଦାନ ଦେବାପାଇଁ ସୁନ୍ଦର ସୁନ୍ଦର ଗାଈଙ୍କୁ ସଜାଇ ଦେଇଛି । ବଡ଼ ବଡ଼ ମିଠାଇ ତିଆରି କରିଛି । ବ୍ରାହ୍ମଣମାନେ ଦୁଆର ମୁହଁରେ ବସିଛନ୍ତି । କେବଳ ଡେରି ହେଉଛି ତୋର । ଶୀଘ୍ର ଯାଇ ବ୍ରାହ୍ମଣମାନଙ୍କୁ ଦାନ ଦେଇ ତାଙ୍କ ପାଦ ଛୁଇଁ ଆଶୀର୍ବାଦ ନେ ।"

ଶ୍ରୀକୃଷ୍ଣ କହିଲେ—"ମା ! ତୁ ଚାଲ, ଆମେ ଆଗେ ଆଗେ ଯାଉଛୁ ।" କିନ୍ତୁ ମା' ସହଜରେ ମାନିବା ପାଇଁ ପ୍ରସ୍ତୁତ ନ ଥିଲେ । ସେ ଭାବିଲେ, ଯେ ପର୍ଯ୍ୟନ୍ତ ଗୋପାଳ ବାଳକମାନେ ଥିବେ ସେପର୍ଯ୍ୟନ୍ତ ଖେଳ ସରିବ ନାହିଁ । ଖେଳ ନ ସରିଲେ ଏ ଦୁହେଁ କେବେହେଲେ ଘରକୁ ଫେରିବେ ନାହିଁ ; ତେଣୁ ଯଶୋଦା ଗୋପାଳବାଳକମାନଙ୍କୁ ଡାକି କହିଲେ—"ପିଲାମାନେ ! ତୁମେ ସବୁ ଏବେ ନିଜ ନିଜ ଘରକୁ ଯାଅ । ତୁମର ମା' ମାନେ ତୁମ ବାଟ ଚାହିଁ ବସିଛନ୍ତି ।"

ପିଲାମାନେ ତାହାହିଁ ଚାହୁଁଥିଲେ । ସେମାନେ ଖେଳସାରି ଯିବାକୁ ବାହାରିଲେ । ଯଶୋଦା ସେମାନଙ୍କୁ ସାଉଁଳେଇ କହିଲେ—"ତୁମେମାନେ ସମସ୍ତେ ଭଲ ପିଲା । ମା'ମାନେ ତୁମ ଆଖିରେ କେଡ଼େ ସୁନ୍ଦର କଜଳ ଲଗାଇ ଦେଇଛନ୍ତି । କେଡ଼େ ସୁନ୍ଦର ଜାମା ପିନ୍ଧାଇ ଦେଇଛନ୍ତି । ଆମ କହ୍ନେଇଟା ଏକ ମେହେନ୍ତର । ଦେଖ, ଜାମାପଟାକୁ କପରି ମଇଳା କୋଚଟ କରିଛି । ସାରା ଦେହ ଧୂଳିରେ ଧୂସର ହୋଇଛି !

କିନ୍ତୁ ମୋ' କହ୍ନେଇ ଏବେ ରଜାପୁଅ ହୋଇଯିବ । ଘରେ ପହଞ୍ଚିବାମାତ୍ରେ ତାକୁ ଗାଧୋଇ ଦେଇ ସଫା କରିଦେବି । ଚନ୍ଦନରେ ସଜାଇଦେବି, ତେଲ ଲଗାଇ ମୁଣ୍ଡ ବାଳକୁ ସଜାଡ଼ି ଦେବି, ଆଉ ସେଥିରେ ମୁକ୍ତାମାଳ ବାନ୍ଧିଦେବି । ନାନାବିଧ ଅଳଙ୍କାର ପିନ୍ଧାଇବି । ନୂଆ ହଳଦିଆ ଲୁଗା ପିନ୍ଧାଇଦେବି । ତା' ହାତରେ ବ୍ରାହ୍ମଣମାନଙ୍କୁ ଗୋଦାନ କରାଇବି । ଆସ ପିଲାଏ ଆସ । କିଏ ଆଗ ଆସୁଛ ଦେଖିବା ? ଯେ ପ୍ରଥମେ ଆସିବ ସେ ହେବ ସୁନା ପୁଅ । ଏବେ ଚାଲ ଗାଧୋଇ ପାଧୋଇ ବସ୍ତ୍ର ଆଭୂଷଣ ପିନ୍ଧି ଖାଇ ପିଇ ପୁଣି ଆସି ଖେଳିବ ।

ଏହା ଶୁଣିବାମାତ୍ରେ କୃଷ୍ଣ ଦୌଡ଼ିଲେ । ତାଙ୍କ ପଛେ ପଛେ ବଳରାମ ଦୌଡ଼ିଲେ ଏବଂ ରାମକୃଷ୍ଣଙ୍କ ଦୌଡ଼ ଦେଖି ଅନ୍ୟମାନେ ବି ଦୌଡ଼ିବାକୁ ଲାଗିଲେ । ମା' ଯଶୋଦା

ଧୀରେ ଧୀରେ ସେମାନଙ୍କ ପଛେ ପଛେ ଚାଲିଲେ । କିଛି ଦୂର ଦୌଡ଼ିବା ପରେ ରାମ ଓ ଶ୍ୟାମ ଥକିପଡ଼ିବାରୁ ଯଶୋଦା ସେ ଦୁହିଙ୍କ ହାତ ଧରି ଘରକୁ ଆସିଲେ । ସ୍ୱସ୍ତ୍ୟୟନ କରାଗଲା, ବ୍ରାହ୍ମଣମାନଙ୍କୁ ଗୋଦାନ ଦିଆଗଲା ଓ ଭୋଜନ ଦେଇ ବିଦାୟ କରାଗଲା ।

ନନ୍ଦ ଦୁଇ ପିଲାଙ୍କ ସହିତ ଖାଇବାକୁ ବସିଲେ । ଯଶୋଦା ନାନାପ୍ରକାର ଖାଦ୍ୟ ପ୍ରସ୍ତୁତ କରିଥିଲେ । ପାଞ୍ଚ ଦଶ ପ୍ରକାର ଲଡ଼ୁ, ମୋହନଭୋଗ, ଜଲବି, ରସଗୋଲା, ବରଫି, କଲାକନ୍ଦ, ପେଡ଼ା, ଗୋଲାପଜାମୁ, ପ୍ରଭୃତି, ମିଠାଇ, ପୁରି, କଚୁରି, ଲୁଚି, ମାଲପୁଆ, ମିଠାପୁରି, ଫେଣି, ସିଙ୍ଗଡ଼ା, ଦହିବଡ଼ା, ବାଲୁସା, ଗୁପ୍‌ଚୁପ୍ ଆଦି ନାନାବିଧ ଲୁଣି ଖାଦ୍ୟ, ବାସମତୀ ଚାଉଳର ଭାତ, ମୁଗଡାଲି, ହରଡ଼ ଓ ଚଣାଡାଲି, ବେସନରେ ଛଅଣି ଫୁଲୁରି, ପକୋଡ଼ି, ବଥୁଆ, କାଶୀଫଳ, ପୋଦନା ଚଟଣି, ନାନାପ୍ରକାର ଶାଗ ତରକାରି, ବଡ଼ ବଡ଼ ପାମଡ଼, ଅଦା ଆଚାର, ଏହିପରି ନାନାବିଧ ସୁସ୍ୱାଦୁ ଖାଦ୍ୟପେୟ, ଚର୍ବ୍ୟ, ଚୋଷ୍ୟ ପ୍ରସ୍ତୁତ ହୋଇଥିଲା । ଯଶୋଦା ବଡ଼ ବଡ଼ ଥାଳରେ ସେ ସବୁ ପରଷି ଦେଲେ, ଥାଳ ଚାରିପଟେ ଛୋଟ ବଡ଼ ଗିନାରେ ଅନ୍ୟାନ୍ୟ ଜିନିଷ ବାଢ଼ିଦେଲେ । ଶ୍ରୀକୃଷ୍ଣ ନନ୍ଦଙ୍କ କୋଳରେ ବସି ଖାଉ ଖାଉ ରାଗ ତରକାରି ଖାଇ ସୁ ସା କରି ଆଖିରୁ ଲୁହ ଗଡ଼ାଇ ଉଠି ପଳାଇବାରୁ ରୋହିଣୀ ନିଜ କୋଳକୁ ନେଇ ତାଙ୍କ ପାଟି ଫୁଙ୍କିଦେଲେ ଓ କ୍ଷୀର ଗିନା ପାଟି ପାଖରେ ଲଗାଇଦେଲେ । ଯଶୋଦା ସାଙ୍ଗେ ସାଙ୍ଗେ ମୋହନ-ଭୋଗ ତାଙ୍କ ପାଟିରେ ପୁରାଇଦେଲେ । ପାଟିରୁ ରାଗ ଛାଡ଼ିଯିବା ପରେ ଶ୍ୟାମ କହିଲେ— "ମା' ମୁଁ ଆଉ ବାବାଙ୍କ କୋଳରେ ବସି ଖାଇବି ନାହିଁ । ଏଣିକି ତୋର କୋଳରେ ବସି ଖାଇବି । ବାପା ତ ରାଗ ତରକାରି ଖୁଆଇ ଦେଉଛନ୍ତି ।"

ନନ୍ଦ ହସି ହସି କହିଲେ—"ହଇରେ ଦୁଷ୍ଟ ! ତୁ ତ ତରବର ହୋଇ ସବୁ ପାଟିରେ ପୁରାଇଦେଲୁ । ତୁ ଏକ ସର୍ବଭକ୍ଷ । ଦେଖିଲୁ ବଳିଆ କପରି ଧୀରେ ଧୀରେ ଖାଉଛି । ଏହିପରିଭାବେ ଖିଆପିଆ ସରିଲା । ଖାଇସାରି ଶ୍ୟାମ ପୁଣି ଖେଳିବାକୁ ଚାଲିଗଲେ ।"

ମହର୍ଷି ସୂତ କହିଲେ—"ମୁନିଗଣ ! ଶ୍ୟାମସୁନ୍ଦର ଏହିପରି ପିତାମାତାଙ୍କ ଆନନ୍ଦ ଉତ୍ତରୋତ୍ତର ବଢ଼ାଇବାକୁ ଲାଗିଲେ ।"

## ଛପ୍‌ପୟ

ଅତି ଚଞ୍ଚଳ ଅତି ଚପଳ ଗୋଦତେଁ ଉଠି ଉଠି ଭାଗେଂ ।
କରତେଂ ମୈୟା ଝଗଡ଼ ଖଡ଼ୀ ହ୍ୱୈ ଜାତେଁ ଆଗେଁ ॥

ଜନନୀ ଦୃଷ୍ଟି ବଞ୍ଚଇ କୃଷ୍ଣ ହୋଇଲେତେଂ ସଟକେ ।
ଉଧମ ନିତ ନବ କରେଂ ଜାଇ ପେଢ଼ନ ତେ ଲଟକେଂ ।।
ବନମହୁଁ ବଢ଼ରତ ମୁଦିତ ମନ, ନୀଳ ପୀତ ପଟ ତନ ଲସହୁଁ ।
ବ୍ରଜବାସିନୀ ସୁଖ ଦେହୁଁ ନିତ, ଶ୍ୟାମ ସମ ଗୋକୁଳ ବସହୁଁ ।।



# ଗୋପାଳମାନଙ୍କର ବୃନ୍ଦାବନ ଯାତ୍ରା

ବନଂ ବୃନ୍ଦାବନଂ ନାମ ପଶବ୍ୟଂ ନବକାନନମ୍ ।
ଗୋପ ଗୋପୀଗବାଂ ସେବ୍ୟଂ ପୁଣ୍ୟାଦ୍ରିତୃଣବୀରୁଧମ୍ ।।
ତତ୍ତତ୍ରାଦ୍ୟୈବ ଯାସ୍ୟାମଃ ଶକଟାନ୍ ଯୁଙ୍କ୍ତ ମା ଚିରମ୍ ।
ଗୋଧନାନ୍ୟଗ୍ରତୋ ଯାନ୍ତୁ ଭବତାଂ ଯଦି ରୋଚତେ ।।

(ଶ୍ରୀଭା ୧୦ସ୍କ. ୧୧ଅ. ୨୮. ୨୯ ଶ୍ଳୋକ)

## ଛପ୍ପୟ

ଯମଳାର୍ଜୁନ କୋ ପତନ ଅଶୁଭ ଅତି ଗୋପନ ମାନ୍ୟୋ ।
ନହୀଁ କିସପଦ ଚୌର ଶିଶୁନ ହୁତକର ନହୁଁ ଜାନ୍ୟୋ ।।
ପଞ୍ଚାୟତ ସବ କରହୁଁ ହୋହୁଁ ଉତ୍ପାତ ଯହାଁ ଅତି ।
ନାନା ରୂପ ବନାଇ ଅସୁର ଇତ ଆୱେଁ ନିତ ପ୍ରତି ।।
ତାତେଁ ତଜି ଗୋକୁଳ ତୁରତ, ଶ୍ରୀବୃନ୍ଦାବନ ଚଲହୁ ସବ ।
ଭୂମି ସରସ ଜଳ ଥଳ ବିମଳ, ବୋଲେ ଶ୍ରୀ ଉପନନ୍ଦ ତବ ।।

ଜୀବ ହେଉଛି ଅନ୍ନ ଜଳର ଅଧୀନ । ଯେଉଁଠି ଯେତେଦିନ ପର୍ଯ୍ୟନ୍ତ ଅନ୍ନ ଜଳ ମିଳେ ସେଠାରେ ସେତେଦିନ ପର୍ଯ୍ୟନ୍ତ ସମସ୍ତେ ରହନ୍ତି । ଯେଉଁଠି ଅନ୍ନ ଓ ଜଳ ମିଳେ ନାହିଁ, ସେଠାରେ ଯେତେ ଚେଷ୍ଟା କଲେ ମଧ୍ୟ କେହି ରହିପାରନ୍ତି ନାହିଁ । ପ୍ରତି ଜଳବିନ୍ଦୁରେ ଓ ପ୍ରତି ଅନ୍ନ କଣାରେ ଜୀବସତ୍ତାର ଅସ୍ତିତ୍ୱ ବିଦ୍ୟମାନ । ଲୋକେ ଭ୍ରମବଶତଃ କହନ୍ତି, ସେ ତାଙ୍କୁ ବାହାର କରିଦେଲା । ସେ ତାଙ୍କୁ ସେଠାରୁ ନେଇଗଲା ; କିନ୍ତୁ ପ୍ରକୃତରେ

କେହି କାହାକୁ ବାହାର କରିଦିଏ ନାହିଁ କି ନେଇଯାଏ ନାହିଁ । ଅନ୍ନ ଓ ଜଳ ହିଁ ପ୍ରାଣୀକୁ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ନେଇଯାଏ । ନୋହିଲେ, ଯେଉଁଠି ଆମେ ଜନ୍ମ ହୋଇଛୁ, ଯାହାର ଧୂଳି ବାଲିରେ ଗଡ଼ିଛୁ, ଯେଉଁ ଘରେ ଶୈଶବ କାଳ କଟାଇଛୁ, ଯେଉଁ ବୃକ୍ଷର କଞ୍ଚା ପାଚିଲା ଫଳ ସାଙ୍ଗ ହୋଇ ଖାଇଛୁ ସେପରି ଜନ୍ମଭୂମିକୁ ନିଜ ଇଚ୍ଛାରେ କିଏ ଛାଡ଼ିବାକୁ ଇଚ୍ଛାକରେ ? ନିଜର ମା' ଯେତେ ଅସୁନ୍ଦର ହେଲେ ମଧ୍ୟ ବାଳକଠାରେ ସେହି ମା' ସର୍ବାଧିକ ପ୍ରିୟ । ତାହାରି କୋଳରେ ଥାଇ ସେ ଜଗତର ସର୍ବଶ୍ରେଷ୍ଠ ଆନନ୍ଦ ଅନୁଭବ କରିଥାଏ । ଅନ୍ୟର ମା' ଯେତେ ସୁନ୍ଦର ହେଲେ ମଧ୍ୟ ସେ କେବେହେଲେ ଆମକୁ ଜନ୍ମଦାତ୍ରୀ ମା'ପରି ସ୍ନେହ, ଆଦର କରିପାରିବ ନାହିଁ । ସେହିପରି ଆମର ଜନ୍ମଭୂମି ଯେତେ ରୁକ୍ଷ ହେଲେ ମଧ୍ୟ, ସେଠାରେ ଜୀବନଧାରଣର ସମୁଚିତ ଉପାଦାନ ମିଳୁ ନ ଥିଲେ ମଧ୍ୟ ସେ ଆମଠାରେ ସର୍ବାଧିକ ପ୍ରିୟସ୍ଥାନ । ସେହି ସ୍ଥାନର ପ୍ରତି ଧୂଳିକଣାରେ ଆମ ଜୀବନର ଅତୀତ ସ୍ମୃତି ସଞ୍ଚିତ ହୋଇ ରହିଛି, ଯାହା ସ୍ମରଣ କରିବାମାତ୍ରେ ପ୍ରାଣ ଓ ମନ ଆନନ୍ଦରେ ପୂରିଯାଏ । ମା'ର କ୍ଷୀର ସହିତ ଶିଶୁର ସମ୍ପର୍କ ପରି ଜନ୍ମଭୂମି ସହିତ ଆମର ସମ୍ପର୍କ ଅତି ନିବିଡ଼ । ଜନ୍ମଭୂମି ସହିତ ଆମର ତାଦାତ୍ମ୍ୟ ସମ୍ବନ୍ଧ ଅଛି ; କିନ୍ତୁ ପ୍ରାରବ୍ଧବଶତଃ ନିରୁପାୟ ହୋଇ ପ୍ରାଣୀକୁ ଅନ୍ନ ଓ ଜଳ ପାଇଁ ଜନ୍ମଭୂମିକୁ ଚିରଦିନ ପାଇଁ ଛାଡ଼ିବାକୁ ପଡ଼େ । ଏହା ହିଁ ଦୈବର ବିଡ଼ମ୍ବନା ।

ଜୀବ କାଳର ଅଧୀନ । ପରାଧୀନ ଜୀବ ପ୍ରତିକଥାରେ ପର ଉପରେ ନିର୍ଭର କରିଥାଏ । ଯେଉଁ ଜନନୀ ଆମକୁ ରକ୍ତଦେଇ ପାଳନ ପୋଷଣ କରିଥାଏ ଅତି ନିର୍ଦ୍ଦୟଭାବେ ସେହି ମା'କୁ ଆମେ ପରିତ୍ୟାଗ କରିଥାଉଁ । ପ୍ରାରବ୍ଧ ଅଧୀନ ଜୀବ ନିରୁପାୟ । ପରମାତ୍ମା ସ୍ୱାଧୀନ ହେଲେ ମଧ୍ୟ ଯେତେବେଳେ ସେ ଅବତାର ଗ୍ରହଣ କରନ୍ତି, ପ୍ରାରବ୍ଧର ଅଧୀନ ନ ହେଲେ ମଧ୍ୟ ପ୍ରେମର ଅଧୀନ ହୋଇପଡ଼ନ୍ତି । ବୃନ୍ଦାବନର ଅଧିଷ୍ଠାତ୍ରୀ ଦେବୀ ଅନନ୍ତକାଳ ତପସ୍ୟା କରି ବର ପାଇଥିଲେ ଯେ, ଶ୍ୟାମସୁନ୍ଦର ଜଗତର ମଙ୍ଗଳ ପାଇଁ ତାଙ୍କରି ପୃଷ୍ଠଭାଗରେ ବିହାର କରିବେ । ସେହି ବରଦାନ କଥାକୁ ସତ୍ୟରେ ପରିଣତ କରିବା ନିମିତ୍ତ ଭଗବାନ ଶ୍ରୀକୃଷ୍ଣ ଗୋପବାସୀଙ୍କୁ ବୃନ୍ଦାବନ ଯାତ୍ରା ପାଇଁ ଉତ୍କଣ୍ଠିତ କରିଥିଲେ ; ତେଣୁ ଗୋକୁଳରେ ଆଉ କାହାରି ମନ ଲାଗିଲା ନାହିଁ । କାରଣ ଶ୍ରୀକୃଷ୍ଣଙ୍କ ପ୍ରୀତିସାଧନ ଥିଲା ସମସ୍ତଙ୍କର ଲକ୍ଷ୍ୟ ।

ମହର୍ଷି ସୂତ କହିଲେ—ମୁନିଗଣ ! ଯେଉଁଦିନ ଯାଆଁଳା ଅର୍ଜୁନ ଗଛ ତଳେ ଗଡ଼ି ଶୋଇଲା ସେହିଦିନଠାରୁ ଗୋପରେ ହୁଲସ୍ଥୁଲ୍ ପଡ଼ିଯାଇଥିଲା । ପାଞ୍ଚ ଦଶ ଜଣ ଗୋପାଳ ଯେଉଁଠି ଏକାଠି ହେଉଥିଲେ ସେଠାରେ ସେଇ କଥା ଆଲୋଚିତ ହେଉଥିଲା । ସେମାନେ ଶ୍ରୀକୃଷ୍ଣଙ୍କ ମହାନ୍ ଐଶ୍ୱର୍ଯ୍ୟ ବିଷୟରେ ଅନଭିଜ୍ଞ ଥିଲେ । ସେମାନେ ଏହା ମଧ୍ୟ ଜାଣିପାରି ନ ଥିଲେ ଯେ, ଶ୍ରୀକୃଷ୍ଣ ହେଉଛନ୍ତି ଅନନ୍ତ ଶକ୍ତିସମ୍ପନ୍ନ । ସେ ଯାହା ଇଚ୍ଛା କରିବେ ତାହା

କରିପାରିବେ । କୌଣସି କଥା ତାଙ୍କ ପକ୍ଷରେ ଅସମ୍ଭବ ନୁହେଁ ; କିନ୍ତୁ ଗୋପାଳମାନେ ଶ୍ରୀକୃଷ୍ଣଙ୍କୁ ନନ୍ଦଙ୍କ ଶ୍ରେଷ୍ଠ ପୁଅ ବୋଲି ଜାଣିଥିଲେ । ଏତେ ବଡ଼ ଅର୍ଜୁନ ଗଛ ଦୁଇଟି କିପରି ଗଡ଼ିପଡ଼ିଲା ସେକଥା ଭାବି ଗୋପବାସୀ ସମସ୍ତେ ଆଶ୍ଚର୍ଯ୍ୟାନ୍ୱିତ ହୋଇ ପଡ଼ିଥିଲେ । ଗଛ ଦୁଇଟି ଆଦୌ ଦୁର୍ବଳ ହୋଇ ନ ଥିଲା କି ଭିତରେ ଫୋପଲ ହୋଇ ନ ଥିଲା । ମେଘ ପବନ ବି ନ ଥିଲା ; ତେଣୁ ନିଶ୍ଚିତ ଭାବେ ଏହା ଏକ ଦୈବୀ ଘଟଣା ଏବଂ ସେଥିରୁ ବଡ଼ ଏକ ସଙ୍କଟର ସୂଚନା ମିଳେ । କାନକୁ କାନ ହୋଇ କଥାଟା ବ୍ରଜଆଡ଼େ ପ୍ରଘଟ ହୋଇଗଲା । ଆଖ ପାଖ ଗାଁରେ ମଧ୍ୟ ଏହି ଘଟଣା ଆଲୋଚିତ ହେବାକୁ ଲାଗିଲା ।

ନନ୍ଦରାଜ ଏହି ଘଟଣା ବ୍ରଜଆଡ଼େ ଆଲୋଚିତ ହେଉଥିବାର ଜାଣି ଅଧିକ ଚିନ୍ତିତ ହୋଇପଡ଼ିଲେ । ତାଙ୍କ ଭାଇ ସନନ୍ଦ, ଉପନନ୍ଦ, ମହାନନ୍ଦ ପ୍ରଭୃତି ମଧ୍ୟ ବହୁତ ଚିନ୍ତିତ ଥିଲେ, ଶ୍ରୀକୃଷ୍ଣଙ୍କୁ ସମସ୍ତେ ପ୍ରାଣଠାରୁ ବଳି ଅଧିକ ସ୍ନେହ କରୁଥିଲେ । ଦିନେ ନନ୍ଦରାଜ ଆଖପାଖର ଗୋପାଳମାନଙ୍କୁ ଡକାଇଲେ । ବୃଷଭାନୁଙ୍କ ସହିତ ଅନ୍ୟାନ୍ୟ ଗଣ୍ୟମାନ୍ୟ ଗୋପାଳମାନେ ରଙ୍ଗବେରଙ୍ଗର ପଗଡ଼ି ପିନ୍ଧି ଆସି ନନ୍ଦଙ୍କ ଗୋଷ୍ଠୀଯାତ୍ରିରେ ସମବେତ ହେଲେ । ଦରି ପଡ଼ିଲା, ଗାଲିଚା ବିଛା ହେଲା, ପାଞ୍ଚଜଣ ବୟସ୍କ ଗୋପାଳ ଆଗରେ ବସିଲେ । ନନ୍ଦ ଆରମ୍ଭ କଲେ—ବ୍ରଜପୁରରେ ଆଜିକାଲି ଅର୍ଜୁନ ଗଛ ଦୁଇଟି ହଠାତ୍ ଗଡ଼ିପଡ଼ିବା ଘଟଣା ବ୍ରଜଆଡ଼େ ଚର୍ଚ୍ଚା ହେଉଛି । କିଏ ଘଟଣାଟିକୁ ଉତ୍ପାତ ବୋଲି କହିଲାବେଳେ ଆଉ କେତେକ ବିପଦର ସୂଚକ ବୋଲି କହୁଛନ୍ତି । ଏ ବିଷୟରେ ଆମେ କ'ଣ କରିବା ଉଚିତ ତାହା ଆପଣମାନେ ମିଳାମିଶି ବିଚାର କରନ୍ତୁ ଏବଂ କର୍ତ୍ତବ୍ୟ ସ୍ଥିର କରନ୍ତୁ ।

ଏହା ଶୁଣି ଜଣେ ବୃଦ୍ଧ ଗୋପାଳ କହିଲେ—କେବଳ ଅର୍ଜୁନ ବୃକ୍ଷ ଗଡ଼ିପଡ଼ିବା ଘଟଣା ନୁହେଁ ଆମେ ତ ପ୍ରତିଦିନ ଗୋକୁଳରେ ନୂଆ ନୂଆ ଉତ୍ପାତ ଘଟୁଥିବାର ଦେଖୁଛୁ !

ନନ୍ଦ କହିଲେ—"ହଁ ସେଇ କଥା ତ କହୁଛି । ଏପରି ଉତ୍ପାତରେ କ'ଣ ପ୍ରତିକାର କରାଯାଇ ପାରିବ ତାହା ଆପଣମାନେ ସ୍ଥିର କରନ୍ତୁ ।"

ଅନ୍ୟ ଜଣେ ଗୋପାଳ କହିଲେ—"ଦେଖନ୍ତୁ, ଆମର ଘର ବାଡ଼ି ନାହିଁ କି ଚାଷଜମି ନାହିଁ । ଗୋସମ୍ପଦ ହିଁ ଆମର ଏକମାତ୍ର ସମ୍ବଳ । ଗାଈ ଆମର ଦେବତା ଏବଂ ସେଇ ଗାଈଗୁଡ଼ିକ ଉପରେ ଆମର ଜୀବିକା ନିର୍ଭର କରୁଛି । ଯେଉଁଠି ବାଡ଼ ଦେଇ ଗାଈ ରଖିବା ସେଠାରେ ଆମର ଗୋକୁଳ ପ୍ରତିଷ୍ଠିତ ହେବ । ଯେଉଁଠି ଆମର ଗାଈ ରହିବ ସେଠାରେ ଘର, ପୁର ସବୁକିଛି ଠିଆ ହୋଇଯିବ । ଏଇ ସ୍ଥାନରେ ରହିବା ବୋଲି ତ କିଛି ଲେଖାପଢ଼ା ହୋଇନି । ସବୁ ଭୂମି ଆମର, ଗୋକୁଳ ସବୁଠି ହୋଇ ପାରିବ । ଏଠାରେ ବାରଟି ବନ ଓ ବାରଟି ଉପବନ ଅଛି । ଏହି ବନର ନାମ ମହାବନ । ମହାବନରେ ଯଦି ଉପଦ୍ରବ ଘଟୁଛି, ତେବେ ଆମର ଅନ୍ୟ ବନକୁ ଯାଇ ବସତିସ୍ଥାପନ କରିବା ଉଚିତ ହେବ ।

ନନ୍ଦ କହିଲେ—"ଯଦି ସମସ୍ତେ ଏ ସ୍ଥାନ ଛାଡ଼ି ଯିବାପାଇଁ ସମ୍ମତ ତେବେ ପ୍ରଥମେ ତାହା ସ୍ଥିର କରାଯାଉ ।"

ଏହା ଶୁଣି ବୃଷଭାନୁ କହିଲେ—ଦେଖନ୍ତୁ ଆମର କୌଣସି ସ୍ଥାନ ବିଷୟରେ ଚିନ୍ତା ନାହିଁ । ଶ୍ରୀକୃଷ୍ଣଙ୍କ ପାଇଁ ଆମର ଯାହା ଚିନ୍ତା ! ଶ୍ରୀକୃଷ୍ଣ ଯେଉଁଠି ଆନନ୍ଦରେ ରହିବେ, ରାମ କୃଷ୍ଣ ଯେଉଁଠି ସୁଖୀ ହେବେ ସେ ସ୍ଥାନ ନର୍କ ହେଲେ ମଧ୍ୟ ସ୍ୱର୍ଗଠାରୁ ବଳି ଆମର ପ୍ରିୟ । ଯଦି ଏଠାରେ ପ୍ରତିଦିନ କିଛି ନା କିଛି ଉତ୍ପାତ ଘଟୁଛି, ଶ୍ରୀକୃଷ୍ଣଙ୍କ ବିଷୟରେ ଆଶଙ୍କା ଜାତ ହେଉଛି, ତେବେ ଯଥାଶୀଘ୍ର ଆମକୁ ଏ ସ୍ଥାନ ଛାଡ଼ିବାକୁ ପଡ଼ିବ । ଶ୍ରୀକୃଷ୍ଣ ହିଁ ଆମ ସମସ୍ତଙ୍କର ଜୀବନସର୍ବସ୍ୱ । କ'ଣ ଏ କଥା ସତ ନା ନୁହେଁ । ଏ ବିଷୟରେ କାହାର ମତଭେଦ ନାହିଁ ତ ?

ସମସ୍ତେ ଏକସ୍ୱରରେ କହିଲେ—"ଶ୍ରୀକୃଷ୍ଣ ହିଁ ଆମର ସର୍ବସ୍ୱ । ସେ ଯେଉଁଠାରେ ସୁଖୀ ହେବେ ଆମର ସେହିଠାରେ ରହିବା ଉଚିତ ।"

ସ୍ଥାନ ପରିତ୍ୟାଗ ବିଷୟରେ ସମସ୍ତେ ଏକମତ ଥିବାର ଜାଣି ନନ୍ଦ କହିଲେ—"ଅଚ୍ଛା, ଏ ସ୍ଥାନ ଆମକୁ ଛାଡ଼ିବାକୁ ପଡ଼ିବ, ଏହା ସ୍ଥିର ହୋଇଗଲା । ବର୍ତ୍ତମାନ ବିଚାର କରିବାର କଥା ଯେ ଏ ସ୍ଥାନ ଛାଡ଼ି ଆମେ କେଉଁଠାକୁ ଯିବା ? କେଉଁଠି ଘରଦ୍ୱାର କରି ବସବାସ କରିବା ? ଯେଉଁଠାକୁ ଯିବା ସେ ସ୍ଥାନଟି ଖୋଲା ଓ ବିସ୍ତୃତ ହେବା ଆବଶ୍ୟକ, ଜଳ ନିକଟରେ ଥିବ, ଗାଈମାନଙ୍କ ପାଇଁ ଯଥେଷ୍ଟ ଘାସ ଥିବ ଏବଂ ସ୍ଥାନଟି ସୁନ୍ଦର ଓ ଗ୍ରୀଷ୍ମଶୀତଳ ହୋଇଥିବା ଆବଶ୍ୟକ ।

ପଞ୍ଚାୟତରେ ସମବେତ ହୋଇଥିବା ଗୋପାଳମାନଙ୍କ ମଧ୍ୟରେ ନନ୍ଦଙ୍କ ବଡ଼ଭାଇ ଉପନନ୍ଦ ଥିଲେ ସବୁଠୁଁ ବୟସ୍କ ବ୍ୟକ୍ତି । ଗୋପାଳଙ୍କ ମଧ୍ୟରେ ସେ ଜ୍ଞାନବୃଦ୍ଧ ଓ ବୟୋବୃଦ୍ଧ ବ୍ୟକ୍ତିରୂପେ ଅଭିହିତ ହେଉଥିଲେ । ଦେଶ, କାଳ ଓ ବସ୍ତୁର ଭଲମନ୍ଦ ବିଷୟରେ ସେ ଥିଲେ ଜଣେ ଅଭିଜ୍ଞ ବ୍ୟକ୍ତି । ଏ ସ୍ଥାନଟି ନିରାପଦ ନୁହେଁ ବୋଲି ସେ ମଧ୍ୟ ଅନୁଭବ କରୁଥିଲେ । ସ୍ଥାନ ପରିବର୍ତ୍ତନ କରିବା ବିଷୟରେ ସେ ମନେ ମନେ ବିଚାର କରୁଥିଲେ । ଅନ୍ୟ ଗୋପାଳମାନେ ମିଳିମିଶି ସ୍ଥାନ ପରିବର୍ତ୍ତନ ବିଷୟରେ ସ୍ଥିର ସିଦ୍ଧାନ୍ତ କରିଥିବାରୁ ସେ ବିଶେଷ ଆନନ୍ଦିତ ହୋଇଥିଲେ । ସ୍ଥାନ ପରିବର୍ତ୍ତନ ସିଦ୍ଧାନ୍ତରେ ଏକମତ ହୋଇ ଉପନନ୍ଦ କହିଲେ—"ଆପଣମାନେ ଏସ୍ଥାନ ପରିତ୍ୟାଗ କରି ଅନ୍ୟତ୍ର ବସତି ସ୍ଥାପନେ ସିଦ୍ଧାନ୍ତ ନେଇଥିବାରୁ ମୁଁ ଖୁସି ହୋଇଛି । ନନ୍ଦର ପୁଅ ଜନ୍ମ ହେଲା ଦିନଠାରୁ ପ୍ରତିଦିନ କିଛି ନା କିଛି ଉତ୍ପାତ ଘଟୁଥିବାର ଆମେ ଦେଖୁଛୁ । ଏଠାରେ ପିଲାମାନଙ୍କୁ ନିରାପଦରେ ରଖିହେବ ନାହିଁ ; ତେଣୁ ଗୋବଂଶ ଓ ଗୋଧନର ସୁରକ୍ଷା ଓ ମଙ୍ଗଳ ପାଇଁ ଆମକୁ ଏ ସ୍ଥାନର ମୋହ ତ୍ୟାଗ କରିବାକୁ ପଡ଼ିବ ।"

ଆପଣମାନେ ଜାଣନ୍ତି ଆମ ଘରେ ପୁଅ ଜନ୍ମ ହେବାଠାରୁ ଗୋଟିଏ ପରେ ଗୋଟିଏ ବିପଦ ଘଟୁଛି । ପିଲାଟି ଜନ୍ମ ହେବାର ଛ'ଦିନ ପୂରିନାହିଁ ପୁତନା ଆସି ପହଞ୍ଚିଲା । ନାରାୟଣ ସେହି ବାଳଘାତିନୀ ପୁତନା କବଳରୁ କୃଷ୍ଣଙ୍କୁ କୌଣସିମତେ ରକ୍ଷାକଲେ । ପୁଣି ଏକ ବିରାଟ ଶଗଡ଼ ପୁଅ ଉପରେ ବିନା କାରଣରେ ଓଲଟି ପଡ଼ିଗଲା । ଭାଗ୍ୟବଶତଃ ପୁଅ ସେଥିରୁ ରକ୍ଷାପାଇଗଲା । ପୁଣି ଆସିଲା ଘୂର୍ଣ୍ଣିଅଭୂତ । ସେ ପୁଅକୁ ଉଡ଼ାଇନେଇ ପଥର ଉପରେ କଚାଡ଼ିଦେଲା । ଇନ୍ଦ୍ରାଦି ଲୋକପାଳମାନେ ପିଲାକୁ ସେଥିରୁ ରକ୍ଷାକଲେ । ଏବେ ଏକ ନୂଆ ଉତ୍ପାତ ଘଟିଗଲା । ବିନା ଝଡ଼ତୋଫାନରେ ହଠାତ୍ ବିରାଟ ଅର୍ଜୁନ ଗଛ ଦୁଇଟା ଉପୁଡ଼ି ପଡ଼ିଲା । କେତେ ପିଲା ସେହି ଗଛମୂଳରେ ଖେଳୁଥିଲେ । ଯଦି କାହାର ଉପରେ ପଡ଼ିଥାନ୍ତା ତେବେ ସେ ପିଲା ବଞ୍ଚିଥାନ୍ତା କି ? ଭଗବାନ ସଦୟ ହୋଇଥିବାରୁ କାହାର କିଛି ଘଟିଲା ନାହିଁ ; ତେଣୁ ଯେ ପର୍ଯ୍ୟନ୍ତ ଆମେ ଏଠାରେ ରହିଥିବୁ ସେ ପର୍ଯ୍ୟନ୍ତ ଏହିପରି ଦୁର୍ଘଟଣା ଘଟିବ ବୋଲି ମୋର ମନେହୁଏ । ଅନ୍ୟ କୌଣସି ଉତ୍ପାତ ବା ବିପଦ ପଡ଼ିବା ପୂର୍ବରୁ ଆମେ ପିଲାମାନଙ୍କୁ ନେଇ ବ୍ରଜପୁର ତ୍ୟାଗ କରିବା ଉଚିତ ହେବ । ସମସ୍ତେ ନିଜ ନିଜର ବନ୍ଧୁବାନ୍ଧବ ଓ ଗୋପସମ୍ପଦ ନେଇ ଯଥାଶୀଘ୍ର ଏ ସ୍ଥାନ ଛାଡ଼ି ପଳାଇଯିବା ।

ନନ୍ଦ କହିଲେ—"ସମସ୍ତେ ତ ଏ ସ୍ଥାନ ଛାଡ଼ି ଅନ୍ୟତ୍ର ଯିବାପାଇଁ ଏକମତ ହୋଇଛନ୍ତି; କିନ୍ତୁ ଏ ସ୍ଥାନ ଛାଡ଼ି କୁଆଡ଼େ ଯିବା, ତାହା ହିଁ ବର୍ତ୍ତମାନ ପ୍ରଧାନ ସମସ୍ୟା ।"

ଉପନନ୍ଦ କହିଲେ—"ମୋ' ଦୃଷ୍ଟିରେ ଏକ ଭଲ ସ୍ଥାନ ଅଛି । ଯଦି ଆପଣମାନେ ସମସ୍ତେ ଆଗ୍ରହୀ ହେବେ ତେବେ କହିବି ।"

ନନ୍ଦ ପଚାରିଲେ—"ଭାଇ, ବେଶୀଦୂର ନୁହେଁ ତ ?"

ଉପନନ୍ଦ କହିଲେ—"ନା, ଏଇ ପାଖରେ । ସେ ସ୍ଥାନର ନାମ ହେଉଛି ବୃନ୍ଦାବନ । ସେଠାରେ ବଡ଼ ବଡ଼ ଗଛ ଅଛି । ସଘନ ବୃକ୍ଷରାଜି ସହିତ ଘଞ୍ଚ ଲତାକୁଞ୍ଜ, ନିକୁଞ୍ଜ ବହୁତ ଅଛି । ବୃନ୍ଦାବନରେ ମାଟି ଯେପରି ସରସ ଓ ଉର୍ବର, ତା'ର ପ୍ରାକୃତିକ ଗଠନ ସେହିପରି ସୁନ୍ଦର ଓ ନିରାପଦ ।"

ନନ୍ଦ ପଚାରିଲେ—"ଆପଣ କେବେ କ'ଣ ସେଠାକୁ ଯାଇଥିଲେ । ଗାଈମାନଙ୍କୁ ସେଠାରେ କୌଣସି ପ୍ରକାର କଷ୍ଟ ହେବ ନାହିଁ ତ ?"

ଉପନନ୍ଦ କହିଲେ—"ଆରେ ଭାଇ ? ଦେଖିବା କଥା କ'ଣ ପଚାରୁଛୁ, ମୁଁ ସେଠାରେ ବହୁଦିନ ରହିଛି । ତୁ ଯେତେବେଳେ ଖୁବ୍ ଛୋଟ ଥିଲୁ ଆମେ ସମସ୍ତେ ରହୁଥିଲେ । ଏଠାରେ ଯେପରି ଯମୁନା ନଈ ଅଛି ସେଠାରେ ବି ସେହିପରି ଯମୁନା ପ୍ରବାହିତ ହେଉଛି । ସେଠାରେ ଯମୁନାର ବାଲି ବଡ଼ କୋମଳ । ସ୍ଥାନଟି କଅଁଳିଆ

ଦୂବ ଓ ଅନ୍ୟାନ୍ୟ ଘାସରେ ପରିପୂର୍ଣ୍ଣ । ସମଗ୍ର ବନର ଆୟତନ ହେଉଛି ବାର କୋଶ । ଯମୁନାର ଏପାଖ ଓ ସେପାଖ ହେଉଛି ତା'ର ସୀମା । ଯମୁନାର କଳ ଅତି ପାଖରେ ଏବଂ ତା' ପାଖରେ ଗୋବର୍ଦ୍ଧନ ନାମରେ ଏକ ସୁନ୍ଦର ପର୍ବତ ଅଛି । ସେହି ପର୍ବତରୁ ଝରଣା ପ୍ରବାହିତ ହେଉଛି । ପର୍ବତର ପାଦଦେଶରେ ବନ୍ୟପ୍ରାଣୀ ବିଚରଣ କରୁଛନ୍ତି । ତେଣୁ ବୃନ୍ଦାବନର ଶୋଭା ଅପୂର୍ବ । ପିଲାମାନେ ସେ ସ୍ଥାନର ପ୍ରାକୃତିକ ଶୋଭା ଦେଖି ବଡ଼ ଖୁସି ହେବେ । ବୃନ୍ଦାବନ ପରି ପବିତ୍ର ବନ, ପର୍ବତଶ୍ରେଷ୍ଠ ଗୋବର୍ଦ୍ଧନ ଓ ପରମ ରମଣୀୟ ତଟଯୁକ୍ତ ଯମୁନାର ସୌନ୍ଦର୍ଯ୍ୟ ଅଧିକରୁ ଅଧିକ ଆକର୍ଷକ । ବୃକ୍ଷ, ଲତା, ଘାସ ପର୍ଯ୍ୟାପ୍ତମାତ୍ରାରେ ଉପଲବ୍ଧ । ବୃନ୍ଦାବନ, ଗୋପ, ଗୋପୀ ଓ ଗୋରୁଙ୍କ ରହିବା ପାଇଁ ଉପଯୁକ୍ତ ଯୋଗ୍ୟ ସ୍ଥାନ ।

ନନ୍ଦ କହିଲେ—"ତା' ହେଲେ ଆମେ ସମସ୍ତେ ସେଇଠାକୁ ଯିବା ତ, କେବେ ଯିବା ?"

ଉପନନ୍ଦ କହିଲେ—"କେବେ ଆଉ କ'ଣ ଶୁଭସ୍ୟ ଶୀଘ୍ରମ୍—ଆଜି ହିଁ ସେଠାକୁ ଚାଲ । ବିଳମ୍ବ କରି ଲାଭ କ'ଣ ।

ଏକଥା ଶୁଣିବାମାତ୍ରେ ବାଜା ବାଜିଲା, ଶଙ୍ଖଧ୍ୱନି ଆରମ୍ଭ ହେଲା ଏବଂ ଗୋପ ଗୋପୀମାନେ ବୃନ୍ଦାବନ ଯାତ୍ରାପାଇଁ ବାହାରିଲେ ।

ମହର୍ଷି ସୂତ କହିଲେ—"ମୁନିଗଣ ! ଉପନନ୍ଦଙ୍କ ପ୍ରସ୍ତାବକୁ ସମସ୍ତେ ସାଧୁ ସାଧୁ କହି ସମର୍ଥନ କଲେ । ବୃନ୍ଦାବନ ଯାତ୍ରା ପାଇଁ ପ୍ରସ୍ତୁତି ଆରମ୍ଭ ହୋଇଗଲା ।"

## ଛପ୍‌ପୟ

ସାଧୁ—ସାଧୁ ସବ କହେଁ କରହ୍ୟୋ ଅନୁମୋଦନ ସବନେ ।
ବୋଲେ ବୂଢ଼େ ଗୋପ ଲଖେଂ ବୃନ୍ଦାବନ ହମନେ ॥
ସବ ଇ ତହାଁ ସୁପାସ ଦୂବ, ଦ୍ରୁମ, ଜଳ, ବନ ଗିରିବର ।
ଶ୍ରୀଯମୁନାକେ ନିକଟ ପରମ ସୁନ୍ଦର ଅତି ସୁଖକର ॥
ଚଲୋ ଆଜ ଇ ଚଲେଙ୍ଗେ, କଷ୍ଟସ୍ୟୁ ସବ ମିଲିକେ କରହ୍ୟୋ ।
ସୁନତ ବଜେ ବସ୍ତୁର ତୁରତ, ଛକରନ ମହ ସବ ଧନ ଭରହ୍ୟୋ ॥



# ବୃନ୍ଦାବନ ନିବାସ

ବୃନ୍ଦାବନଂ ସଂପ୍ରବିଶ୍ୟ ସର୍ବକାଲସୁଖାବହମ୍ ।
ତତ୍ର ଚକ୍ରୁର୍ବ୍ରଜାବାସଂ ଶକଟୈରର୍ଦ୍ଧଚନ୍ଦ୍ରବତ୍ ॥

(ଶ୍ରୀ ଭା ୧୦ ସ୍କ, ୧୧ ଅ, ୩୫ ଶ୍ଳୋକ)

## ଛପ୍‌ପୟ

ତୁରହିଁ ବାଜନ ଲଗୀଂ ଜୋର ଛକଡ଼ ସବ ଦୀନ୍ହେଁ ।
ଧନୁଷ ବାନ ଲେ ହାଥ ଗୋପ କଛୁ ଆଗେ କୀନ୍ହେଁ ॥
ତିନକେ ପୀଛେ ଧେନୁ ସାଁଢ଼ ବଛରୁ ସବ ଜାୱେଁ ।
ଛକରନୀ ଗୋପୀ ଚଢ଼ୀଂ ଗୀତ ଗୋବିନ୍ଦକେ ଗାୱେଁ ॥
ମାତା ଯଶୋମତୀ ରୋହିଣୀ, ରାମଶ୍ୟାମ ସଙ୍ଗ ରଥ ଚଢ଼ୀଂ ।
ଜୈଁସା ମନ ସଙ୍ଗ ଇନ୍ଦ୍ରିୟ ଚଲହିଁ, ତୈଁସା ହରି ସଙ୍ଗ ଗୈୟା ବଢ଼ୀଂ ॥

ଭଗବାନଙ୍କୁ ଛାଡ଼ି ଯାହାର ଧନ, ଜନ, କୁଟୁମ୍ବ, ପରିବାର, ମାତା, ପିତା, ପୁତ୍ର ଝିଅ, ଭଉଣୀ ପ୍ରଭୃତି ସ୍ୱଜନମାନଙ୍କଠାରେ ଆସକ୍ତି ଜାତ ହୁଏ ସେମାନେ ପ୍ରତି ପଦକ୍ଷେପରେ ନାନାପ୍ରକାର ଦୁଃଖ ଦୁର୍ଦ୍ଦଶାର ସମ୍ମୁଖୀନ ହୁଅନ୍ତି; କିନ୍ତୁ ଯେଉଁମାନେ ନିଜର ଆନନ୍ଦକୁ ପ୍ରଭୁଙ୍କ ଆନନ୍ଦ ବୋଲି ଅନୁଭବ କରନ୍ତି ସେମାନେ ଯେ କୌଣସି ଅବସ୍ଥାରେ ବି ସୁଖୀ ହୁଅନ୍ତି । ପ୍ରଭୁ ଆଶ୍ରିତମାନେ ଦୁଃଖ କ'ଣ ଜାଣନ୍ତି ନାହିଁ । ଭଗବାନ ଯେଉଁଥିରେ ପ୍ରସନ୍ନ ହେବେ ପ୍ରଭୁ ଆଶ୍ରିତ ବ୍ୟକ୍ତି ସେଥିରେ ହିଁ ଆନନ୍ଦିତ ହୁଏ । ପ୍ରଭୁ ଯେଉଁଠି ସ୍ଥାନ ଦେବେ ସେଇଠି ରହିବା, ଯାହା ଆଦେଶ ଦେବେ ତାହା କରିବା ଏବଂ ତାଙ୍କର ଚର୍ଚ୍ଚା ଆଲୋଚନା ଶୁଣିବା ଓ କରିବା ହେଉଛି ଅନନ୍ୟ ଭକ୍ତର ଲକ୍ଷଣ । ବ୍ରଜବାସୀମାନେ ଥିଲେ ଅନନ୍ୟ ଭକ୍ତ । ସେମାନେ ନିଜର ସୁଖ ଦୁଃଖ କଥା ଚିନ୍ତା କରୁ ନ ଥିଲେ । ଯେଉଁ କାର୍ଯ୍ୟଦ୍ୱାରା ଶ୍ରୀକୃଷ୍ଣଙ୍କର ଅନିଷ୍ଟ ନ ହେବ ଏବଂ ଯାହା ଦ୍ୱାରା ତାଙ୍କର ମଙ୍ଗଳ ହେବ ସେହି କାର୍ଯ୍ୟ କରିଥିବାରୁ ବ୍ରଜବାସୀ ବିଶ୍ୱବନ୍ଦିତ ହୋଇ ପାରିଛନ୍ତି ।

ମହର୍ଷି ସୂତ କହିଲେ—"ମୁନିଗଣ ! ଗୋପାଳମାନେ ସର୍ବସମ୍ମତିକ୍ରମେ ଗୋକୁଳ ମହାବନ ତ୍ୟାଗ କରି ବୃନ୍ଦାବନ ଯିବା କଥା ସ୍ଥିର କଲେ ଏବଂ ସମସ୍ତେ ନିଜ ନିଜର ଜିନିଷପତ୍ର ଶଗଡ଼ରେ ଲଦି ବୃନ୍ଦାବନ ଅଭିମୁଖେ ଯାତ୍ରା ଆରମ୍ଭ କଲେ ।"

ଏହାଶୁଣି ଶୌନକ ପଚାରିଲେ—"ମହାଭାଗ ! ଆପଣ ପୂର୍ବରୁ ଗୋପାଳମାନଙ୍କ ଐଶ୍ୱର୍ଯ୍ୟର ଭୂରି ଭୂରି ପ୍ରଶଂସା କରିଛନ୍ତି; କିନ୍ତୁ ବର୍ତ୍ତମାନ ଆପଣଙ୍କ କଥାରୁ ଜଣାପଡ଼ୁଛି ଯେତେ ଯେପରି ଗୋପାଳମାନେ ଶଗଡ଼ ତଳେ ଅଥବା ଛାଟି ବାନ୍ଧି ଜୀବନ କଟାଉଥିଲେ ଏବଂ ଯେତେବେଳେ ଓ ଯୁଆଡ଼େ ଇଚ୍ଛା ହେଉଥିଲା ଚାଲିଯାଉଥିଲେ । ଜଣେ ସାଧାରଣ ଗୃହସ୍ଥ ଘର ଛାଡ଼ିବାବେଳେ ଘରର ଜିନିଷପତ୍ର ନେଇ ଅନ୍ୟ ସ୍ଥାନରେ ରଖିବା ପାଇଁ କେତେ ଦିନ ଲାଗିଯାଉଛି ; କିନ୍ତୁ ଗୋପାଳମାନେ ଯାଙ୍ଗେ ସାଙ୍ଗେ କିପରି ବ୍ରଜପୁର ଛାଡ଼ି ବୃନ୍ଦାବନ ଚାଲିଗଲେ ?"

ମହର୍ଷି ସୂତ କହିଲେ—"ମହାଶୟ ! ପ୍ରଥମେ ଗୋପାଳମାନେ ବଣରେ ରହୁ ବଣୁଆ ଜାତିରୂପେ ପରିଚିତ ହେଉଥିଲେ । ସେମାନେ ବଣରେ ରହୁଥିଲେ ଏବଂ ନିଜର ଜିନିଷପତ୍ର ଶଗଡ଼ରେ ରଖୁଥିଲେ । ହଜାର ହଜାର ଗାଈଗୋରୁ ସେମାନଙ୍କ ପାଖରେ ଥିଲା । ଯେଉଁଠି ଭଲ ଘାସ ମିଳୁଥିଲା ଓ ପାଣିର ସୁବିଧା ଥିଲା ସେଠାକୁ ଯାଇ ରହୁଥିଲେ । ଗୋରୁଙ୍କ ରହିବା ପାଇଁ ଛାଟି ବାନ୍ଧୁଥିଲେ । ଗୋରୁ ଗାଈ ଯେଉଁଠି ରହୁଥିଲେ ତା'ର ନାମ ହେଲା ଗୋକୁଳ । ଗୋବର୍ଦ୍ଧନ ପୂଜା ସମୟରେ ଭଗବାନ୍ ସ୍ୱୟଂ ନିଜ ମୁହଁରେ ନନ୍ଦଙ୍କୁ କହିଥିଲେ—ବାପା ! ଆମର ପୁର ନାହିଁ, ନଗର କି ଗ୍ରାମ ନାହିଁ, ଘର ନାହିଁ କି ଅନ୍ୟାନ୍ୟ କିଛି ନାହିଁ । ଆମେ ବନବାସୀ, କାରଣ ବଣ ପାହାଡ଼ରେ ଆମେ ବାସକରୁଁ । ଏହି କଥାରୁ ମନେହୁଏ, ଗୋପାଳମାନେ ବନବାସୀ ଥିଲେ; କିନ୍ତୁ ପରେ ନନ୍ଦଙ୍କ ଐଶ୍ୱର୍ଯ୍ୟ ବିଷୟରେ ଯେଉଁ ବର୍ଣ୍ଣନା କରାଯାଇଛି ତାହା ଶ୍ରୀକୃଷ୍ଣଙ୍କ ଜନ୍ମପରର ଘଟଣା । ଶ୍ରୀକୃଷ୍ଣଙ୍କ ଜନ୍ମପରେ ବ୍ରଜପୁର ରମାଙ୍କ କ୍ରୀଡ଼ାଭୂମି ପାଲଟି ଯାଇଥିଲା । ସ୍ୱୟଂ ରମାପତି ଯେଉଁଠି ବାସ କରନ୍ତି, ସେଠାରେ କୌଣସି ପ୍ରକାର ଅଭାବର ପ୍ରଶ୍ନ ଉଠିଥିବାର ନ ଥିଲା । ବ୍ରଜର ଚୌରାଶି କୋଶ ମଧ୍ୟରେ ବାରଟି ବନ ଓ ବାରଟି ଉପବନ ଥିଲା । ସେ ସେହି ବନ ଉପବନରେ ସର୍ବଦା ଘୂରି ବୁଲୁଥିଲେ । ପ୍ରଭୁ ବଳଭଦ୍ର ସେଇଠି ଜନ୍ମଗ୍ରହଣ କରିଥିଲେ ଆଜି ସେ ସ୍ଥାନ ‍'ବଳଭଦ୍ର ଗ୍ରାମ' ନାମରେ ଅଭିହିତ । ଯମୁନାର ବ୍ରହ୍ମାଣ୍ଡ ଘାଟ ପାଖରେ ଥିବା ମହାବନରେ ଶ୍ରୀକୃଷ୍ଣ ଜନ୍ମ ଗ୍ରହଣ କରିଥିଲେ । ଶ୍ରୀକୃଷ୍ଣଙ୍କ ଜନ୍ମ ପରେ ଗୋପାଳମାନେ ତିନି ଚାରିବର୍ଷ ପର୍ଯ୍ୟନ୍ତ ସେଠାରେ ଥିଲେ । ସେଠାରେ ବନଭୂମିର ସୌନ୍ଦର୍ଯ୍ୟ ସହିତ ଗୋପାଳମାନଙ୍କ ଜୀବନଯାତ୍ରା ଆଡ଼ମ୍ବରପୂର୍ଣ୍ଣ ହୋଇଥିଲା; କିନ୍ତୁ ଗୋକୁଳ ତ୍ୟାଗ କରି ବୃନ୍ଦାବନ ଯିବାପରେ ବୃନ୍ଦାବନ ବି ସେହିପରି ଐଶ୍ୱର୍ଯ୍ୟରେ ପୂର୍ଣ୍ଣ ହୋଇଗଲା ; ତେଣୁ ଭଗବାନ ଯେଉଁଠି ରହନ୍ତି ସେଠାରେ ଅଘଟଣ ଘଟିବା ସ୍ୱାଭାବିକ । ଗୋପାଳମାନେ ସାଧାରଣତଃ ବନବାସୀ ଥିଲେ ମଧ୍ୟ ଶ୍ରୀକୃଷ୍ଣଙ୍କ ଜନ୍ମପରେ ଗ୍ରାମ, ନଗର ଓ ରାଜଧାନୀ ପ୍ରତିଷ୍ଠା କରିଥିଲେ ଓ ସ୍ଥାୟୀଭାବେ ବସବାସ କରି ରହିଥିଲେ । ଯଥାସ୍ଥାନରେ ମୁଁ ସେ ବିଷୟ ବର୍ଣ୍ଣନା କରିବି ।"

ଶୌନକ କହିଲେ—"ମହାଭାଗ ! ଆପଣ ଯାହା କହିଲେ ସତ । ଶ୍ରୀହରି ଯେଉଁଠି ରହିବେ ସେଠାରେ ଅଛି ଅଭାବ କ'ଣ ? ହଁ ଏଥର ବୃନ୍ଦାବନ ଯାତ୍ରା କଥା କହନ୍ତୁ ।"

ମହର୍ଷି ସୂତ କହିଲେ—"ମହାଶୟ ! ଶୁଣନ୍ତୁ, ଗୋପାଳମାନେ ସମସ୍ତ ଜିନିଷପତ୍ର ବନ୍ଧାବନ୍ଧି କରି ଶଗଡ଼ରେ ଉଠିଦେଲେ । ତା'ଉପରେ ଖଟସବୁ ରଖି ଦଉଡ଼ିରେ ବାନ୍ଧିଦେଲେ । ସେହି ଖଟ ଉପରେ ସ୍ତ୍ରୀଲୋକମାନେ ଛୋଟପିଲାଙ୍କୁ ନେଇ ବସିଲେ । ବୃଦ୍ଧ, ଅସମର୍ଥ ଲୋକେ ଗାଡ଼ିରେ ବସିଲେ ଏବଂ କେତେକ ଘୋଡ଼ା ଉପରେ ବସିଲେ । ଯୁବକ-ମାନେ ଧନୁ ତୀର ଧରି ଆଗେ ଆଗେ ଚାଲିଲେ । କେତେକ ବାମ ଓ ଡାହାଣ ପାଖରେ ରହିଲେ ଏବଂ ମଝିରେ ଗାଈଗୋରୁ ସବୁ ରହିଲେ । ସମସ୍ତଙ୍କ ପଛରେ ଗାଡ଼ିଗୁଡ଼ିକ ଚାଲିଲେ । କେତେକ ଶଗଡ଼ ପଛରେ ନନ୍ଦ ଏକ ସୁସଜ୍ଜିତ ରଥରେ ବସିଲେ । ଗୋଟିଏ ରଥରେ ରାମ ଶ୍ୟାମଙ୍କୁ କୋଳରେ ଧରି ଯଶୋଦା ଓ ରୋହିଣୀ ବସିଲେ । ସେହି ସୁସଜ୍ଜିତ ରଥ ଆଗରେ ତୂରୀ ଓ ଶଙ୍ଖ ବଜାଇ କେତେକ ଗୋପାଳ ଚାଲିଲେ । ଏହିପରି ଗୋପବାସୀ ଆବାଳବୃଦ୍ଧ ବନିତା ବୃନ୍ଦାବନ ଅଭିମୁଖେ ଅଗ୍ରସର । ଗୋରୁଙ୍କ ଖୁରାରୁ ଧୂଳି ଉଡ଼ୁଥିଲା ଏବଂ ଗୋପାଳ-ମାନେ ପରସ୍ପର କଥାବାର୍ତ୍ତା ହୋଇ ଚାଲୁଥିଲେ ।"

ଗୋପୀମାନେ ଭଲଭାବରେ ସଜାସଜ ହୋଇଥିଲେ । ବିଭିନ୍ନ ପ୍ରକାର ରଙ୍ଗର ଶାଢ଼ୀ, ନାନାପ୍ରକାର ଅଳଙ୍କାର ପିନ୍ଧି ଗୋପୀମାନେ ବିବାହ ଉତ୍ସବକୁ ଗଲା ପରି ଖୁବ୍ ଆନନ୍ଦ ଉଲ୍ଲାସ ମଧ୍ୟରେ ଯାଉଥିଲେ । ପ୍ରଫୁଲ୍ଲ ଚିତ୍ତରେ ସେମାନେ ଶ୍ରୀକୃଷ୍ଣଲୀଳା ସମ୍ବନ୍ଧୀୟ ଗୀତ ଗାଉଥିଲେ । ନିଜ ପୁଅର ପ୍ରଶଂସା କରି ଗୋପୀମାନେ ଗାଉଥିବା ଗୀତକୁ ଯଶୋଦା ଉତ୍କର୍ଣ୍ଣ ହୋଇ ଶୁଣୁଥିଲେ । ଆନନ୍ଦରେ ହୃଦୟ ତାଙ୍କର ପୂରି ଉଠୁଥିଲା । ନିଜ ପୁଅଙ୍କ ବାଲ୍ୟଲୀଳା ସମ୍ବନ୍ଧୀୟ ଗୀତରେ ଯଶୋଦା ଓ ରୋହିଣୀ ତନ୍ମୟ ହୋଇ ପଡ଼ୁଥିଲେ ।

ବନମାର୍ଗରେ ଯିବାବେଳେ ଶ୍ରୀକୃଷ୍ଣ ଯାହା ଦେଖୁଥିଲେ ବଡ଼ ଉତ୍ସୁକ ହୋଇ ସେ ବିଷୟରେ ପଚାରୁଥିଲେ—"ମା, ଏ କିଏ ?" ଯଶୋଦା କହିଲେ—"ଏ ହେଉଛି ମୟୂର । ତା'ର ପକ୍ଷକୁ ତୁ ମୁଣ୍ଡରେ ପିନ୍ଧୁଛୁ । ମୟୂରଙ୍କୁ ତୁ ନହୁଣୀ ଖୁଆଉଥିଲୁ, ସେ କଥା କ'ଣ ତୋର ମନେ ପଡ଼ୁନି ?"

ଶ୍ରୀକୃଷ୍ଣ କହିଲେ—"ହଁ, ମୟୂରକୁ ମୁଁ ଜାଣେ ; କିନ୍ତୁ ତା' ସହିତ ପକ୍ଷ ନ ଥିବା ଏମାନେ କିଏ ?"

ମା' ଉତ୍ତର ଦେଲେ—"ବାବୁ ! ଏମାନେ ତାଙ୍କର ବୋହୂ । ମୟୂରମାନେ ଯେତେବେଳେ ଆନନ୍ଦରେ ପକ୍ଷ ମେଲାଇ ନାଚନ୍ତି ସେତେବେଳେ ସେମାନଙ୍କ ଆଖିରୁ ଆନନ୍ଦାଶ୍ରୁ ଝରିପଡ଼େ । ସେହି ଅଶ୍ରୁବିନ୍ଦୁକୁ ମୟୂରୀମାନେ ପିଅନ୍ତି ଓ ଗର୍ଭବତୀ ହୁଅନ୍ତି ଏବଂ

ଯଥା ସମୟରେ ଛୁଆ ଜନ୍ମ କରନ୍ତି ।'' ଏହି ସମୟରେ ସାରସ ପକ୍ଷୀଙ୍କୁ ଦେଖି ଶ୍ରୀକୃଷ୍ଣ ପଚ୍ଚାରିଲେ—"ଏମାନେ କିଏ ?"

ମା' କହିଲେ—''ପୁଅ ! ଏମାନେ ସାରସ ଓ ସାରସୀ । ସେମାନେ ସର୍ବଦା ଏକ ସାଙ୍ଗରେ ରହନ୍ତି । ବରବଧୂ ପରି କେବେହେଲେ ସେମାନେ କେହି କାହାକୁ ଛାଡ଼ି ଦୂରରେ ରହନ୍ତି ନାହିଁ । ସେହି ଯୋଡ଼ି ମଧ୍ୟରୁ ଗୋଟିଏ ମରିଗଲେ ଅନ୍ୟଟି ମଧ୍ୟ ମରିଯାଏ ।''

ଏହି ସମୟରେ ହରିଣ ହରିଣୀଙ୍କୁ ଦେଖି ଶ୍ରୀକୃଷ୍ଣ ପଚ୍ଚାରିବାରୁ ମା' ପୁଣି କହିଲେ— ''ଏମାନେ ମୃଗ ଓ ମୃଗୀ । ଯାହାର ଶିଙ୍ଗ ଅଛି ସେ ମୃଗ ଏବଂ ଯାହାର ଶିଙ୍ଗ ନାହିଁ ସେ ମୃଗୀ ।'' ମା'ଙ୍କ କଥା ଶୁଣି ଶ୍ରୀକୃଷ୍ଣ ପଚ୍ଚାରିଲେ—''ସମସ୍ତଙ୍କର ବୋହୂ ଅଛି, ମୋର ବୋହୂ କାହିଁ ?''

ମା' ହସି ହସି କହିଲେ—''ଆରେ ଏବେ ତୋର ବୋହୂ କେଉଁଠୁ ଆସିବ ? ତୁ ତ ଗୋଚାରଣ କରୁଛୁ, ତୋର ବୋହୂ ଆସିବ କିମିତି ?''

ଶ୍ରୀକୃଷ୍ଣ କହିଲେ—''ମା' ମୁଁ ଆଉ ଗୋଚାରଣ କରିବ ନାହିଁ । ମୋର ଗୋଟିଏ ବୋହୂ ଆଣ । ମୁଁ ବି ବୋହୂ ସହିତ ବୁଲିବି । ସମସ୍ତଙ୍କର ଯେତେବେଳେ ବୋହୂ ଅଛି ସେତେବେଳେ ମୋର ମଧ୍ୟ ବୋହୂ ରହିବା ଉଚିତ ।

ମା' କହିଲେ—''ହଉ, ତୁ ବୃନ୍ଦାବନ ଚାଲ । ତୋ' ପାଇଁ ଗୋଟିଏ ବୋହୂ ଆଣିବି ।'' ଏହା ଶୁଣି ବୃନ୍ଦାବନ କେତେଦୂର ଅଛି ବୋଲି ଶ୍ରୀକୃଷ୍ଣ ପଚ୍ଚାରିବାରୁ ମା' ଯଶୋଦା କହିଲେ—''ଏଇ ଆଗରେ ଯେଉଁ ଗୋବର୍ଦ୍ଧନ ଗିରି ଦେଖାଯାଉଛି ତାରି ପାଖରେ ବୃନ୍ଦାବନ ।''

ଶ୍ରୀକୃଷ୍ଣ ପଚ୍ଚାରିଲେ—''ମା' ଗୋବର୍ଦ୍ଧନ କ'ଣ ?''

ଯଶୋଦା କହିଲେ—''ଗୋବର୍ଦ୍ଧନ ଏକ ପାହାଡ଼ । ଏହା ଖୁବ୍ ଉଚ୍ଚ ।'' ଶ୍ରୀକୃଷ୍ଣ ପଚ୍ଚାରିଲେ—''କେତେ ଉଚ୍ଚ, କ'ଣ ବାପାଙ୍କଠାରୁ ଉଚ୍ଚ ?'' ମା'ଙ୍କଠାରୁ 'ହଁ' ବୋଲି ଉତ୍ତର ଶୁଣି ଶ୍ରୀକୃଷ୍ଣ ନୀରବ ହୋଇଗଲେ । ସେ ଭାବିଲେ—ବାପାଙ୍କଠାରୁ କିଏ ଅଧିକ ଉଚ୍ଚ ହୋଇପାରିବ ?

ମହର୍ଷି ସୂତ କହିଲେ—''ମୁନିବରଗଣ ! ଏହିପରି କଥାବାର୍ତ୍ତା ହୋଇ ଯମୁନା କୂଳେ କୂଳେ ଯାଇ ସମସ୍ତେ ବୃନ୍ଦାବନ ପାଖରେ ପହଞ୍ଚିଲେ । ରାତିରେ ସେଇଠି ବିଶ୍ରାମ ନେଲେ ଏବଂ ପରଦିନ ସକାଳେ ଯମୁନା ପାରି ହୋଇ ସମସ୍ତେ ପବିତ୍ର ବୃନ୍ଦାବନରେ ପହଞ୍ଚିଲେ । ବୃନ୍ଦାବନ ଥିଲା ସବୁ ଋତୁରେ ସୁଖପ୍ରଦ ସ୍ଥାନ । ଦୂରରେ ଗୋବର୍ଦ୍ଧନ ପର୍ବତ ଦେଖାଯାଉଥିଲା । ବୃନ୍ଦାବନର ବୃକ୍ଷରାଜି ସର୍ବଦା ପତ୍ରରେ ଆଚ୍ଛାଦିତ ଥିଲା । ବୃକ୍ଷଗୁଡ଼ିକରେ ଲତା ସବୁ ମାଡ଼ି

ସ୍ୱାଭାବିକଭାବେ ଅସଂଖ୍ୟ କୁଞ୍ଜକୁଟୀର ସୃଷ୍ଟି ହୋଇଥିଲା । ଗୋପାଳମାନେ ଯମୁନାର ପଶ୍ଚିମ ଭାଗରେ ଅର୍ଦ୍ଧଚନ୍ଦ୍ରାକାରଭାବେ ଶଗଡ଼ଗୁଡ଼ିକ ସଜାଇ ରଖି ଗୋରୁଙ୍କ ରହିବା ପାଇଁ ସ୍ଥାନ ଠିକ୍ କରିଦେଲେ । ରାମ ଓ କୃଷ୍ଣ ବୁଲିଯାଇ ପବିତ୍ର ବନଭୂମି, ଗୋବର୍ଦ୍ଧନ ପର୍ବତ ଓ ଯମୁନାକୂଳକୁ ଦେଖି ଖୁସି ହୋଇଗଲେ । ବୃନ୍ଦାବନରେ ରହି ରାମ ଓ କୃଷ୍ଣ ଗୋପାଳ ବାଳକମାନଙ୍କ ସହିତ ନାନାପ୍ରକାର ଲୀଳା କରିବାକୁ ଲାଗିଲେ ।”

### ଛପ୍ପୟ

ସୁତନ ଗୋଦ ମହଁ ଲୟେ ମାତୁ ଜାଓ୍ୱେଁ ବୃନ୍ଦାବନ ।
ଜଗମଗ ନିରଖତ ଶ୍ୟାମ ବୃକ୍ଷ ଖଗ ମୃଗ ବନ ପଶୁ-ଗନ ॥
କୌତୂହଲକେ ସହିତ ମାତୁତେଁ ପୁଛେଁ ନଟବର ।
ମୈୟା ! ଯେ କୋ ରହୈଁ କହାଁ କିତ ତୈ ଇନକୋ ଘର ॥
ମୈୟା ପ୍ୟାର ଦୁଲାରତେଁ, ଇତ ଉତକୀ ବାତେଁ କହୈଁ ।
କହୈଁ ଅଟପଟୀ ବାତ ଜବ, ହସି ସୁଖ ସେରେଁ ଚୁପ୍ ରହୈଁ ॥



## ବୃନ୍ଦାବନରେ ବଂଶୀ ପ୍ରାପ୍ତି

ଏବଂ ବ୍ରଜୌକସାଂ ପ୍ରୀତିଂ ଯଚ୍ଛନ୍ତୌ ବାଳଚେଷ୍ଟିତୈଃ ।
କଳବାକ୍ୟୈଃ ସ୍ୱକାଳେନ ବତ୍ସପାଲୌ ବଭୂବତୁଃ ॥
(ଶ୍ରୀ ଭା ୧୦ ସ୍କ, ୧୧ ଅ, ୩୭ ଶ୍ଳୋକ)

### ଛପ୍ପୟ

ବୃନ୍ଦାବନମହଁ ପହୁଁଚି ସବନନେ ଡେରା ଡାରେ ।
କୃଷ୍ଣଚନ୍ଦ୍ର ହ୍ୱୈ ଉଦ୍ଧତ କର୍ୟୋ ନଭ ବନ ଉଜିୟାରେ ॥
ବନ, ଗିରି, ତଟନୀ ଛଟା ନିରଖି ହରି ଅତି ସୁଖ ପାୟୋ ।
ବତ୍ସପାଳ ବନି ମାତୁ ପିତା ମନ ମୋଦ ବଢ଼ାୟୋ ॥
ଗୋପବତ୍ସ ଗୋବତ୍ସ ସଙ୍ଗ, ଲୟେ ବିବିଧ କୌତୁକ କରେଁ ।
ମୁରଲୀ ମଧୁର ବଜାଇକେଁ, ଗାଓ୍ୱେଁ ନାଚେଁ ସ୍ୱର ଭରେଁ ॥

ଚରିତ୍ରବାନ୍ ବ୍ୟକ୍ତିଠାରେ ସୁଖ ଓ ସମ୍ମାନ ଥାଏ । ମୁଁ ଧନୀ, ମାନୀ, ପଣ୍ଡିତ, ତପସ୍ୱୀ, ତପସ୍ୱୀ, ପ୍ରଭାବଶାଳୀ, ଗୁଣୀ, ସୁନ୍ଦର, ଶ୍ରେଷ୍ଠ ତଥା ସମ୍ମାନିତ, ପ୍ରତିଷ୍ଠିତ ଅଥବା ଅନ୍ୟ କୌଣସି ଦୃଷ୍ଟିରୁ ବଡ଼ ବୋଲି ଯାହାର ମନରେ ଅଭିମାନ ଅଛି, ସେ ସାଂସାରିକ ବସ୍ତୁକୁ ନେଇ ଗର୍ବ ପ୍ରକାଶ କରେ, ସେ କାହାକୁ ଆଦର, ପ୍ରେମ କରିପାରେ ନାହିଁ । ପ୍ରେମଭାବନା ସର୍ବଦା ଅଭିମାନ ରହିତ ହୋଇଥାଏ ; କେବଳ ନିରଭିମାନ ବ୍ୟକ୍ତି ହିଁ ଅନ୍ୟକୁ ପ୍ରେମ କରିପାରେ । ପ୍ରେମ, ପ୍ରେମ ପାଇଁ ଉଦ୍ଦିଷ୍ଟ । ଯଦି କୌଣସି କାରଣ ପାଇଁ ପ୍ରେମଭାବନା ପୋଷଣ କରାଯାଏ ତାହାକୁ ପ୍ରେମ ନ କହି ସ୍ୱାର୍ଥ କୁହାଯାଏ । ସରଳ ଓ ସବଳ ସ୍ୱଭାବର ପ୍ରେମରେ ଶିଷ୍ଟାଚାର ରହେନାହିଁ । ସଖ୍ୟପ୍ରେମରେ ଔପଚାରିକ ଅଭାବ ଘଟେ । ସଖାଭାବରେ ଶ୍ରେଷ୍ଠବଡ଼ ଭେଦଭାବ ଜାତ ହେଲେ ତାହା ନୀରସ ହୋଇଯାଏ । ବାଳକମାନଙ୍କ ମନରେ ଶ୍ରେଷ୍ଠ ବଡ଼ ଭାବନା ବୟସ୍କ ଲୋକମାନେ ସୃଷ୍ଟି କରନ୍ତି; କିନ୍ତୁ ପିଲାମାନଙ୍କ ମନରେ ଶ୍ରେଷ୍ଠ ବଡ଼ ଭାବନା ସାଧାରଣତଃ ନ ଥାଏ ।

ମହର୍ଷି ସୂତ କହିଲେ—"ମୁନିଗଣ ! ବୃନ୍ଦାବନର ପବିତ୍ର ଭୂମିରେ ପାଦ ଦେବା ପରେ ଶ୍ରୀକୃଷ୍ଣଙ୍କ ଚିତ୍ତ ସରସତାରେ ନିମଗ୍ନ ହୋଇଗଲା । ସ୍ୱଭାବତଃ ରସମୟ ଶ୍ରୀକୃଷ୍ଣଙ୍କ ରସଭାବ ଅଧିକରୁ ଅଧିକ ପ୍ରସ୍ଫୁରିତ ହେବାକୁ ଲାଗିଲା । ବୟସ୍କ ଗୋପାଳମାନଙ୍କୁ ଗାଈ ଚରାଇବାକୁ ନେଉଥିବାର ଦେଖି ଶ୍ୟାମସୁନ୍ଦର ପଚାରିଲେ—ମା' ଏହି ଗୋପକୁମାରମାନେ ପ୍ରତିଦିନ ଗାଈ ନେଇ କୁଆଡ଼େ ଯାଉଛନ୍ତି ?"

ଯଶୋଦା କହିଲେ—"ସେମାନେ ଗାଈ ଚରାଇବାକୁ ଯାଉଛନ୍ତି । ଶ୍ରୀକୃଷ୍ଣ ଯେତେବେଳେ ଗାଈ ଚରାଇବାକୁ ଯିବାପାଇଁ କହିଲେ ସେତେବେଳେ ମା' କହିଲେ—ପୁଅ ! ତୁ ଅତି ଶ୍ରେଷ୍ଠ ପିଲା, ତୁ କପରି ଗାଈ ଚରାଇବାକୁ ଯିବୁ ? ବହୁତ ଦୁଷ୍ଟ ଗାଈ ଅଛନ୍ତି, ଦୌଡ଼ି ଦୌଡ଼ି କୁଆଡ଼େ ବୋଲି କୁଆଡ଼େ ପଳାଇଯିବେ । କେତେକ ଓଲିଆ ଗାଈ ଅଛନ୍ତି, ସେମାନେ ଗୋଠଗୁଡ଼ି କ୍ଷେତରେ ଯାଇ ପଶିବେ । ପୁଣି କେତେକ ତୁଥାଁ ମାରି ପଳାଇବେ । ତୁ ପିଲାଲୋକ ସମ୍ଭାଳି ପାରିବୁ ନାହିଁ ।"

ଶ୍ରୀକୃଷ୍ଣ ଆଗ୍ରହର ସହିତ କହିଲେ—"ନା, ମା' ମୁଁ ଗାଈ ଚରାଇବାକୁ ନିଶ୍ଚୟ ଯିବି ।"

ଭଗବାନ ଶ୍ରୀକୃଷ୍ଣ ଯେତେବେଳେ ଗାଈ ଚରାଇବାକୁ ଯିବାପାଇଁ ଜିଦ କଲେ ସେତେବେଳେ ଯଶୋଦା ନନ୍ଦଙ୍କୁ କହିଲେ—"ପିଲାମାନେ ଗାଈ ଚରାଇବାକୁ ଯିବାପାଇଁ ଜିଦ୍ କରୁଛନ୍ତି । କହିଥା କି କାହ୍ନୁଆ କେହି ମନା ମାନୁନାହାନ୍ତି ।"

ନନ୍ଦ କହିଲେ—"ପିଲାମାନଙ୍କ ମନ ଭାଙ୍ଗିବା ଉଚିତ ନୁହେଁ । ଯଦି ସେ ବେଶୀ ଜିଦ୍ କରୁଛି ତେବେ ଏହି ଆଖପାଖରେ ବାଛୁରୀଙ୍କୁ ନେଇ ବୁଲାଇ ଆଣୁ । ବାଛୁରୀଙ୍କର

ଶିଙ୍ଗ ନାହିଁ ; ତେଣୁ ସେମାନେ ମାରିବେ ନାହିଁ । ବାଛୁରି ଚରିବେ ଓ ପିଲାଙ୍କ ଖେଳ ବି ହେବ ।''

ଯଶୋଦା ନନ୍ଦଙ୍କ ପରାମର୍ଶ ସହିତ ଏକମତ ହେଲେ । ସେ ଶ୍ରୀକୃଷ୍ଣଙ୍କୁ ଡାକି କହିଲେ—''ତୁ ଗୋପାଳମାନଙ୍କ ପିଲା; ତେଣୁ ବାଛୁରୀଙ୍କୁ ନେଇ ଏଇ ପାଖରେ ଚରାଇ ଆଣ । କେବେହେଲେ ଦୂରକୁ ଯିବୁନାହିଁ ।''

ଶ୍ରୀକୃଷ୍ଣଙ୍କର ଚରାଇବାକୁ ଯିବାର ଇଚ୍ଛା ଥିଲା । ଗାଈ ଚରନ୍ତୁ କି ବାଛୁରି ଚରନ୍ତୁ ସେଥିରେ ତାଙ୍କର ଆପତ୍ତି ନାହିଁ । ବାଛୁରିଗୁଡ଼ିକ ପ୍ରତି ତାଙ୍କ ସ୍ନେହଭାବ ଅଧିକ ଥିଲା । ତେଣୁ ବାଛୁରି ଚରାଇବା ପାଇଁ ସେ ରାଜି ହୋଇଗଲେ । ଶ୍ରୀକୃଷ୍ଣ ଓ ବଳରାମ ଦୁହେଁ ବତ୍ସପାଳ ହୋଇଗଲେ । ସକାଳେ ଉଠିବା ପରେ ମା' ତାଙ୍କୁ ଗାଧୋଇ ଦେଇ ବେଶ କରୁଥିଲେ । ହଳଦିଆ ଲୁଗା କୃଷ୍ଣଙ୍କୁ ଓ ନୀଳଲୁଗା ବଳରାମଙ୍କୁ ପିନ୍ଧାଉଥିଲେ । ହାତ, ପାଦ, ବେକରେ ବହୁମୂଲ୍ୟ ଅଳଙ୍କାର ପିନ୍ଧାଉଥିଲେ ଏବଂ କିଛି ଖୁଆଇ ସାଙ୍ଗ ଅନ୍ୟ ଗୋପକୁମାରଙ୍କ ସହିତ ଦୁଇଭାଇଙ୍କୁ ବାଛୁରି ଚରାଇବା ପାଇଁ ନିକଟବର୍ତ୍ତୀ ସ୍ଥାନକୁ ପଠାଉଥିଲେ । ଶ୍ରୀକୃଷ୍ଣ ବଳଦେବଙ୍କ ସହିତ ଆନନ୍ଦରେ ବାଛୁରି ଚରାଇବାପାଇଁ ବନକୁ ଯାଉଥିଲେ । ବାଛୁରି ଚରାଇବା ଏକ ବାହାନା ଥିଲା । ସେହି ବାହାନାରେ ସେ ଗୋପାଳ-ବାଳକମାନଙ୍କ ସହିତ ବନା ବାଧାରେ ବାଗୁଡ଼ି (କବାଡ଼ି) ଖେଳ ଓ ଅନ୍ୟାନ୍ୟ ଖେଳ ଖେଳୁଥିଲେ ।

ବଡ଼ ବଡ଼ ପିଲାମାନେ ବଂଶୀ ବଜାଉଥିଲେ । ବଂଶୀ ଧ୍ୱନି ଶୁଣିବାମାତ୍ରେ ଶ୍ରୀକୃଷ୍ଣ ଆନନ୍ଦବିଭୋର ହୋଇପଡ଼ୁଥିଲେ । ଦିନେ ଶ୍ରୀକୃଷ୍ଣ ଜଣେ ବାଳକ ବନ୍ଧୁଙ୍କୁ କହିଲେ—''ଭାଇ ! ମୋତେ ଗୋଟିଏ ବଂଶୀ ତିଆରି କରି ଦିଅ ।''

ଗୋପାଳ ବାଳକ କହିଲା—''ଅଚ୍ଛା, ମୁଁ ବଂଶୀ ତିଆରି କରି ଦେବି ; କିନ୍ତୁ ତୁମେ ମୋତେ କାଲି ମୋହନଭୋଗ ଖାଇବାକୁ ଦେବ ।''

ଶ୍ରୀକୃଷ୍ଣ କହିଲେ—''ନା ଭାଇ, ସେପରି ହେବନି । ତୁ ମୋତେ ବଂଶୀ ତିଆରି କରି ଦେ, ବଜାଇବା ଶିଖାଇ ଦେ । ତା'ପରେ ମୁ ସବୁ ପିଲାଙ୍କୁ ଏକ ବଡ଼ ଭୋଜି ଦେବି ।''

ଏହା ଶୁଣି ପିଲାମାନେ ସମସ୍ତେ ଆନନ୍ଦରେ ନାଚିବାକୁ ଲାଗିଲେ । ସମସ୍ତେ କହିଲେ—''ଭଲ କଥା । କାହ୍ନୁକୁ ଏକ ଭଲ ବଂଶୀ ତିଆରି କରିଦିଅ । ସେ ଟିକିଏ ବଙ୍କା । ତେଣୁ ତାଙ୍କଠାରିରେ ସେ ବଂଶୀ ବଜାଇଲେ ଖୁବ୍ ଭଲ ଲାଗିବ ।'' ଏହାପରେ ସମସ୍ତେ ଶ୍ରୀକୃଷ୍ଣଙ୍କ ପାଇଁ ବଂଶୀ ଖୋଜିବାରେ ଲାଗିଗଲେ ।

ମହର୍ଷି ସୂତ କହିଲେ—''ମୁନିଗଣ ! ମାତା, ପିତା ତଥା ଆତ୍ମୀୟସ୍ୱଜନ ପୁଅର ବିବାହ ପାଇଁ ଯେତେବେଳେ ବୋହୂ ଖୋଜିବାକୁ ଯାଆନ୍ତି ସେତେବେଳେ ସବୁଠୁ ସୁନ୍ଦର

ବୋହୂ ପାଇବା ପାଇଁ ସମସ୍ତେ ଇଚ୍ଛା କରନ୍ତି ; କିନ୍ତୁ ଏହା ସେ ବହୁପୂର୍ବରୁ ନିର୍ଣ୍ଣିତ ହୋଇ-ସାଇଥାଏ ତାହା କେହି ଜାଣିପାରନ୍ତି ନାହିଁ । ଯାହାର ଯାହା ସହିତ ସଂଯୋଗ ହେବାର କଥା ସେ ବିଷୟରେ ଯତ୍ନ କର ବା ନ କର ତାହା ନିଶ୍ଚୟ ଘଟିବ । ଯାହାର ଯେ ବୋହୂ ହେବା କଥା ସେହି ବୋହୂ ତାକୁ ମିଳିବ । ବିଧାତା ଯାହା ସହିତ ଯାହାର ସଂଯୋଗ ଲେଖିଛି ତାହା ଅବଶ୍ୟ ଘଟିବ । ସେହିପରି ଶ୍ରୀକୃଷ୍ଣ ତ ସାଧାରଣ ବେଣୁ ବଜାଇବେ ନାହିଁ । ତାଙ୍କର ସମସ୍ତ ବସ୍ତୁ ଚିନ୍ମୟ । ବହୁକାଳ ଧରି ଯୋଗ, ତପସ୍ୟା, ଧ୍ୟାନ କରି କେହି ତାଙ୍କ ପାଦର ନୂପୁର ହୁଏତ କେହି ହୁଏ ତାଙ୍କ କଣ୍ଠର ହାର ଏବଂ କିଏ ପୀତାମ୍ବର ତ ଅନ୍ୟ କେହି ତାଙ୍କ ମୁକୁଟ ହୁଏ । ମୁରଲୀର ଅବସ୍ଥା ମଧ୍ୟ ସେହିପରି । ଯେ ବାଉଁଶ ନଳୀ ହୋଇ ଶ୍ରୀକୃଷ୍ଣଙ୍କ ଅଧରାମୃତ ପାନ କରିବାର ଇଚ୍ଛା କରିଛି ସେ କେତେକାଳ ତପସ୍ୟା କରିଥିବ ତାହା କହିବା ସମ୍ଭବ ନୁହେଁ । ବର୍ତ୍ତମାନ ତା'ର ତପସ୍ୟା ଫଳିବାର ସମୟ ଆସିଛି । ଗୋପାଳ ବାଳକମାନେ ଭଗବାନଙ୍କର ବଂଶୀ ପାଇଁ ବାଉଁଶ ଖୋଜିବାରେ ଲାଗିଲେ । କିଏ କହିଲା—ଏଇଟା ଖୁବ୍ ସୁନ୍ଦର । ଅନ୍ୟ କିଏ କହିଲା—ନା, ସେଇଟା ବଙ୍କା । ଏହିପରି, ଗଣ୍ଠିଆ, ପତଳା, ମୋଟା ଆଦି କହି ନାନାପ୍ରକାର ବାଉଁଶର ଦୋଷ ଦେଖାଇ ଅନେକ ବାଉଁଶ ବାଦ୍ ଦିଆଗଲା । ବହୁତ ଖୋଜିବା ପରେ ଶେଷରେ ସେମାନେ ଏକ ଚକ୍‌ମକ୍ କରୁଥିବା ବାଉଁଶ ପାଇଲେ । ତାହା ଶ୍ରେଷ୍ଠ ନ ଥିଲା କି ବଡ଼ ନ ଥିଲା, ବଙ୍କା କି ଗଣ୍ଠିଆ ନ ଥିଲା ଏବଂ ମୋଟା କି ପତଳା ନ ଥିଲା । ସେହି ବାଉଁଶଟି ସ୍ୱତଃ ବଂଶୀ ଆକାରର ହୋଇଥିଲା ।

ଶ୍ରୀକୃଷ୍ଣ ବହୁ ଦୂରରୁ ସେହି ବାଉଁଶଟିକୁ ଦେଖି କହିଲେ—"ଦେଖ, ସେଇ ଶ୍ରେଷ୍ଠ ବାଉଁଶଟି କିପରି ଚକ୍ ଚକ୍ କରୁଛି । ସେଥିରେ କ'ଣ ବଂଶୀ ତିଆରି ହୋଇପାରିବ ନାହିଁ ?"

ଅନ୍ୟ ଜଣେ ବାଳକ କହିଲା—ହଁ, ସେହି ବାଉଁଶଟି ସବୁଠୁ ଭଲ ମନେ ହେଉଛି । ଚକ୍ ଚକ୍ କରୁଛି ଏବଂ ଠିକ୍ ବଂଶୀ ମାପରେ ଅଛି । ସେଥିରେ ଗଣ୍ଠି ବି ନାହିଁ । ତାହାକୁ ଭାଙ୍ଗିବା କି କାଟିବା ଦରକାର ପଡ଼ିବ ନାହିଁ । ତୁମର ବଂଶୀ ହେବା ପାଇଁ ସତେ ଯେପରି ସେ ମାପଚୁପ ହୋଇ ରହିଛି । ଆସ, ତୁମେ ମୋ' କାନ୍ଧରେ ବସି ତାକୁ ଭାଙ୍ଗି ଆଣ ।

ଶ୍ରୀକୃଷ୍ଣ ତ ଲବଣୀ ଚୋରିବେଳେ କାନ୍ଧ ଉପରେ ଚଢ଼ିବା ଶିଖିଯାଇଥିଲେ; ତେଣୁ ମିତ୍ରର କାନ୍ଧ ଉପରକୁ ଡିଆଁମାରି ଚଢ଼ିଗଲେ । ଭଗବାନ ଶ୍ରୀକୃଷ୍ଣଙ୍କ ହାତ ବାଜିବା ମାତ୍ରେ ବାଉଁଶଟି ଗଣ୍ଠି ଉପରୁ ଭାଙ୍ଗିଗଲା । ଅନ୍ୟ ଜଣେ ବାଳକ ସେଥିରୁ ଶୁଖିଲା ପତ୍ର ବାହାର କରିବା ସଙ୍ଗେ ସଙ୍ଗେ ତାହା ସପ୍ତସ୍ୱର ଯୁକ୍ତ ଏକ ବଂଶୀ ହୋଇଗଲା । ଗୋପାଳ ବାଳକମାନେ ଆଶ୍ଚର୍ଯ୍ୟ ହୋଇ ଏକସଙ୍ଗରେ କହିଲେ—ଭାଇ କହ୍ନେଇ ! ତୁ ବଡ଼

ଭାଗ୍ୟବାନ୍ । କେ ଏ ବଂଶୀ, ଏହାକୁ ବନ୍ଦ କରିବା କି ସଫା କରିବା ଆବଶ୍ୟକ ହେଉ ନାହିଁ । ମନକୁ ବଡ଼ ଥିର ହୋଇ ରହିଥିବା ବଂଶୀ ତୋତେ ମିଳିଗଲା । କେଡ଼େ ସୁନ୍ଦର ହୋଇଛି, ସତେ ଯେପରି ବିଧାତା ତୋ'ର ପାଇଁ ଏହାକୁ ଗଢ଼ିଛି । ଏଥିରେ ଦୁଇବେଳା ଲହୁଣି ମାଖିଲେ ଏହା ଅଧିକ ଚକ୍ ଚକ୍ କରିବ । ମା'ଙ୍କୁ କହି ଏଥିରେ ଘୁଙ୍ଗୁର ଓ ସୁନାର ଗୁପ ଲଗାଇଦେବୁ । ତୁ ତାକୁ ଥରେ ଫୁଙ୍କିଲୁ କିପରି ସ୍ୱର ବାହାରୁଛି ଶୁଣିବା ।

ଶ୍ରୀକୃଷ୍ଣ ତ ପିଲାଦିନରୁ ଟିକିଏ ବଙ୍କା ଥିଲେ ; ତେଣୁ ଲଳିତ ତ୍ରିଭଙ୍ଗରେ ଠିଆ ହୋଇ, କମରକୁ ସାମାନ୍ୟ ବଙ୍କେଇ, ବଂଶୀକୁ ଧରି ଶ୍ରୀକୃଷ୍ଣ ଫୁଙ୍କିବାକୁ ଲାଗିଲେ । ସେହି ବଂଶୀଧ୍ୱନି ଶୁଣି ସମସ୍ତ ବିଶ୍ୱ ସ୍ତବ୍ଧ ହୋଇଗଲା । ଗୋପାଳ ବାଳକମାନେ ଚିତ୍ରପ୍ରତିମା ପରି ଠିଆ ହୋଇ ରହିଲେ । ସେହି ମଧୁର ଧ୍ୱନିରେ ଚତୁର୍ଦ୍ଦିଗ ପୂରିଗଲା । ବୃନ୍ଦାବନର ବୃକ୍ଷ ଲତା ପ୍ରେମାପ୍ଳୁତ ହୋଇପଡ଼ିଲେ । ସମସ୍ତେ ଆତ୍ମବିସ୍ମୃତ ହୋଇଗଲେ । ଶ୍ରୀକୃଷ୍ଣ ଦୁଇ ଓଠକୁ ପକ୍ଷୀର ଥଣ୍ଟ ପରି କରି ବଂଶୀ ବଜାଉଥିଲେ । ଦୁଇ ଓଠର ସଙ୍କୋଚନଦ୍ୱାରା ତାଙ୍କର ଗଣ୍ଡଦେଶ ସଙ୍କୁଚିତ ହୋଇଯାଉଥିଲା ଓ ନେତ୍ରଦ୍ୱୟ ବଙ୍କେଇ ହୋଇ ରହିଥିଲା । କିଛି ସମୟ ପରେ ସେ ବଂଶୀକୁ ଓଠରୁ କାଢ଼ି ହସି ହସି କହିଲେ—ଭାଇ, ମୁଁ ତ ଏଯାଏଁ ବଂଶୀ ବଜାଇବା ଜାଣେ ନାହିଁ । ତୁମେ ସବୁ ଯେପରି ବଜାଉଥିଲ ମୁଁ ତାହାହିଁ ଅନୁକରଣ କରୁଥିଲି । ମୋତେ ବଂଶୀ ବଜାଇବା ଆସିବ ତ ?

ଭଗବାନ୍ ଶ୍ରୀକୃଷ୍ଣଙ୍କର ଏହି କଥା ଶୁଣି ଗୋପାଳବାଳକମାନେ ସଚେତନ ହୋଇଉଠିଲେ । ସେମାନଙ୍କର ତଲ୍ଲୀନତା ଭାଙ୍ଗିଗଲା । ସମସ୍ତେ ଏକସ୍ୱରରେ କହିଲେ— "ଭାଇ, କହ୍ନେଇ ! ତୁ କ'ଣ ମା'ପେଟରୁ ସବୁକଥା ଶିଖି ଜନ୍ମ ହୋଇଛୁ ? ଆମେ ସବୁ ଏତେଦିନ ହେଲା ବଇଁଶୀ ବଜାଉଛୁ ; କିନ୍ତୁ ଆମକୁ ଏପରି ବଜାଇ ଆସୁ ନାହିଁ । ତୁ ବଂଶୀ ବଜାଇବାରେ ଆମକୁ ଆଶ୍ଚର୍ଯ୍ୟାନ୍ୱିତ କରିଦେଇଛୁ ।"

ଅତ୍ୟନ୍ତ ପ୍ରସନ୍ନତା ପ୍ରକାଶ କରି ଆନନ୍ଦରେ ଶ୍ୟାମସୁନ୍ଦର କହିଲେ—"ତା'ହେଲେ ମୋତେ ବଂଶୀ ବଜାଇବା ଆସିଯିବ ।"

ଜନୈକ ବୟସ୍କ ଗୋପକୁମାର କହିଲା—"ଆସିବ କ'ଣ କହୁଛୁ, ଆସିଗଲାଣି । ବଂଶୀ ବଜାଇବାରେ ତୁ ଆଜିଠାରୁ ଗୁରୁ ହେଲୁ । ଆଜିଠାରୁ ଆମେ ତୋତେ ବଂଶୀଧର ନାମ ଦେଲୁ ।"

ଶ୍ରୀକୃଷ୍ଣ ଖୁସି ହୋଇ କହିଲେ—"ତା' ହେଲେ ଚାଲ, ଆଜି ହିଁ ଭୋଜି କରିବା । ବର୍ତ୍ତମାନ ବାଛୁରିଙ୍କୁ ଫେରାଇ ନେଇ ଚାଲ । ବାଛୁରିଙ୍କୁ ଚରାଇବା ତ କାମ ନ ଥିଲା, ଅସଲ ଉଦ୍ଦେଶ୍ୟ ଥିଲା ଖେଳିବା ; ତେଣୁ ଯଥାଶୀଘ୍ର ବାଛୁରିଙ୍କୁ ନେଇ ଫେରିଆସିଲେ । ମା' ଯଶୋଦା ପଚାରିଲେ— ଅରେ ଆଜି ଏତେ ଶୀଘ୍ର କ'ଣ ଫେରିଆସିଲ ।"

ଶ୍ୟାମସୁନ୍ଦର କହିଲେ—"ମା, ମା, ମୁଁ ଆଜି ବଂଶୀ ବଜାଇବା ଶିଖିଗଲି । ମୁଁ ଭଲ ବଜାଉଛି ବୋଲି ପିଲାମାନେ କହୁଛନ୍ତି । ସେଥିପାଇଁ ଆଜି ମୁଁ ସେମାନଙ୍କୁ ଖାଇବାକୁ ଦେବି ।"

ଯଶୋଦା କହିଲେ—"ତୁ କିପରି ବଜାଉଛୁ ମୋତେ ଟିକିଏ ଶୁଣାଇଲୁ । ମୁଁ ଦେଖେ, ତୁ କିପରି ବଂଶୀ ବଜାଉଛୁ । ଆଉ ଗୋପୀମାନେ ଏଠାରେ ଅଛନ୍ତି, ସେମାନେ ବି ଶୁଣିବେ ।" ଶ୍ରୀକୃଷ୍ଣ ନିଃସଙ୍କୋଚରେ ସମସ୍ତଙ୍କ ମଝିରେ ତ୍ରିଭଙ୍ଗ ଠାଣିରେ ଠିଆ ହୋଇ ବଂଶୀ ବଜାଇବା ଆରମ୍ଭ କଲେ । ବଂଶୀଧ୍ୱନି ଶୁଣି ସମସ୍ତଙ୍କ ହୃଦୟରେ ପ୍ରେମର ତରଙ୍ଗ ଖେଳିଗଲା । ସମସ୍ତେ ତନ୍ମୟ ହୋଇ ଭାବସମାଧିରେ ଲୀନ ହୋଇଗଲେ । ଅଶ୍ରୁ, ପୁଲକ ଆଦି ସାତ୍ତ୍ୱିକ ଭାବ ବିକାର ପ୍ରକାଶିତ ହେଲା । ସମସ୍ତଙ୍କୁ ପ୍ରେମାନନ୍ଦରେ ତଲ୍ଲୀନ ହେବାର ଦେଖି ଶ୍ରୀକୃଷ୍ଣ ବଂଶୀ ବଜାଇବା ବନ୍ଦ କରିଦେଲେ ଏବଂ ମା' ଯଶୋଦାଙ୍କୁ ହଲେଇ ହଲେଇ ପଚାରିଲେ—"ମା, ଶୋଇ ପଡ଼ିଲୁ ନା କ'ଣ ? ଏବେ ସମସ୍ତଙ୍କୁ ଖାଇବାକୁ ଦେ । ବିଳମ୍ବ କରନା, ଆମ ସମସ୍ତଙ୍କୁ ଭୀଷଣ ଭୋକ ଲାଗିଲାଣି ।"

ଗଭୀର ନିଦ୍ରାରୁ ଉଠିଲା ପରି ଯଶୋଦା ସଚେତନ ହୋଇ ଶ୍ରୀକୃଷ୍ଣଙ୍କୁ କୋଳରେ ବସେଇ ବାରମ୍ବାର ତାଙ୍କ ମୁଖ ଚୁମ୍ବନ କରିବାକୁ ଲାଗିଲେ, ଆଉ କହିଲେ—"ପୁଅ ! ତୁ ଯୁଗ ଯୁଗ ଧରି ଅମର ହୋଇ ରହିବୁ । ତୁ ଏତେ ସୁନ୍ଦର ବଜାଉଛୁ ଯେ ଆମେ ସବୁ ବିସ୍ମିତ ହୋଇପଡ଼ୁଛୁ । ଏ ବଇଁଶି ତୋତେ କିଏ ଦେଲା ?"

ଶ୍ରୀକୃଷ୍ଣ କହିଲେ—"ମା' ବହୁତ ଖୋଜାଖୋଜି କରି ମୁଁ ଏ ବଂଶୀ ପାଇଛି । ତୁ ଏହାକୁ ସାବଧାନ ହୋଇ ଲୁଚେଇ ରଖିବୁ । ଏହି ଗୋପୀମାନେ ତୋ' ପାଖକୁ ସବୁବେଳେ ଆସୁଛନ୍ତି, ସେମାନେ ବଡ଼ ଚୋରଣୀ । ଗୋବର ମଧ୍ୟ ଚୋରେଇ ନେଉଛନ୍ତି । ମୋ' ବଂଶୀକୁ ଯଦି ସେମାନେ ଚୋରି କରି ନେଇଯିବେ ତେବେ ମୁଁ ବଞ୍ଚିବି ନାହିଁ ।"

ମା' କହିଲେ—"ନା, ନା, କିଏ ଚୋରେଇନେବ ? ମୁଁ ତୋ' ବଇଁଶିକୁ ସିନ୍ଦୁକରେ ରଖିଦେବି । ତୁ ପିଲାମାନଙ୍କୁ ବସେଇଦେ । ମୁଁ ସମସ୍ତଙ୍କୁ ଏକାଠି ଖୁଆଇବି ।" ଏହା କହି ମା' ଖାଦ୍ୟ ଆଣିବା ପାଇଁ ଉଠିଗଲେ । ଯଶୋଦା ସାଙ୍ଗେ ସାଙ୍ଗେ କ୍ଷୀର କରି ଦେଲେ । ଶ୍ୟାମସୁନ୍ଦର ପିଲାମାନଙ୍କ ସାଙ୍ଗରେ ବସିଗଲେ । ଗୋପୀମାନେ ଆନନ୍ଦରେ ପିଲାମାନଙ୍କୁ କ୍ଷୀର ଓ ଅନ୍ୟାନ୍ୟ ମିଷ୍ଟାନ୍ନ ପରଶିଲେ । ପିଲାମାନେ ଖାଇସାରିବା ପରେ ଯଶୋଦା ସମସ୍ତଙ୍କୁ ନୂଆ ଲୁଗା ପିନ୍ଧାଇ ବିଦା କଲେ ।

ମହର୍ଷି ସୂତ କହିଲେ—"ମୁନିଗଣ ! ସେହିଦିନଠାରୁ ଶ୍ୟାମସୁନ୍ଦର ବଂଶୀଧର ନାମରେ ପରିଚିତ ହେଲେ । ଏହାପରେ ଯେତେବେଳେ ଶ୍ରୀକୃଷ୍ଣ ବାଛୁରି ଚରାଇବା ପାଇଁ

ଯାଉଥିଲେ ସେତେବେଳେ ସାଙ୍ଗରେ ବଂଶୀଟି ନେଇଯାଉଥିଲେ ଏବଂ ମଧୁର ସ୍ୱରରେ ବଂଶୀ ବଜାଇ ସମସ୍ତଙ୍କୁ ଅପୂର୍ବ ଆନନ୍ଦ ପ୍ରଦାନ କରୁଥିଲେ ।"

### ଛପ୍ପୟ

ପାଇ ଅପନୀ ବେନୁ ବହୁଁଯି କର କମଲନ ଧାରୀ ।
ବନା ବତାଏ ଲଗେ ବଜାବନ ଶ୍ରୀବନବାରୀ ।
ମୁରଲୀ କୀ ଧୁନ ଭୟେ ଜଡ଼ ଚେତନ ପ୍ରମୁଦିତ ।
ମନକୁଁ ପ୍ରିୟା ରବ ସୁନତ ପ୍ରେଷ୍ଠ ହିୟ ପଙ୍କଜ ବିକସିତ ।।
ଅଧରାମୃତ ନିତ ପ୍ୟାଇକେ, ପାଲ ପୋଷି ମୋଟୀ କରୀ ।
ବୈରନ ବଂଶୀ ବନୀ ଗଈ, ବ୍ରଜବାସିନ କୀ ମତି ହରୀ ।।



## ବୃନ୍ଦାବନରେ ବାଳଲୀଳା

କ୍ୱଚିଦ୍‌ବାଦୟତୋ ବେଣୁଂ କ୍ଷେପଣୈଃ କ୍ଷିପତଃ କ୍ୱଚିତ୍ ।
କ୍ୱଚିତ୍ପାଦୈଃ କିଙ୍କିଣୀଭିଃ କ୍ୱଚିତ୍ କୃତ୍ରିମଗୋବୃଷୈଃ ।।
(ଶ୍ରୀ ଭା ୧୦ ସ୍କ, ୧୧ ଅ, ୩୯ ଶ୍ଳୋକ)

### ଛପ୍ପୟ

ବଛରନ ସଙ୍ଗେ ଘେର ଲକୁଟ ଲେ ମୁରଲୀଧାରୀ ।
ନିତ ପ୍ରତି ବନମହଁ ଜାଇଁ ବଜାଓଁ ବେନୁ ବିହାରୀ ।।
ଗୋପିନମହଁ ଧରଢ଼େଲ ଘୁମାଓଁ ତକକେଁ ମାରେ ।
ଜାଓଁ ମେରେ ହୁର ମୁଦିତ ସବ ଗ୍ୱାଲ ପୁକାରେଂ ।।
ଚରନନ ନୂପୁର ବାଁଧିକେଂ, ନାଚେ ଶ୍ୟେନ ଚଲାଇକେଁ ।
ଗଈଁ ମାଈଁ କର ଫିରେ, ଫିରେଁ ରେତପେ ଜାଇକେଁ ।।

ସମଗ୍ର ପୃଥିବୀର ଯେ କୌଣସି ଦେଶକୁ ଗଲେ ବି ବାପା ଓ ରଙ୍ଗଙ୍କୁ ଛାଡ଼ି ସବୁ ମଣିଷଙ୍କର ସାଧାରଣତଃ ଏକପ୍ରକାର ପ୍ରବୃତ୍ତି ଦେଖାଯାଏ । ପ୍ରାୟ ସବୁ ଦେଶରେ

ବାଳକମାନେ ଏକପ୍ରକାର ଖେଳ ଖେଳୁଥିବାର ଦେଖାଯାଏ । ବାଳକ ହିଁ ଭଗବାନଙ୍କର ଯଥାର୍ଥ ପ୍ରତିନିଧି । ଅସ୍ତ୍ରଶସ୍ତ୍ର ଧରି ଯୁଦ୍ଧ କରୁଥିବା ଭଗବାନ ରକ୍ଷକ, ପାଳକ, ଶାସକ ସବୁକିଛି ହୋଇପାରନ୍ତି । ଦୁଷ୍ଟମାନଙ୍କ କବଳରୁ ରକ୍ଷା କରୁଥିବାରୁ ସେ ଆମର ଶ୍ରଦ୍ଧାର ପାତ୍ର, ବୀର ଓ ବଳବାନ୍ ହୋଇଥିବାରୁ ସେ ଆମର ଆଦରଣୀୟ ; କିନ୍ତୁ ସେ ଆମକୁ ପ୍ରେମାମୃତ ପିଆଇପାରନ୍ତି ନାହିଁ । କାରଣ, ଯାହାକୁ ଆମେ ନିଃସଙ୍କୋଚରେ ନିଜ ଗୁଡ଼ରେ ଗୁପିଧରି ନାହୁଁ ତା' ସହିତ ପ୍ରେମ ସମ୍ପର୍କ ସ୍ଥାପିତ ହୋଇପାରେ ନାହିଁ । ବାଳକମାନଙ୍କର ପ୍ରତ୍ୟେକ ଚେଷ୍ଟାରେ ଓ ପ୍ରତ୍ୟେକ ପ୍ରକାର ଖେଳରେ, ପ୍ରେମର ଅଖଣ୍ଡ ପ୍ରବାହ ପ୍ରବାହିତ ହେଉଥାଏ । ଆମେ ପିଲାମାନଙ୍କୁ ବାଳକ ବୋଲି ଭାବୁଥିଲେ ମଧ୍ୟ ସେମାନଙ୍କୁ ଗୋପାଳ ବୋଲି ଭାବୁନାହିଁ । ବାଳକମାନଙ୍କୁ ଯଦି ଗୋପାଳ ବୋଲି ଗ୍ରହଣ କରେନିଅନ୍ତୁ, ତେବେ ପାଷାଣ ପ୍ରତିମା ପୂଜା କରିବାର ଆବଶ୍ୟକତା ନାହିଁ କି ଜଳ, ସ୍ଥଳ, ଆକାଶ, ପାତାଳ, ପାହାଡ଼ ପର୍ବତରେ ଘୂରି ବୁଲିବାକୁ ପଡ଼ନ୍ତା ନାହିଁ । କାରଣ ବାଳକ ହିଁ ଭଗବାନଙ୍କ ସ୍ୱରୂପ । ଯଦି ଭଗବାନ ସ୍ୱୟଂ ବାଳକ ହୋଇଯାଆନ୍ତି, ତେବେ ବାଳକ ଭଗବାନଙ୍କ ରୂପ ନ ହୋଇ ଭଗବାନ ବାଳକରୂପୀ ହୁଅନ୍ତି । ସୌଭାଗ୍ୟବଶତଃ ଯେ ସେହି ବାଳକ ରୂପଧାରୀ ଭଗବାନଙ୍କ ସାକ୍ଷାତ ଲାଭ କରନ୍ତି ସେମାନେ କୃତ୍ୟକୃତ୍ୟ ହୋଇଯାଆନ୍ତି ।

ମହର୍ଷି ସୂତ କହିଲେ—"ମୁନିଗଣ ! ଗୋପାଳ ବାଳକମାନଙ୍କ ସହିତ ସାଙ୍ଗ ହୋଇ ଶ୍ରୀକୃଷ୍ଣ ଗାଈ ଚରାଇବାରେ ବିଶେଷ ଆନନ୍ଦିତ ହେଉଥିଲେ । ଶ୍ରୀକୃଷ୍ଣ ବଂଶୀ ବଜାଉଥିଲେ । ମୋହନ କୃଷ୍ଣଙ୍କର ମୁରଲୀ ଧ୍ୱନି ଶୁଣି ସମସ୍ତେ ମୁଗ୍ଧ ହୋଇପଡ଼ୁଥିଲେ । ଶ୍ରୀକୃଷ୍ଣ ଯେଉଁଠି ବଂଶୀ ବଜାଉଥିଲେ ବାଛୁରୀ ସବୁ ତାଙ୍କ ଆଖପାଖକୁ ଆସି କାନ ଠିଆ କରି ଧୀରସ୍ଥିର ଭାବେ ମନ୍ତ୍ରମୁଗ୍ଧ ହେଲା ପରି ସେହି ଧ୍ୱନି ଶୁଣୁଥିଲେ । ବାଳକ-ମାନେ ବାଛୁରୀଙ୍କୁ ଛାଡ଼ି ଖେଳରେ ମାତିଯାଉଥିଲେ । ବାଛୁରୀ ସବୁ କଅଁଳ ଘାସ ଖାଉ ଖାଉ ଦୂରକୁ ଚାଲିଗଲେ ଶ୍ରୀକୃଷ୍ଣ ବଂଶୀ ବଜାଉଥିଲେ ଏବଂ ବଂଶୀ ଧ୍ୱନି ଶୁଣିବା ମାତ୍ରେ ବାଛୁରୀଗୁଡ଼ିକ ଲାଙ୍ଗୁଡ଼ ଟେକି ପଳାଇ ଆସୁଥିଲେ । ଗୋପାଳ ବାଳକମାନଙ୍କ ପାଖରେ ଏକ ସୁବିଧା ଉପାୟ ଯୁଟିଗଲା । ଯାହାର ବାଛୁରୀ ଦୂରକୁ ଚାଲିଯାଉଥିଲା ସେ କହ୍ନାଇ ପାଖକୁ ଆସି କହୁଥିଲା—ଭାଇ ! ଟିକିଏ ବଇଁଶୀ ବଜାଇଲୁ । ଦେଖ, ତୋ'ର ବଂଶୀର ସ୍ୱର ଶୁଣି ବାଛୁରୀ ଯେଉଁଠି ଥିବେ ସେଠାରୁ ଦୌଡ଼ି ଦୌଡ଼ି ପଳାଇ ଆସିବେ । ଅନୁରୋଧ ରକ୍ଷି ଶ୍ୟାମସୁନ୍ଦର ବଂଶୀ ବଜାନ୍ତି ଏବଂ ବାଛୁରୀ ସବୁ ତାଙ୍କରି ପାଖକୁ ଆସି ଏକାଠି ହୋଇଯାନ୍ତି । ବଂଶୀ ବନ୍ଦ କରିଦେବାମାତ୍ରେ ସେମାନେ ଅନ୍ୟମନସ୍କ ହୋଇ ଘାସ ଚରିବାରେ ଲାଗିଯାଆନ୍ତି । ବଂଶୀ ଧ୍ୱନିରେ ଏପରି ମୋହନଶକ୍ତି ଥିଲା ଯେ ତାହା ଶୁଣିବା-ମାତ୍ରେ ପଶୁ, ପକ୍ଷୀ, ସମସ୍ତେ ଆନନ୍ଦବିଭୋର ଓ ଆତ୍ମବିସ୍ମୃତ ହୋଇପଡ଼ୁଥିଲେ ।"

ଶ୍ରୀକୃଷ୍ଣ ଗୋପାଳ ବାଳକମାନଙ୍କ ସହିତ ମିଶି ନାନାପ୍ରକାର ବାଲଲୀଳା କରିବାକୁ ଲାଗିଲେ । ଛଣିଗଛକୁ କାନ୍ଧରେ ପୋତିଦେଉଥିଲେ । ଯେତେବେଳେ ସେ ପଚଯାଉଥିଲେ ସେତେବେଳେ ତା'ର ଚୋପା ବାହାର କରି ସେଥିରେ ଦଉଡ଼ି ବଳୁଥିଲେ ଏବଂ ସେଥିରେ ଛକକରି ଢେଲା ବାନ୍ଧୁଥିଲେ । ଦଉଡ଼ିର ଗୋଟିଏ ମୁଣ୍ଡକୁ ଧରି ଘୂରାଇ ଘୂରାଇ ଛାଡ଼ି ଦେଉଥିଲେ । ଢେଲାଗୁଡ଼ିକ ବିଚିତ୍ର ଶବ୍ଦ କରି ବହୁତ ଦୂରରେ ଯାଇ ପଡ଼ୁଥିଲା । ଘଣ୍ଟା ଘଣ୍ଟା ଧରି ଗୋପାଳ ବାଳକମାନେ ଏହି ଖେଳ ଖେଳୁଥିଲେ, କାହାର ଢେଲା କେତେଦୂର ଯାଉଛି ତାହା ଆଗ୍ରହର ସହିତ ସମସ୍ତେ ଲକ୍ଷ୍ୟ କରୁଥିଲେ । କାହାର ଢେଲା ପାର୍ଶ୍ୱକରି ଯାଇ ଯମୁନାର ଆରପାଖରେ ପଡ଼ୁଥିଲା । କେହି କହୁଥିଲା, ମୋ' ଢେଲା ସମସ୍ତଙ୍କ ଆଗରେ ଯାଇପଡ଼ିବ । ଅନ୍ୟ ଜଣେ କହୁଥିଲା—ତୋର ନୁହେଁ ମୋ' ଢେଲା ସମସ୍ତଙ୍କ ଆଗରେ ଯାଇପଡ଼ିବ । ଯଦି କାହାର ଢେଲା ପଛରେ ପଡ଼ିଯାଉଥିଲା, ତାକୁ ଅନ୍ୟମାନେ ଉପହାସ କରି କହୁଥିଲେ । ସେ କହୁଥିଲା—ଆରେ ମୁଁ ପୂରା ବଳ ଲଗାଇନାହିଁ । ଏବେ ଯେଉଁଠି ପକାଉଛି ତାହା ଦେଖ । ଅନ୍ୟମାନେ କହୁଥିଲେ, ଆରେ ଦଉଡ଼ିର ସାହାଯ୍ୟ ନ ନେଇ ଖାଲି ହାତରେ ଫିଙ୍ଗ, କାହାର କେତେ ଦୂର ଯାଉଛି ଦେଖିବା । ଏହିପରି ଖେଳ ଲାଗି ରହୁଥିଲା ।

କେବେ କେବେ ଗୋପାଳବାଳକମାନେ କହନ୍ତି—"ଭାଇ କହ୍ନେଇ ! ତୁ ଭଲ ନାଚୁ ବୋଲି ଆମେ ଶୁଣିଛୁ । ଟିକିଏ ନାଚିଲୁ ଦେଖିବା ।" ପିଲାମାନଙ୍କ ଆଗ୍ରହ ଟାଳି ନ ପାରି ଶ୍ରୀକୃଷ୍ଣ ନାଚନ୍ତି । କୌଣସି ବାଳକକୁ ଡାକି କହନ୍ତି ଆ ଚକାଭଉଁରି ଖେଳିବା । ସମସ୍ତେ ମିଶି ଚକାଭଉଁରି ଖେଳନ୍ତି ଏବଂ ମୁଣ୍ଡ ଘୂରାଇ ଦେଲେ ପଡ଼ିଯାଆନ୍ତି । ଏହାଦେଖି ଅନ୍ୟମାନେ ହସି ହସି ଗଡ଼ିଯାଆନ୍ତି । ପିଲାମାନଙ୍କୁ ନେଇ ଶ୍ରୀକୃଷ୍ଣ ଷଣ୍ଢ, ଗାଈ, ବାଛୁରି ଖେଳ ଖେଳନ୍ତି । କେତେକ ବାଳକ ଷଣ୍ଢ, କେତେକ ଗାଈ ଓ କେତେକ ବାଛୁରି ହୁଅନ୍ତି । ପରସ୍ପର ମଧ୍ୟରେ ଷଣ୍ଢ ଲଢ଼େଇ କଲାପରି ଲଢ଼େଇ କରନ୍ତି ଏବଂ ହୁଙ୍କାର ମାରନ୍ତି । ଶ୍ରୀକୃଷ୍ଣ କହନ୍ତି, କିଏ ସବୁଠୁ ବଡ଼ ଜୋର୍‌ରେ ଗର୍ଜନ କରୁଛି ଦେଖିବା । ଶ୍ରୀକୃଷ୍ଣଙ୍କ କଥା ଶୁଣିବାମାତ୍ରେ ସମସ୍ତେ ପାରୁପର୍ଯ୍ୟନ୍ତ ଗର୍ଜନ କରନ୍ତି । ପିଲାମାନଙ୍କ ଗର୍ଜନ ଶୁଣି ବେଳେ ବେଳେ ବୟସ୍କ ଗୋପାଳମାନେ କ'ଣ ହେଲା ବୋଲି ବୁଝିବାକୁ ଦୌଡ଼ି ଆସନ୍ତି ଏବଂ ପିଲାମାନେ ଖେଳୁ ଥିବାର ଦେଖି ସେମାନଙ୍କ ଆତୁରି ଉଡ଼ିଯାଏ । କେବେ କେବେ ଶ୍ରୀକୃଷ୍ଣଙ୍କ କହିବା ଅନୁସାରେ ପିଲାମାନେ ନାନାପ୍ରକାର ପଶୁପକ୍ଷୀଙ୍କ ଶବ୍ଦ କରନ୍ତି, ମୟୂର ନାଚିଲା ପରି ନାଚନ୍ତି, ସାପ ପରି ଚାଲନ୍ତି ଓ ଗର୍ଜନ କରନ୍ତି ତ ବିରାଡ଼ି, କୁକୁର ପ୍ରଭୃତିଙ୍କ ପରି ଶବ୍ଦ କରନ୍ତି । ଗୋପାଳ ବାଳକମାନଙ୍କ ସହିତ ମିଶି ଶ୍ରୀକୃଷ୍ଣ ମଧ୍ୟ ସାଧାରଣ ବାଳକମାନଙ୍କ ପରି ନାନାପ୍ରକାର ଖେଳ ଖେଳନ୍ତି ।

ମହର୍ଷି ସୂତ କହିଲେ—"ମୁନିଗଣ ! ଭଗବାନ ଏହିପରି ବୃନ୍ଦାବନର ବନଭୂମିରେ ବାଲ୍ୟରେ ଖେଳୁଥିବା ସମୟରେ ଏକ ଅସୁର ଗୁପ୍ତବେଶରେ ଆସି ସେଠାରେ ପହଞ୍ଚିଲା । ଅସୁରମାନେ ତ ମାୟାବୀ । ସେମାନେ ଯେତେବେଳେ ଯେଉଁରୂପ ହେବାପାଇଁ ଇଚ୍ଛା କରନ୍ତି ସେତେବେଳେ ସେହି ରୂପ ଧାରଣ କରନ୍ତି । ସେହି ଦୁଷ୍ଟ ଅସୁର ମଧ୍ୟ ବାଛୁରି ରୂପ ଧରି ଭଗବାନଙ୍କ ପାଖରେ ଆସି ଉପସ୍ଥିତ ହେଲା । ସେହି ଅସୁରର ବୃତ୍ତାନ୍ତ ମୁଁ କହୁଛି, ଆପଣମାନେ ମନଦେଇ ଶୁଣନ୍ତୁ ।"

### ଛପ୍ପୟ

ଗ୍ୱାଲନ ଗାୟ ବନାୟ ସାଁଢ଼ସମ ସ୍ୱୟଂ ରମ୍ଭାମେଁ ।<br>
ବନେ ବାଲ କଛୁ ଗ୍ୱାଲ ସାଁଢ଼ ଢ଼ିଁଗ ଗାଇନ୍ ଜମେଁ ।।<br>
କବହୁଁ ହ୍ୱୈ ବନି ସାଁଢ଼ ପରସ୍ପର ଟକ୍କର ମାରେଁ ।<br>
କବହୁଁ ଜିତେ ଶ୍ୟାମ କବହୁଁ ବଳଦାଉ ହାରେଁ ।।<br>
ସାରସ ମୋର ଚକୋର ସମ, ବୋଲୀ ବୋଲେ ହଁସି ପରେଁ ।<br>
ଯୋ ପ୍ରାକୃତ ଶିଶୁ ସରସ ହରି, ବାଲ ସୁଲଭ କ୍ରୀଡ଼ା କରେଁ ।।



## ବତ୍ସାସୁର ଉଦ୍ଧାର

କଦାଚିଦ୍ ଯମୁନାତୀରେ ବତ୍ସାଂଶ୍ଚାରୟତୋଃ ସ୍ୱକୈଃ ।<br>
ବୟସ୍ୟୈଃ କୃଷ୍ଣବଲୟୋର୍ଜିଘାଂସୁର୍ଦୈତ୍ୟ ଆଗମତ୍ ।।

(ଶ୍ରୀ ଭା ୧୦ ସ୍କ, ୧୧ ଅ, ୪୧ ଶ୍ଳୋକ)

### ଛପ୍ପୟ

ବନମହଁ ବାଳକ ସହିତ କରେଁ ହରି ହଲଧର ଖେଲା ।<br>
ଆୟୋ ତବ ଇ ଦୁଷ୍ଟ ତହାଁ ଇକ ଦୈତ୍ୟ ଜରୈଲା ।।<br>
ବଛକେଁ ବଛରା ଜାଇ ମିଲ୍ୟୋ ହରିକେ ବଛରନମହଁ ।<br>
ସମୁଝିଁ ଗୟୋ ହରି ବଳହୁଁ ବତାୟୋ ଖଳ ସୈନନ ମହଁ ।।<br>
ମତ କଛୁ ଜାନତ ନାହିଁ କୋ, ଐସେ ବେରେ ବନ ଗୟୋ ।<br>
ଝଟପଟ ଇତଉତ ବାଲକନ୍, ଚୁପକେ ଖଳ ଢିଁ ସଟି ଗୟୋ ।।

ସବୁବେଳେ ଖାଲି ମିଠା ଖାଇଲେ ମିଠା ପ୍ରତି ମନରେ ବିରକ୍ତି ଆସିଯାଏ ; କିନ୍ତୁ ଯେଉଁମାନେ ବିଶୁଦ୍ଧ ମଧୁର ରସର ଉପାସକ ସେମାନଙ୍କ କଥା ଅଲଗା । ସେମାନଙ୍କର ମାର୍ଗ ଅଲଗା । ସାଧାରଣତଃ ମଧୁର ସମସ୍ତଙ୍କୁ ଭଲଲାଗେ; କିନ୍ତୁ ମଝିରେ ମଝିରେ ଟିକିଏ ମଧୁର ସ୍ୱାଦ ରହିଲେ ମଧୁରର ସ୍ୱାଦ ଅଧିକ ବଢ଼ିଯାଏ । ସେହିପରି ଲୀଳାରେ ଯେପରି ଅନୁକୂଳ ପାତ୍ରର ଆବଶ୍ୟକତା ଅଛି ସେହିପରି ପ୍ରତିକୂଳ ପାତ୍ରର ମଧ୍ୟ ଆବଶ୍ୟକତା ରହିଛି । ଯଦି ପ୍ରତିକୂଳ ପାତ୍ର ନ ରହିବେ ତେବେ ଲୀଳା ସର୍ବାଙ୍ଗସୁନ୍ଦର ହେବ ନାହିଁ । ରାବଣ ବିନା ରାମଙ୍କର ଉତ୍କର୍ଷତା ପ୍ରତିପାଦନ କରାଯାଇପାରେ ନାହିଁ । ସାଧୁସନ୍ଥଙ୍କ ପଛରେ ଦୁଷ୍ଟଲୋକ ନ ଲାଗିଲେ ସାଧୁମାନଙ୍କ ମହତ୍ତ୍ୱ ବୁଝାପଡ଼େ ନାହିଁ । ବାଦ୍ୟ ଉପରେ ଆଘାତ ନ କଲେ ସେଥିରୁ ମଧୁର ଧ୍ୱନି କିପରି ବାହାରିବ ? ଭଗବାନଙ୍କ ଲୀଳାରେ ଅସୁରମାନଙ୍କର ଉପଦ୍ରବ ନ ରହିଲେ ଲୀଳା ବିସ୍ତାର କିପରି ହେବ ? ଅସୁରମାନେ ବି ତ ଭଗବାନଙ୍କ ଭକ୍ତ । ଏତିକି କେବଳ ପାର୍ଥକ୍ୟ ଯେ ଭଗବଦ୍ ଭକ୍ତ ପ୍ରେମଭାବରେ ଭଗବାନଙ୍କୁ ଉପାସନା କଲାବେଳେ ଅସୁରମାନେ ଦ୍ୱେଷଭାବ ପୋଷଣ କରନ୍ତି । ଭଗବାନଙ୍କୁ ଯେଉଁଭାବରେ ଭଜନ କଲେ ବି ଭଜନ କରୁଥିବା ବ୍ୟକ୍ତି ଅବଶ୍ୟ ଉଦ୍ଧାର ଲାଭକରେ ।

ମହର୍ଷି ସୂତ କହିଲେ—"ମୁନିଗଣ ! ବୃନ୍ଦାବନର ପବିତ୍ର ଭୂମିରେ ଗୋପାଳ ବାଳକମାନଙ୍କ ସହିତ ଶ୍ରୀକୃଷ୍ଣ ନାନାପ୍ରକାର ଲୀଳା କରୁଥିବାବେଳେ ମଥୁରାର ରାଜା କଂସ ନାନା ଚିନ୍ତାରେ ବ୍ୟାକୁଳ ହେଉଥିଲା । ସେ ଭାବୁଥିଲା—ମୋର ଶତ୍ରୁ ସତରେ କ'ଣ ବ୍ରଜରେ ଜନ୍ମଗ୍ରହଣ କରିଛି ? କେତେକ କହୁଛନ୍ତି, ମୋତେ ମାରିବା ବାଲା ବ୍ରଜର ନନ୍ଦଘରେ ଜନ୍ମ ହୋଇଛି । କଂସ ନିଜେ ପୂର୍ବଜନ୍ମରେ ଦୈତ୍ୟ ଥିଲା ; ତେଣୁ ସୃଷ୍ଟିରୂପ ଧାରଣ କରି ଅସୁରମାନେ ତା'ପାଖକୁ ଯିବା ଆସିବା କରୁଥିଲେ । ଦିନେ ଏକ ଦୈତ୍ୟ ମନୁଷ୍ୟରୂପରେ ଆସି କଂସକୁ ପଚାରିଲା—"ରାଜନ୍ ! ଆପଣ ସବୁବେଳେ କ'ଣ ଏତେ ଚିନ୍ତା କରୁଛନ୍ତି ?"

କଂସ କହିଲା—"ଭାଇ ! ମୁଁ ପୂର୍ବଜନ୍ମରେ ଅସୁର ଥିଲି । ମୋର ନାମ ଥିଲା କାଳନେମି । ବିଷ୍ଣୁ ମୋତେ ସଂହାର କରିଥିଲେ । ଏବେ ଶୁଣୁଛି, ମୋତେ ମାରିବା ପାଇଁ ଭଗବାନ୍ ବିଷ୍ଣୁ ବ୍ରଜପୁରରେ ଜନ୍ମ ହୋଇଛନ୍ତି ।"

ଆଗନ୍ତୁକ ଅସୁର କହିଲା—"ମୁଁ ବି ଶୁଣିଛି । ସେ ବ୍ରଜପୁରର ନନ୍ଦଘରେ ଜନ୍ମ ହୋଇଛନ୍ତି । ଠିକ୍ ଅଛି, ମୁଁ ସେଠାକୁ ଯିବି । ମୁଁ ଆସୁରୀ ମାୟାବିଦ୍ୟାର କିଛି କପଟ କୌଶଳରେ ତାଙ୍କୁ ମାରିଦେଇ ତୁମ ପାଖକୁ ଫେରିଆସିବି ।"

କଂସ କହିଲା—"ବନ୍ଧୁବର ! ଯଦି ତୁମେ ମୋର ଏତିକି କାମ କରି ଦେଇପାରିବ ତେବେ ସାରାଜୀବନ ମୁଁ ତୁମର ଋଣୀ ହୋଇ ରହିବି ।"

ଅସୁର କହିଲା—"ଆପଣ ଚିନ୍ତା କରନ୍ତୁ ନାହିଁ, ମୁଁ ଏବେ ଯାଉଛି । ଏହା କହି ଅସୁର ସେଠାରୁ ଚାଲିଗଲା । ବୃନ୍ଦାବନର ବନଭୂମିରେ ପହଞ୍ଚି ଅସୁର ଦେଖିଲା ଗୋପବାଳକ-

ମାନଙ୍କ ସହିତ ଶ୍ରୀକୃଷ୍ଣ ତନ୍ମୟ ହୋଇ ଖେଳୁଛନ୍ତି । ଭଗବାନଙ୍କର ତେଜ, ଓଜ, ରୂପଲାବଣ୍ୟ ଏପରି ଅନୁପମ ଯେ ତାହା ଯେତେ ଲୁଚାଇଲେ ମଧ୍ୟ ଲୁଚିପାରିବ ନାହିଁ । ଭଗବାନଙ୍କୁ ଦେଖିବା ମାତ୍ରେ ଅସୁର ଜାଣିଗଲା ଯେ ଏ ନିଶ୍ଚୟ କୃଷ୍ଣ । କିପରି ତାଙ୍କୁ ମାରିବି ? ସମ୍ମୁଖ ଯୁଦ୍ଧରେ ତାଙ୍କୁ ମୁଁ କେବେହେଲେ ହରାଇପାରିବି ନାହିଁ । ମୋତେ ନିଶ୍ଚୟ ମାୟାର ଆଶ୍ରୟ ନେବାକୁ ପଡ଼ିବ । ତେବେ କି ମାୟା ରଚନା କରିବି ? ଏହିକଥା ବହୁତ ସମୟ ଧରି ଚିନ୍ତା କରିବା ପରେ ଶେଷରେ ସ୍ଥିର କଲା ଯେ, ଶ୍ରୀକୃଷ୍ଣଙ୍କର ଲକ୍ଷ ଲକ୍ଷ ବାଛୁରି ଅଛନ୍ତି । ମୁଁ ବି ବାଛୁରି ରୂପ ଧରି ବାଛୁରିମାନଙ୍କ ସହିତ ମିଶିଯିବି । ଶ୍ରୀକୃଷ୍ଣଙ୍କୁ ଯେତେବେଳେ ଏକା ଏକା ପାଇବି ସେତେବେଳେ ମାରି ପକାଇବି । ଏହାଭାବି ଅସୁର ବାଛୁରି ରୂପ ଧରି ବାଛୁରିମାନଙ୍କ ମଧ୍ୟରେ ମିଶିଗଲା । ନୂଆ ବାଛୁରୀକୁ ଦେଖି ଅନ୍ୟ ବାଛୁରିମାନେ ଡରିକରିବାକୁ ଲାଗିଲେ । ଯେ କୌଣସି ରୂପ ଧାରଣ କଲେ ବି ଅସୁରର ଆସୁରି ପ୍ରକୃତି ଗଲା ନାହିଁ । ବାଛୁରିମାନଙ୍କ ମଧ୍ୟରେ ଗୋଲମାଳ ହେବାର ଦେଖି ଶ୍ରୀକୃଷ୍ଣ ସେମାନଙ୍କ ଆଡ଼କୁ ଚାହିଁଲେ । ସେ ଦେଖିବାମାତ୍ରେ ଜାଣିପାରିଲେ ଯେ, ଅସୁର ବାଛୁରି ରୂପରେ ଆସି ପହଞ୍ଚିଛି । ଶ୍ରୀକୃଷ୍ଣ ଚିନ୍ତାକଲେ—ଅସୁର ଭାବିଛି ବାଛୁରି ରୂପରେ ଆସି ମୋତେ ମାରିବ । ବାଛୁରି ଭାବି ମୁଁ ତାକୁ ମାରିବି ନାହିଁ ; କିନ୍ତୁ ବେଶ ଦେଖି ମୁଁ ମୋହଗ୍ରସ୍ତ ହେବାର ବ୍ୟକ୍ତି ନୁହେଁ । ଦୁଷ୍ଟ ଅସୁର ଯେ କୌଣସି ବେଶରେ ଆସିଲେ ବି ମୁଁ ନିଶ୍ଚୟ ତାକୁ ସଂହାର କରିବି । ଦୁଷ୍ଟ ବିନାଶନ ଓ ସନ୍ଥ ପରିପାଳନ ପାଇଁ ମୁଁ ଅବତାର ରୂପରେ ଅବତୀର୍ଣ୍ଣ ହୋଇଛି । ଏହିପରି ଭାବି ଶ୍ରୀକୃଷ୍ଣ ନେତ୍ର ସଙ୍କେତରେ ବଳଦେବଙ୍କୁ ଅସୁରର ରୂପ ଦେଖାଇ ଦେଲେ । ବଳଦେବ ଦେଖିବାମାତ୍ରେ ଜାଣିଗଲେ ଯେ ଏ ଏକ ଦୁଷ୍ଟବୁଦ୍ଧି ଅସୁର ।

ଭଗବାନ୍ ଗୋପାଳବାଳକମାନଙ୍କୁ କହିଲେ—"ଦେଖ, ଭାଇମାନେ ! ବାଛୁରି-ଗୁଡ଼ାକ ବଡ଼ ଉତ୍ପାତ କରୁଛନ୍ତି । ସେମାନଙ୍କୁ ଘେରି କରି ଏଠାକୁ ନେଇଆସ ।"

ଏହାଶୁଣି ଅନେକ ଗୋପବାଳକ ଚାଲିଗଲେ ବାଛୁରିମାନଙ୍କୁ ଗୋଡ଼ାଇ ଆଣିବାକୁ । ସବୁ ବାଛୁରି ଆସିଗଲେ ; କିନ୍ତୁ ବାଛୁରି ରୂପଧାରୀ ଅସୁର ଲାଙ୍ଗୁଡ଼ ଟେକି ଏଣେ ତେଣେ ଦୌଡ଼ିବାକୁ ଲାଗିଲା ଏବଂ ଅନ୍ୟ ବାଛୁରିଙ୍କୁ ମାରିବାରେ ଲାଗିଗଲା ।

ଗୋପାଳବାଳକମାନେ କହିଲେ—"ଭାଇ କହ୍ନେଇ ! ଗୋଟିଏ ବାଛୁରି ପାଗଳା ହୋଇଗଲାଣି । ସେ ଆମର ଆୟତ୍ତରେ ଆଉ ରହୁ ନାହିଁ ।"

ଶ୍ରୀକୃଷ୍ଣ କହିଲେ—"ବ୍ୟସ୍ତ ହୁଅ ନାହିଁ । ପାଗଳକୁ ଚିକିତ୍ସା କରିବା ମୋତେ ଜଣା ଅଛି । ଏହିପରି ଉପଦ୍ରବ କରୁଥିବା ଜୀବକୁ ଆୟତ୍ତ କରିବାର ପାଠ ମୁଁ ଜାଣେ । ମୁଁ ଏକା ଯାଇ ତାକୁ ବଶ କରୁଛି । ଏହାକହି ଭଗବାନ୍ ଏକା ଏକା ତା' ପାଖକୁ ଗଲେ । ହାତରେ ଥିବା ଛୋଟ ବାଡ଼ିଟି ମଧ୍ୟ ସେ ଛାଡ଼ିଗଲେ । ଧୀରେ ଧୀରେ କିଛି ନ ଜାଣିଲା ପରି

ତା' ପାଖକୁ ଗଲେ । ବତ୍ସାସୁର ମଧ୍ୟ କେତେବେଳେ ଶ୍ରୀକୃଷ୍ଣଙ୍କୁ ଏକୁଟିଆ ପାଇବ ସେହି ସୁଯୋଗ ଅପେକ୍ଷାରେ ଥାଏ । ତା'ର ଅଭିଳାଷ ପୂରଣ ପାଇଁ ଭଗବାନ ଏକୁଟିଆ ଯାଇ ତା' ପାଖରେ ପହଞ୍ଚିଲେ । ଶ୍ରୀକୃଷ୍ଣଙ୍କୁ ଏକା ପାଇ ବତ୍ସାସୁର ଲାଙ୍ଗୁଡ଼ ଟେକ ତାଙ୍କ ଗୁଡରେ ଏକ ନାତ ମାରିଲା । ଭଗବାନ ଆଗରୁ ସାବଧାନ ଥିଲେ ; ତେଣୁ ସେ ନାତ ମାରିବା ସଙ୍ଗେ ସଙ୍ଗେ ଭଗବାନ ତା'ର ଲାଙ୍ଗୁଡ଼କୁ ଧରିପକାଇଲେ ଏବଂ ତା' ସହିତ ପଛ ଦୁଇ ଗୋଡ଼କୁ ମଧ୍ୟ ଜୋର୍‌କରି ଜାବୁଡ଼ି ଧରିଲେ । ତା'ପରେ ତାକୁ ଚକପରି ବୁଲାଇବାକୁ ଲାଗିଲେ । ଘୂରାଇବା ମଧ୍ୟରେ ବତ୍ସାସୁରର ଆଖି ପଦାକୁ ବାହାରି ଆସିଲା । ଶେଷରେ ସେ ବାଛୁରି ରୂପ ଛାଡ଼ି ଅସୁରରୂପ ଧାରଣ କଲା । ଭଗବାନ ତାକୁ ଘୂରେଇ ଘୂରେଇ ଏକ ବଡ଼ କଇଥ ଗଛରେ ପିଟିଦେଲେ । ଗଛରେ ପିଟିହେବାମାତ୍ରେ ଅସୁରର ପ୍ରାଣବାୟୁ ଉଡ଼ିଗଲା । କଇଥ ଗଛରୁ ଗୁଡ଼ାଏ ଫଳ ତଳେ ଝଡ଼ିପଡ଼ିଲା । ଆଉ କେତେକ ଗଛ ମଧ୍ୟ ଅସୁରର ଦେହବାଜିବାରୁ ତଳେ ପଡ଼ିଗଲେ । ଅସୁର ମୃତ୍ୟୁବରଣ କରିବାରୁ ଦେବଗଣ ପୁଷ୍ପବୃଷ୍ଟି କଲେ । ଭଗବାନଙ୍କ ହାତରେ ମରିବାରୁ ଅସୁର ମଧ୍ୟ ମୁକ୍ତିଲାଭ କଲା । ଏହା ଦେଖି ଗୋପାଳବାଳକମାନେ ଆଶ୍ଚର୍ଯ୍ୟାନ୍ୱିତ ହୋଇ କହିଲେ—"ଭାଇ କହ୍ନେଇ ! ଏଟା ତ ବାଛୁରି ନୁହେଁ ଏକ ଅସୁର ଥିଲା । ତୁ ତାକୁ ଜାଣିପାରିଲୁ କିପରି ?"

ଭଗବାନ ହସି ହସି କହିଲେ—"ଆରେ ତୁମେ ସବୁ ଜାଣି ପାରିଲ ନାହିଁ ସେ ବାଛୁରି ଆମର କି ନୁହେଁ ଅଥବା କୌଣସି ଅସୁର । ଯେ ନିଜର ବାଛୁରିକୁ ଚିହ୍ନିପାରେ ନାହିଁ ତାକୁ କ'ଣ ଗୋପାଳ କୁହାଯିବ ? ଗୋପାଳ ନିଜର ପ୍ରତ୍ୟେକ ଗାଈ, ବାଛୁରିକୁ ସହଜରେ ଚିହ୍ନିପାରେ ।"

ଗୋପାଳ ବାଳକମାନେ କହିଲେ—"ଧନ୍ୟ ଭାଇ, ତୋତେ ଶତ ଶତ ଧନ୍ୟବାଦ । ଆଜିଠାରୁ ତୁ ଆମ ମଧ୍ୟରେ ଶ୍ରେଷ୍ଠ ସ୍ଥାନ ଲାଭକଲୁ । ଆମେ ତ ବାଛୁରି ଓ ଅସୁରକୁ ଚିହ୍ନିପାରୁ ନାହୁଁ । ଆଜିଠାରୁ ତୋତେ ସବୁକଥା ପଚାରି କରିବୁ । ତୁ ଆମର ଗୁରୁ ହେଲୁ ।"

ମହର୍ଷି ସୂତ କହିଲେ—"ମୁନିଗଣ ! ଏହା କହି ସମସ୍ତ ଗୋପାଳବାଳକ ଉତ୍କଣ୍ଠାର ସହିତ ଭଗବାନଙ୍କୁ ବାରମ୍ବାର ଆଲିଙ୍ଗନ କଲେ । କିଏ ଦୌଡ଼ିଯାଇ ଫୁଲ ତୋଳି ଆଣିଲା ତ କିଏ କର୍ପୂରଲଥା ପତ୍ର ନେଇଆସିଲା । କେତେକ ଗୋପବାଳକ ତୁଳସୀପତ୍ର ତୋଳିଆଣିଲେ । ସମସ୍ତେ ମିଶି ଆଜାନୁଲମ୍ବିତ ବନମାଳା ତିଆରି କରି ଶ୍ରୀକୃଷ୍ଣଙ୍କୁ ପିନ୍ଧାଇଲେ । କେତେକ ଚନ୍ଦନକାଠ ଆଣି ପଥରରେ ଘଷି ଚନ୍ଦନ ବାହାର କଲେ ଓ ଶ୍ରୀକୃଷ୍ଣଙ୍କ ଦେହରେ ଲେପିଲେ । କେତେକ ବଣରୁ ଏକପ୍ରକାର ଘାସ ଆଣି ତାକୁ ଧୂପ ପରିବର୍ତ୍ତେ ଜଳାଇଲେ । ଏହିପରି ଗନ୍ଧ, ପୁଷ୍ପ, ଧୂପ, ଦୀପ ଓ ମାଳା ଦେଇ ଗୋପାଳ-

ବାଳକମାନେ ଶ୍ରୀକୃଷ୍ଣଙ୍କୁ ଯେନତେନ ପ୍ରକାରେଣ ପୂଜା କଲେ । ସମସ୍ତେ ତାଙ୍କର ଜୟଗାନ କରି ପୁଷ୍ପବୃଷ୍ଟି କଲେ ଏବଂ ବଣର ଫଳମୂଳ ଆଣି ଖୁଆଇଲେ ।”

ଗୋପ ବାଳକମାନଙ୍କ ସହିତ ଭଗବାନ ସେହି ଫଳମୂଳକୁ ଅତି ଆନନ୍ଦରେ ଖାଇଲେ । ସମସ୍ତଙ୍କ ପ୍ରତି ସ୍ନେହ ଓ ଶ୍ରଦ୍ଧା ଜଣାଇ ବାଛୁରୀଙ୍କୁ ନେଇ ବୃନ୍ଦାବନ ଅଭିମୁଖେ ପ୍ରତ୍ୟାବର୍ତ୍ତନ କଲେ । ଶ୍ରୀକୃଷ୍ଣଙ୍କର ଗୋଷ୍ଠ ପ୍ରତ୍ୟାବର୍ତ୍ତନ ସମୟର ଶୋଭା ଅବର୍ଣ୍ଣନୀୟ । ଗୋପାଳ ବାଳକମାନେ ତାଙ୍କୁ ନାନାବିଧ ପତ୍ରପୁଷ୍ପରେ ସଜାଇଥିଲେ । ମସ୍ତକରେ ମୟୂର ଚନ୍ଦ୍ରିକା ଶୋଭା ପାଉଥିଲା । ମଧୁର ସ୍ୱରରେ ବଂଶୀ ବଜାଇ ଶ୍ରୀକୃଷ୍ଣ ସମସ୍ତଙ୍କ ମନକୁ ନିଜ ଆଡ଼କୁ ଟାଣି ନେଉଥିଲେ ! ଶେଷରେ ସମସ୍ତେ ଆସି ଗୋଷ୍ଠରେ ପହଞ୍ଚିଲେ । ସେଠାରେ ଗୋପାଙ୍ଗନାମାନଙ୍କ ସହିତ ଯଶୋଦା ଓ ରୋହିଣୀ ସମସ୍ତଙ୍କୁ ହାର୍ଦ୍ଦିକ ସ୍ୱାଗତ ଜଣାଇଲେ । ଭଗବାନଙ୍କୁ ଆଲିଙ୍ଗନଦ୍ୱାରା ଅଭିନନ୍ଦିତ କଲେ । ଏହି ସମୟରେ କେତେକ ଗୋପବାଳକ କହିଲେ—“ମା ! ଆଜି କହ୍ନେଇ ବାଛୁରୀ ରୂପରେ ଆସିଥିବା ଏକ ଅସୁରକୁ ମାରିଦେଇଛି ।

ମା’ ଆଶ୍ଚର୍ଯ୍ୟ ହୋଇ କହିଲେ—“ଏ କହ୍ନେଇ ବଡ଼ ଦୁଷ୍ଟ ହୋଇ ଗଲାଣି । ତୁମେ ସବୁ ତାକୁ ଟିକିଏ ସାବଧାନରେ ରଖିବ । ରାକ୍ଷସ, ଅସୁରଙ୍କ ସହିତ ଲଢ଼େଇ କରିବାକୁ ଛାଡ଼ିବ ନାହିଁ । ମା’ ଏହିପରି କହି ପୁଅକୁ ସ୍ନେହ ଆଦର କରିବା ସଙ୍ଗେ ସଙ୍ଗେ ଲୀଳା ଶ୍ରବଣ କରି ଆନନ୍ଦିତ ହେଲେ ।” ଭଗବାନ ଶ୍ରୀକୃଷ୍ଣ ଏହିପରି ବତ୍ସାସୁରକୁ ଉଦ୍ଧାର କରିଥିଲେ ।

## ଛପ୍‌ପୟ

ପକାଇ ପୁଚ୍ଛ ଅରୁ ପାଁଇ କୁହୁକୁଆ ସରସ ଘୁମାୟୋ ।
ବଛରକୋ ତଜି ରୂପ ଅସୁର ତନୁ ଖଳ ପ୍ରକଟାୟୋ ।।
କୈଥନ ମାର୍‌ୟୋ ଦୈତ୍ୟ ବୃକ୍ଷ ଫଳ ଟୁଟି ଗିରେ ତବ ।
ନରଖି ଦୈତ୍ୟକୁଁ ଗ୍ୱାଲ ବାଲ ବୋଲେ ହଁସିକେ ସବ ।।
ମାର୍‌ୟୋ ସାବେ ଦୁଷ୍ଟ ଜିହ, ଭଲେ କର୍‌ୟୋ ଦୁଃଖ ହଟି ଗୟୋ ।
ବତ୍ସାସୁର ଉଦ୍ଧାର ଲଖି, ଦେବନ ଅତି ବିସ୍ମୟ ଭୟୋ ।।

ଘ

# ବକାସୁର ଉଦ୍ଧାର

ସ ବୈ ବକୋ ନାମ ମହାନସୁରୋ ବକରୂପଧୃକ୍ ।
ଆଗତ୍ୟ ସହସା କୃଷ୍ଣଂ ତୀକ୍ଷ୍ଣତୁଣ୍ଡୋଽଗ୍ରସଦ୍‌ବଳୀ ॥

(ଶ୍ରୀ ଭା ୧୦ ସ୍କ, ୧୧ ଅ, ୪୮ ଶ୍ଳୋକ)

## ଛପ୍ପୟ

ଯୌଁ ବନ ବଚ୍ଛବପାଲ ଗଲ ଡୋଲେ ବନ ବନମହଁ ।
ଇକଦିନ ଗ୍ୱାଲନ ଲଖ୍ୟୋ ବଡ଼ୋ ବକ ସୋଚେ ମନମହଁ ॥
ହୈଁ ଯୁହ କଷ୍ଟୟୁ ଅସୁର ଖଡ଼ୋ ମୁଖ ଉପର କୀୟେ ।
ଜବ ତକ ସୋଚେ ଗ୍ୱାଲ ଲୀଲ ଗ୍ୱାନେ ହରି ଲୀୟେ ॥
ଗୟେ କୃଷ୍ଣ ବକବଦନମହଁ, ନିରଖି ବାଲ ବ୍ୟାକୁଲ ଭୟେ ।
ତୁରତ କୃଷ୍ଣକେ କଣ୍ଠମହଁ, ପାବକ ସମ ହରି ହ୍ୱୈ ଗୟେ ॥

ଭଗବାନ ମଧ୍ୟ କେବେ କେବେ ମାୟାର ଅଧୀନ ହେଲା ପରି ଦେଖାଯାଆନ୍ତି । ସେତେବେଳେ ଦୈତ୍ୟ ତାଙ୍କୁ ଗିଳିପକାନ୍ତି ଓ ସେ ଅଦୃଶ୍ୟ ହୋଇଯାଆନ୍ତି । ତାଙ୍କର ଅଦୃଶ୍ୟ ହେବାଟା ମାୟାଚ୍ଛନ୍ନ ଅବସ୍ଥା ନୁହେଁ ; କିନ୍ତୁ ନିଜର ପ୍ରିୟମିତ୍ରମାନଙ୍କୁ ଆନନ୍ଦ ଦେବାପାଇଁ ସେ ପ୍ରକାର ଚେଷ୍ଟା କରିଥାନ୍ତି । ଅଦର୍ଶନ ଦ୍ୱାରା ଉତ୍କଣ୍ଠା ବଢ଼ିଯାଏ ଏବଂ ଦୁଃଖମୟରେ ନିଜର ଆତ୍ମୀୟ ସ୍ୱଜନଙ୍କ କଥା ମନେପଡ଼େ । ବିରହରେ ସାକ୍ଷାତଲାଭର ଉତ୍କଣ୍ଠା ଅଧିକ ଉତ୍କଟ ହୁଏ ; ତେଣୁ ବିରହ ପରେ ଯେତେବେଳେ ମିଳନ ହୁଏ ସେତେବେଳେ ମିଳନର ଆନନ୍ଦ ବହୁଗୁଣିତ ହୋଇଯାଏ ।

ମହର୍ଷି ସୂତ କହିଲେ—"ମୁନିଗଣ ! ଭୂତଭାବନ ଭଗବାନ ବାସୁଦେବ ଶ୍ରୀବଳରାମଙ୍କ ସହିତ ବାଛୁରୀ ଚରାଇବାବେଳେ ନାନାପ୍ରକାର ଲୀଳା କରିବାକୁ ଲାଗିଲେ । ଯଦିଓ ସେ ସମସ୍ତ ଲୋକର ପରିପାଳକ ଓ ଅନନ୍ତ କୋଟି ବ୍ରହ୍ମାଣ୍ଡର ଏକମାତ୍ର ଅଧିପତି ତଥାପି ଲୀଳା କରିବାପାଇଁ ଗୋପାଳ ପାଲଟିଥିଲେ । ଗୋପାଳ ବାଳକମାନଙ୍କ ମଧ୍ୟରେ ସେ ନିଜକୁ ଏପରି ହଜାଇ ଦେଇଥିଲେ ଯେ ସାଧାରଣ ଲୋକଙ୍କ କଥା ଦୂରେଥାଉ ବ୍ରହ୍ମାଦି-ଦେବ ଓ ଇନ୍ଦ୍ରାଦି ଲୋକପାଳ ମଧ୍ୟ ଭ୍ରମବଶତଃ ତାଙ୍କୁ ଗୋପକୁମାର ବୋଲି ମନେ

କରୁଥିଲେ ଏବଂ ତାଙ୍କୁ ଅପମାନିତ କରିବା ପାଇଁ ଉଦ୍ୟମ କରୁଥିଲେ । ସେ ନିଜର ଶକ୍ତି ସାମର୍ଥ୍ୟ ଓ ଐଶ୍ୱର୍ଯ୍ୟକୁ ଲୁଚାଇ ରଖୁଥିଲେ ବି କେତେ ସମୟ ଲୁଚାଇ ପାରିବେ ? ଲୁଚାଇବାର ଏକ ସୀମା ତ ଅଛି ; ତେଣୁ କେବେ କେବେ ତାଙ୍କର ବଳ ଓ ଐଶ୍ୱର୍ଯ୍ୟ ସ୍ୱତଃ ପ୍ରକଟିତ ହୋଇଯାଉଥିଲା । ପ୍ରକଟଲୀଳାର ବି ଆବଶ୍ୟକତା ଥିଲା । ପ୍ରଭୁଙ୍କର ଗୋପନଲୀଳା ସର୍ବଥା ରସମୟୀ ଓ ଆନନ୍ଦମୟୀ, ତାହା ସର୍ବଦା ମଧୁର ଓ ରସାଳ । ଅସୁର ପ୍ରଭୃତିଙ୍କୁ ସଂହାର କରିବା ବୈଷ୍ଣବୀ ଶକ୍ତିଦ୍ୱାରା ସମ୍ପାଦିତ ହୁଏ । ବୈଷ୍ଣବୀ ଶକ୍ତି ଭଗବାନଙ୍କ ଅଙ୍ଗରେ ବିରାଜିତ । ପରାତ୍ପର ପୂର୍ଣ୍ଣବ୍ରହ୍ମ ଯାହାଙ୍କୁ ଶ୍ରୁତି ରସରୂପ ବୋଲି ଅଭିହିତ କରେ ତାଙ୍କର ସଂହାର କାର୍ଯ୍ୟ ସହିତ କୌଣସି ସମ୍ପର୍କ ନାହିଁ । କାରଣ ସେ ସର୍ବଦା ରସମୟ ।

ବୃନ୍ଦାବନରେ ଭଗବାନ ପାଞ୍ଚ ଛଅ ବର୍ଷର ବାଳକ ବୋଲି ମନେ ହୁଅନ୍ତି; କିନ୍ତୁ ସେ ତ ନିତ୍ୟ କିଶୋର । ନିତ୍ୟ କିଶୋରୀଙ୍କ ସହିତ ତାଙ୍କର ଲୀଳା ନିରନ୍ତର ଲାଗି-ରହିଥାଏ । ତାଙ୍କର ନିକୁଞ୍ଜବିହାର ସର୍ବଦା ଚାଲିଥାଏ । କେବଳ ତାଙ୍କର ପରିକର ସେ ଲୀଳା ଜାଣିପାରନ୍ତି । ଅନ୍ୟ କେହି ତାଙ୍କର ନିତ୍ୟଲୀଳାରେ ପ୍ରବେଶ କରିପାରେ ନାହିଁ । ପ୍ରକଟ ଲୀଳାରେ ସେ ଗୋପାଳ ହୋଇଛନ୍ତି । ସକାଳେ ମା' ତାଙ୍କୁ ଖୁଆଇ ପିଆଇ ଜଳଖିଆ ବାନ୍ଧିଦିଅନ୍ତି । ସେ ଜଳଖିଆ ପୁଟୁଳିକୁ ବାଡ଼ିରେ ଝୁଲାଇ କାନ୍ଧରେ ବାଡ଼ିଟି ପକାଇ ଏବଣରୁ ସେବଣକୁ ବାଛୁରି ନେଇ ବୁଲନ୍ତି । ପିଲାମାନଙ୍କୁ ଖାଇବା ଓ ଖେଳିବା ସୁବିଧା ମିଳିଗଲେ ତାଙ୍କର ଆଉ ଚିନ୍ତା କ'ଣ ? ପେଟ ପୂରିଥିଲେ ଓ ଖେଳରେ ମାତିଥିଲେ ପିଲାମାନେ ଅନ୍ୟ କୌଣସି ବିଷୟ ଚିନ୍ତା କରନ୍ତି ନାହିଁ । ବାଳଗୋପାଳ ରୂପରେ ଶ୍ରୀକୃଷ୍ଣ ନିଶ୍ଚିନ୍ତରେ ଥିବାବେଳେ ମହାରାଜ କଂସ ମହାଚିନ୍ତାରେ ଥାଏ । ସେ ପ୍ରଭୁଙ୍କ ମାୟାରେ ଏପରି ଆଚ୍ଛନ୍ନ ହୋଇଯାଇଥିଲା ଯେ ଭୟରେ କେବେହେଲେ ନନ୍ଦରାଜାଙ୍କ ଗୋକୁଳକୁ ଆସୁ ନ ଥିଲା । ତା'ର ଦୃଢ଼ବିଶ୍ୱାସ ଥିଲା ଯେ ମୋର ଶତ୍ରୁ ବିଷ୍ଣୁ ଯେଉଁଠି ମୋତେ ଏକାନ୍ତରେ ପାଇବେ ନିଶ୍ଚୟ ମାରି ପକାଇବେ । ତା'ର ବୁଦ୍ଧି ବାମ ହୋଇଯାଇଥିଲା । ତେଣୁ କିଏ ତା'ର ପ୍ରକୃତ ଶତ୍ରୁ ତାହା ସେ ସ୍ଥିର କରି ପାରୁ ନ ଥିଲା । ସେ କାହାର ପୁଅ । ଯୋଗମାୟାଙ୍କ କହିବା ଅନୁସାରେ ସେ ଅନୁମାନ କରୁଥିଲା ଯେ ତା'ର ଶତ୍ରୁ ନନ୍ଦଙ୍କ ଗୋକୁଳରେ କୌଣସି ଗୋପାଳ ଘରେ ବାଳକ ରୂପେ ଲୁଚି ରହିଛନ୍ତି । ଯାହାକୁ ସେ ପଠାଉଥିଲା ଶ୍ରୀକୃଷ୍ଣ ତାକୁ ମାରି ଦେଉଥିଲେ ; ତେଣୁ କଂସ ପ୍ରକୃତ ଶତ୍ରୁ ବିଷୟରେ କୌଣସି ସୂଚନା ପାଇପାରୁ ନ ଥିଲା, ସେନାବାହିନୀ ପଠାଇଲେ ହୁଏତ ସୂଚନା ମିଳନ୍ତା; କିନ୍ତୁ ସେନାବାହିନୀ ସେ ପଠାଇ ପାରୁ ନ ଥିଲା, କାରଣ ସେନା ପଠାଇବାର କୌଣସି ଯୁକ୍ତି ନ ଥିଲା । ଅସୁରମାନଙ୍କୁ ପଠାଉଥିଲା । ସେମାନେ ଗୁପ୍ତରୂପରେ ଅନେକ-ପ୍ରକାର ବେଶ ହୋଇ ଆସୁଥିଲେ ଏବଂ ସେମାନଙ୍କୁ ଶ୍ରୀକୃଷ୍ଣ ଶେଷ କରିଦେଉଥିଲେ । ତେଣୁ କଂସ ସର୍ବଦା ବ୍ୟସ୍ତ ଓ ବିବ୍ରତ ଅବସ୍ଥାରେ ଥିଲା ।

ଯେଉଁ ପୂତନା ବ୍ରଜପୁରରେ ବିଷ ଦେଇ ପିଲାମାନଙ୍କୁ ହତ୍ୟା କରୁଥିଲା ସେ ଆଉ ଫେରିଲା ନାହିଁ । ପୂତନାର ଗୋଟିଏ ଭାଇ ଥିଲା ବକ । ତାକୁ ଡକାଇ କଂସ କହିଲା— "ଭାଇ ! ଦେଖ, ତୋର ଭଉଣୀକୁ ମୁଁ ବ୍ରଜପୁରକୁ ଶତ୍ରୁ ସଂହାର କରିବା ପାଇଁ ପଠାଇଥିଲି । ଶୁଣିଲି, ମୋର ଶତ୍ରୁ ନନ୍ଦର ଗୋକୁଳରେ ଗୋପବାଳକ ବେଶରେ ଗୁପ୍ତରେ ଅଛି । ବଡ଼ ହେଲେ ସେ ନିଶ୍ଚୟ ମୋତେ ମାରିଦେବ । ସମ୍ଭବତଃ ଛଳନା କରି ସେ ତୋର ଭଉଣୀକୁ ମାରିପକାଇଛି । ଯଦି ତୁ କୌଣସିମତେ ତାକୁ ମାରିପାରନ୍ତୁ ତେବେ ମୋର ଶତ୍ରୁ ବିନାଶ ହୋଇଯାଆନ୍ତା । ଆଉ ତୁ ନିଜ ଭଉଣୀ ହତ୍ୟାର ପ୍ରତିଶୋଧ ନେଇପାରନ୍ତୁ ।"

ଏହା ଶୁଣି ବକାସୁର କହିଲା—"ରାଜନ୍ ! ଆପଣ ଆଦୌ ଚିନ୍ତା କରନ୍ତୁ ନାହିଁ । ମୁଁ ଆଜି ବୃନ୍ଦାବନ ଯିବି । ବଡ ବକ ରୂପ ଧାରଣ କରି ସେ ପିଲାକୁ ଗିଳିଦେବି । ମୋ' କବଳରୁ ସେ ରକ୍ଷାପାଇବ ନାହିଁ ।"

ବକର କଥା ଶୁଣି ପ୍ରସନ୍ନ ହୋଇ କଂସ ତାକୁ ଶୁଭେଚ୍ଛା ଜଣାଇଲା ଏବଂ ଆନନ୍ଦରେ ବିଦାୟ ଦେଲା । ସେହି ଦୁଷ୍ଟ ରାକ୍ଷସ ବୃନ୍ଦାବନ ଯାଇ ଯମୁନା କୂଳରେ ଯେଉଁଠି ବାଛୁରୀ ଚରୁଥିଲେ ସେଇଠିବଡ଼ ବଗ ରୂପଧରି ବସି ରହିଲା ।

ଭଗବାନ ଶ୍ରୀକୃଷ୍ଣ ଗୋପବାଳକମାନଙ୍କ ସହିତ ବାଛୁରୀଙ୍କୁ ପାଣି ପିଆଇବା ପାଇଁ ଯମୁନାକୂଳକୁ ଆସିଲେ । ବାଛୁରୀଗୁଡ଼ିକ ପେଟପୂରି ପାଣି ପିଇଲେ । ପାଣି ପିଇସାରିବା ପରେ ସେମାନେ ପୁଣି ଚରିବାକୁ ଲାଗିଲେ । କେତେକ ଗୋପବାଳକ ଆଗରେ ଓ କେତେକ ପଛରେ ରହିଲେ । ସେମାନେ ବି ସମସ୍ତେ ପାଣି ପିଇଲେ । ହାତଗୋଡ଼ ଧୋଇ କିଏ ଆଗରେ ତ କିଏ ପଛରେ ରହିଲେ । ସମସ୍ତେ ସେହି ଅସାଧାରଣ ଆକାରର ବଗକୁ ଦେଖିଲେ । ଏପରି ଏକ ବଡ଼ ବଗକୁ ଦେଖି ସେମାନେ ପରସ୍ପର ମଧ୍ୟରେ କୁହାକୁହି ହେଲେ—ଏତେ ବଡ଼ ବଗ ତ ଆମେ କେବେ ଦେଖିନାହୁଁ । ଇନ୍ଦ୍ରଙ୍କ ବଜ୍ରରେ କଟିଯାଇ ତଳେ ପଡ଼ିଥିବା ହିମାଳୟର ଶିଖର ପରି ଏ ବଗ ଦେଖାଯାଉଛି । ଏ ସାଧାରଣ ବଗ ନୁହେଁ, ନିଶ୍ଚୟ କୌଣସି ଅସୁର ହୋଇଥିବ । ସମସ୍ତେ ତ ପିଲାଲୋକ ; ତେଣୁ ଏକ ଅଦ୍ଭୁତ ଆକାରର ବଗକୁ ଦେଖି ସମସ୍ତେ ଭୟଭୀତ ହୋଇପଡ଼ିଲେ ।

ଶ୍ରୀକୃଷ୍ଣ ଥିଲେ ସମସ୍ତଙ୍କ ପଛରେ । ଭକ୍ତ ଓ ଅନୁଗତମାନଙ୍କ ପଛରେ ରହିବା ତାଙ୍କର ସ୍ୱଭାବ । ବଗରୂପଧାରୀ ମହାଦୈତ୍ୟ ଶ୍ରୀକୃଷ୍ଣଙ୍କୁ ପଛରେ ଦେଖି ନିଜର ବିରାଟ ଥଣ୍ଟ ମେଲାକଲା । ସେ ଅପେକ୍ଷା କରି ରହିଥିଲା ସୁଯୋଗକୁ । ଶ୍ରୀକୃଷ୍ଣଙ୍କ ରୂପ, ସୌନ୍ଦର୍ଯ୍ୟ ଓ ତେଜ ଦେଖି ସେ ଜାଣିଗଲା ଯେ ମୋର ଭଉଣୀକୁ ଏଇ ବାଳକ ହତ୍ୟା କରିଛି ଏବଂ ଏହି ବାଳକ ହିଁ କଂସ ରାଜାର ଶତ୍ରୁ । ବକାସୁର ଥଣ୍ଟ ମେଲି କରି ଶ୍ରୀକୃଷ୍ଣଙ୍କୁ ଧରିପକାଇଲା ଓ ଆଖିପିଛୁଳାକେ ଗିଳିଦେବାକୁ ବସିଲା ।

ଗୋପବାଳକମାନେ ଭୟଭୀତ ହୋଇ ଚୁପ୍ ରହିଥିଲେ । ଶ୍ରୀକୃଷ୍ଣ ଥିଲେ ସେମାନଙ୍କର ଜୀବନ । ସମସ୍ତେ ତାଙ୍କୁ ପ୍ରାଣଠାରୁ ବଳି ଅଧିକ ଆଦର କରୁଥିଲେ । ନିଜର ପ୍ରିୟତମ ବନ୍ଧୁ ଶ୍ରୀକୃଷ୍ଣଙ୍କୁ ଭୀମକାୟ ଧାଗ ବଗ ମୁହଁରେ ଗ୍ରାସ କରିଦେବା ଦେଖି ବଳରାମ ଓ ଗୋପବାଳକମାନେ ମୂର୍ଚ୍ଛିତ ପ୍ରାୟ ହୋଇପଡ଼ିଲେ । ପ୍ରାଣ ବିନା ଇନ୍ଦ୍ରିୟଜାଳ ବିନା ମାଛ ଓ ମଣି ବିନା ଫଣୀ ପରି ଗୋପାଳ ବାଳକମାନେ ବ୍ୟାକୁଳ ହେବାକୁ ଲାଗିଲେ ।

ଭଗବାନ ଦେଖିଲେ ତାଙ୍କ ଲୀଳାଟା ସରସ ହେଉନାହିଁ । ସେ ଭାବିଲେ ଏହା ବଡ଼ କରୁଣରସାତ୍ମକ ହୋଇପଡ଼ୁଛି । ମୋତେ ନ ଦେଖି ମୋର ସଖାମାନେ ବ୍ୟାକୁଳ ହୋଇପଡ଼ିବେ । ବଗ ମୁଖ ମଧ୍ୟରେ ରହିଗଲେ କେହି ଦେଖିବେ ନାହିଁ ; ତେଣୁ ସିଦ୍ଧି-ବଳରେ କାମ କରିବାକୁ ପଡ଼ିବ । ଏହା ଭାବି ଶ୍ରୀକୃଷ୍ଣ ନିଜ ଦେହରେ ଅଗ୍ନିତତ୍ତ୍ୱକୁ ଜାଗ୍ରତ କଲେ ; ତେଣୁ ତାଙ୍କ ଦେହ ଜଳନ୍ତା ଅଙ୍ଗାର ପରି ଜଳିବାକୁ ଲାଗିଲା । ଲୋକ ଯେପରି ଅତ୍ୟଧିକ ଗରମ ଖାଦ୍ୟକୁ ଗିଳି ନ ପାରି ତୁରନ୍ତ ଓକାଳି ପକାଏ ସେହିପରି ବଗ ଅଧିକ ସମୟ ଭଗବାନଙ୍କୁ ମୁଖ ମଧ୍ୟରେ ରଖିବା ପାଇଁ ସମର୍ଥ ହେଲା ନାହିଁ । ଶ୍ରୀକୃଷ୍ଣଙ୍କୁ ତଳକୁ ପକାଇ ଦେଇ ତାଙ୍କୁ ଥଣ୍ଟରେ ଆଘାତ କରିବା ପାଇଁ ବଗ ବ୍ୟଗ୍ର ହୋଇପଡ଼ିଲା । ବକାସୁରର ମୁଖ ମଧ୍ୟକୁ ଯାଇ ଓ ସେଥିରୁ ବାହାରି ଆସି ମଧ୍ୟ ଭଗବାନଙ୍କର କୌଣସି ପ୍ରକାର କ୍ଷତି ହୋଇ ନ ଥିଲା । ସେ ସର୍ବସମସ୍ତ କର୍ତ୍ତା, କିଏ ତାଙ୍କର କି କ୍ଷତି କରିପାରିବ; କିନ୍ତୁ ଦୁଷ୍ଟ ଅସୁର ତାଙ୍କର ସେହି ଅଲୌକିକ ପ୍ରଭାବକୁ ବୁଝିପାରିଲା ନାହିଁ । ସେ ଶ୍ରୀକୃଷ୍ଣଙ୍କୁ ପାଟିରୁ କାଢ଼ି ଓ ଦୂରକୁ ଫିଙ୍ଗି ଦେଇ ପୁଣି ତାଙ୍କୁ ଥଣ୍ଟରେ ଆଘାତ କରିବା ପାଇଁ ଦୌଡ଼ିଲା ।

ବକାସୁର ଥିଲା କଂସର ବନ୍ଧୁ ଏବଂ ବନ୍ଧୁର ଉପକାର ତଥା ନିଜ ଭଉଣୀ ହତ୍ୟାର ପ୍ରତିଶୋଧ ନେବାପାଇଁ ଭଗବାନଙ୍କୁ ହତ୍ୟା କରିବା ପାଇଁ ସେ ଆସିଥିଲା ; ତେଣୁ ନିଜର ପ୍ରାଣ ବାଜିମସ୍ତରେ ସେ ଶ୍ରୀକୃଷ୍ଣଙ୍କୁ ଆକ୍ରମଣ କଲା । ଆକାଶରେ ବିମାନ ଭିତରେ ଥିବା ଦେବଗଣ ବକାସୁରର ଭୀମମୂର୍ତ୍ତି ଦେଖି ଡରିଯାଉଥିଲେ । ଏଣେ ପୃଥିବୀ ପୃଷ୍ଠରେ ଥିବା ଗୋପାଳ ବାଳକମାନେ ମୂର୍ଚ୍ଛିତ ହୋଇପଡ଼ିଥିଲେ । ତେଣୁ ଦେବତା ଓ ଅନୁଗତ ଗୋପାଳ ବାଳକମାନଙ୍କୁ ଆନନ୍ଦିତ କରିବାପାଇଁ ଭଗବାନ ଶ୍ରୀକୃଷ୍ଣ ନିଜର ଦୁଇ ହାତରେ ବଗର ଦୁଇ ଥଣ୍ଟକୁ ଧରିପକାଇଲେ ଏବଂ ସମସ୍ତେ ଉଦ୍‌ଗ୍ରୀବ ହୋଇ ଚାହିଁ ରହିଥିବା ଅବସ୍ଥାରେ ବଗକୁ ଦୁଇଭାଗ କରି ଚିରିଦେଲେ ।

ମହର୍ଷି ସୂତ କହିଲେ—"ମୁନିଗଣ ! ବକାସୁର ମୃତ୍ୟୁବରଣ କରିବା ପରେ ଦେବଗଣ ଶ୍ରୀକୃଷ୍ଣଙ୍କ ଉପରେ ପୁଷ୍ପବୃଷ୍ଟି କଲେ ଓ ବିଭିନ୍ନ ବାଦ୍ୟ ବଜାଇ ତାଙ୍କର ସ୍ତୁତିଗାନ କଲେ । ଏସବୁ ଅଦ୍‌ଭୁତ ଘଟଣା ଦେଖି ଗୋପବାଳକମାନେ ବିସ୍ମିତ ଓ ଆନନ୍ଦିତ ହେଲେ ।"

## ଛପ୍ପୟ

ସହନ କରି ସକେଂ୍ୟା ନହିଁ ଉଗଲ ଦୀପ୍ୟେ ଖଳକେ ହରି ।
ମାରନ ଦୌରନ୍ତ୍ୟୌ କୃଷ୍ଣ ଚୋଁଚଟେଁ ତୁରତ କୋପ କରି ।।
ହରି ହର୍ଷି ପକରି ଚୋଁଚ ଗ୍ୱାଲ ଲଖି ଅତ ହରଷାୟେ ।
ଦୟେ୍ୟା ବୀଚନ୍ତେଁ ଫାରି ସୁମନ ଦେବନ ବରଷାୟେ ।।
ଅତ ବସ୍ମିତ ବାଳକ ଭୟେ, ଆଲିଙ୍ଗନ ହରି କୋ କରେଁ ।
ପତ୍ର, ପୁଷ୍ପ, ଫଲ ଲଇକେ, ହରଷ ସହିତ ସନ୍ମୁଖ ଧରେ ।।



# ବକାସୁର ସଂହାରୀ କୃଷ୍ଣ

ମୁକ୍ତଂ ବକାସ୍ୟାଦୁପଲଭ୍ୟ ବାଳକାଃ
ରାମାଦୟଃ ପ୍ରାଣମିବେନ୍ଦ୍ରିୟୋ ଗଣଃ ।
ସ୍ଥାନାଗତଂ ତଂ ପରିରଭ୍ୟ ନିର୍ବୃତାଃ
ପ୍ରଣୀୟ ବତ୍ସାନ୍ ବ୍ରଜମେତ୍ୟ ତଜ୍ଜଗୁଃ ।।

(ଶ୍ରୀଭା ୧୦ସ୍କ. ୧୧ଅ,. ୫୩ଶ୍ଳୋକ)

## ଛପ୍ପୟ

ଅସୁର ମୃତକ ହରି କୁଶଲ ନିରଖି ବାଳକ ହରଷାଏଁ ।
ମନହୁଁ ମୃତକ ତନୁ ପ୍ରାନ ଆଇ ଇନ୍ଦ୍ରିୟ ସୁଖ ପାଏଁ ।।
ଲେ ବଛରନକୂଁ ଗ୍ୱାଲ ବାଲ ବୃନ୍ଦାବନ ଆୟେ ।
ଅତ ଉତ୍ସୁକ ହ୍ୱୈ ବୃତ୍ତ ସବନ ଯଶୁମତହୁଁ ସୁନାୟେ ।।
ବତ୍ସାସୁର କୀ ବାତ ସୁନି, ସବକୂଁ ଅତ ବସ୍ମୟ ଭୟୋ ।
କହେ ଗୋପ ମୁନି ଗର୍ଗନେ, ସବ ଭବିଷ୍ୟ ପହିଲହିଁ କହ୍ୟୋ ।।

ବଡ଼ ବଡ଼ ଆକାରର କୋଠିଙ୍କୁ ନିରୀକ୍ଷଣ କଲେ ଯେପରି ନୟନର ଆନନ୍ଦ ଜାତହୁଏ, ସେହିପରି ନିଜର ସାଙ୍ଗ, ବନ୍ଧୁ, ସହପାଠୀମାନଙ୍କ ମଧ୍ୟରୁ କେହି ଜଣେ

କୌଣସି ପ୍ରକାର ବଡ଼ କାମ କରିବାର ଦେଖିଲେ ମନରେ ଅତ୍ୟଧିକ ପ୍ରସନ୍ନତା ଜାତ ହୁଏ । ମନେହୁଏ ସତେ ଯେପରି ସେ କାମଟି ନିଜେ କରିଛୁ । ନିଜର ବନ୍ଧୁମାନେ ଭଲ ଭଲ କାମ କଲେ ଆମେ ଖୁସି ହେଉ । ସେମାନଙ୍କର ପ୍ରଶଂସା ଶୁଣିଲେ ମନେ ମନେ ଆମେ ଏକପ୍ରକାର ଅପୂର୍ବ ଆନନ୍ଦ ଅନୁଭବ କରୁଁ ।

ମହର୍ଷି ସୂତ କହିଲେ—"ମୁନିଗଣ ! ଶ୍ରୀକୃଷ୍ଣ ଯେତେବେଳେ ବକାସୁରର ଥଣ୍ଟକୁ ଧରି ଦୁଇଫାଳ କରି ଚିରିଦେଲେ ଓ ଦୂରକୁ ଫିଙ୍ଗିଦେଲେ ସେତେବେଳେ ଗୋପବାଳକ-ମାନେ ଶ୍ରୀକୃଷ୍ଣଙ୍କୁ ଗାଢ଼ ଆଲିଙ୍ଗନ ପାଶରେ ଆବଦ୍ଧ କରିପକାଇଲେ । ଯେପରି ମୃତ ବ୍ୟକ୍ତିର ଦେହରେ ପୁନଃ ପ୍ରାଣସଞ୍ଚାର ହେଲେ ଇନ୍ଦ୍ରିୟଗୁଡ଼ିକ ଖୁସୀ ହୁଅନ୍ତି, ବିପତ୍ତିରେ ପଡ଼ିଥିବା ନିଜର ପ୍ରିୟତମ ବ୍ୟକ୍ତିକୁ ସକୁଶଳ ଘରକୁ ଫେରିଆସିଲେ ତା'ର ଆତ୍ମୀୟସ୍ୱଜନ ଯେପରି ଖୁସି ହୁଅନ୍ତି ସେହିପରି ବକାସୁର ମୁଖରୁ ଶ୍ରୀକୃଷ୍ଣ ସକୁଶଳ ଫେରିଆସିବାର ଦେଖି ଗୋପବାଳକମାନେ ଅତ୍ୟଧିକ ଆନନ୍ଦିତ ହେଲେ । ସେମାନେ ସମସ୍ତେ ସ୍ନେହରେ ଶ୍ରୀକୃଷ୍ଣଙ୍କୁ କୁଣ୍ଢାଇ ପକାଇଲେ । ସମସ୍ତଙ୍କଠାରୁ ବଳରାମ ଅଧିକ ଆନନ୍ଦିତ ହେଲେ । ସେ ବାରମ୍ବାର ଶ୍ରୀକୃଷ୍ଣଙ୍କୁ ଆଲିଙ୍ଗନ କରି ପ୍ରେମାଶ୍ରୁରେ ତାଙ୍କୁ ଗାଧୋଇ ଦେଲେ ।

ସମସ୍ତେ ନିଜ ନିଜର ବାଛୁରୀଗୁଡ଼ିକୁ ଏକତ୍ରିତ କଲେ ଓ ଶ୍ରୀକୃଷ୍ଣଙ୍କୁ ଆଗରେ ରଖି ବୃନ୍ଦାବନ ପ୍ରତ୍ୟାବର୍ତ୍ତନ ଯାତ୍ରା ଆରମ୍ଭ କଲେ । ବ୍ରଜରେ ପହଞ୍ଚିବା ପରେ ସମସ୍ତେ ବଡ଼ ଆନନ୍ଦରେ ବକାସୁର ବୃତ୍ତାନ୍ତ ଗୋପ ଓ ଗୋପୀମାନଙ୍କ ଆଗରେ ବର୍ଣ୍ଣନା କଲେ । ଛୋଟ ଛୋଟ ପିଲାମାନେ ଯଶୋଦାଙ୍କୁ କହିଲେ—"ମା, ମା, ଆଜି କାହ୍ନୁଭାଇ ଏକ ବଡ଼ ରାକ୍ଷସକୁ ମାରି ପକାଇଛି ।"

ମା' ଯଶୋଦା ପଚାରିଲେ—ହାୟ, ରାକ୍ଷସ ସେଠାକୁ କିପରି ଆସିଲା ?"

ଜନୈକ ବାଳକ କହିଲା—"ମା, ସେ ରାକ୍ଷସ ଏକ ବଡ଼ ବଗର ରୂପ ଧରି ଆସିଥିଲା । ଦୂରରୁ ଏକ ପାହାଡ଼ ପରି ସେ ଦେଖାଯାଉଥିଲା । ସେ ଚୁପ୍‌ଚାପ୍ ଥିଲା ଏବଂ କହ୍ନେଇକୁ ପଛଆଡ଼ୁ ଧରି ଗିଳି ପକାଇଲା ।"

ମା କହିଲେ—"ଆରେ, କ'ଣ କହୁଛୁ, ବଗଟା ପୁଅକୁ ଗିଳିପକାଇଲା ?"

ଗୋପବାଳକମାନେ ଚଟାପଟ୍ କହିଲେ—"ପୁରା କଥାଟା ଶୁଣି ଯାଅ । ସେ ରାକ୍ଷସ ତ କହ୍ନେଇକୁ ଗିଳିଦେଲା ; କିନ୍ତୁ ସଙ୍ଗେ ସଙ୍ଗେ ପୁଣି ବାନ୍ତିକରି ପକାଇଲା । କହ୍ନେଇ ସେଇଠୁ ଝପଟି ଯାଇ ତା'ର ଦୁଇ ଥଣ୍ଟକୁ ଧରି ଦୁଇଫାଳ କରି ଚିରିଦେଲା ।"

ମା' କହିଲେ—"ଦେଖ, ନାରାୟଣ ହିଁ ପୁଅକୁ ମୋର ରକ୍ଷା କଲେ ।" ମା' ଯଶୋଦା ସଙ୍ଗେ ସଙ୍ଗେ ଯାଇ ଦଶ ସେର ଲଡ଼ୁ ଆଣି ନାରାୟଣଙ୍କୁ ଭୋଗ ଦେଲେ ଏବଂ ସମସ୍ତଙ୍କୁ ପ୍ରସାଦ ବାଣ୍ଟିଲେ । ଗୋପବାସୀମାନେ ଏହି ଘଟଣା ଶୁଣି ବିସ୍ମିତ ହୋଇପଡ଼ିଲେ ।

ସମସ୍ତେ ଭାବିଲେ ଶ୍ରୀକୃଷ୍ଣଙ୍କର ଅଳ୍ପ ପୁନର୍ଜନ୍ମ ହେଲା ; ତେଣୁ ସମସ୍ତେ ଉତ୍କଣ୍ଠିତ ହୋଇ ବାରମ୍ବାର ଶ୍ରୀକୃଷ୍ଣଙ୍କ ଅନୁପମ ମୁଖମଣ୍ଡଳ ଆଡ଼କୁ ନିରୀକ୍ଷଣ କରିବାକୁ ଲାଗିଲେ ।

ଗଦ୍‌ଗଦ କଣ୍ଠରେ ଉପନନ୍ଦ ଆଖିରୁ ଲୁହ ପୋଛି କହିଲେ—"ଦେଖ, କି ଆଶ୍ଚର୍ଯ୍ୟ କଥା । ପିଲାଟାକୁ ମୃତ୍ୟୁ ଅସି ବାରମ୍ବାର ଘେରିଯାଉଛି ; କିନ୍ତୁ ଯେତେବେଳେ ଏପରି ସଙ୍କଟ ଆସିଛି ସେତେ-ବେଳେ କୌଣସିମତେ ସେ ବଞ୍ଚିଯାଇଛି । ତା'ର ଗୋଟିଏ ରୋମ ବି ବଙ୍କା ହୋଇନାହିଁ । ଅନ୍ୟପକ୍ଷରେ ଯେ ଆସି ଭୟ ଦେଖାଇଛି ତା'ର ଅନିଷ୍ଟ ହୋଇଛି । ସେମାନେ ବରଂ ମୃତ୍ୟୁମୁଖରେ ପଡ଼ିଛନ୍ତି । ଅଗ୍ନିକୁ ଦେଖି ପତଙ୍ଗ ଦୌଡ଼ି ଆସନ୍ତି ଓ ଅଗ୍ନିରେ ପଡ଼ନ୍ତି ; କିନ୍ତୁ ଏହାଦ୍ୱାରା ଅଗ୍ନିର କିଛି କ୍ଷତି ହୁଏ ନାହିଁ । ବରଂ ସେମାନେ ଅଗ୍ନିରେ ପଡ଼ି ଭସ୍ମ ହୋଇଯାଆନ୍ତି । ସେହିପରି ଯେଉଁ ରାକ୍ଷସ ଆସିଛି ସେ ଶ୍ରୀକୃଷ୍ଣର ପାଖକୁ ଆସିବାମାତ୍ରେ ମୃତ୍ୟୁ ବରଣ କରିଛି ।"

ଏହାଶୁଣି ନନ୍ଦ କହିଲେ—"ବେଦବିତ୍‌ମାନେ ଯାହା କହି ଦିଅନ୍ତି । ସେମାନେ ଯେଉଁ ଭବିଷ୍ୟତ ବାଣୀ କହନ୍ତି ତାହା ନିଶ୍ଚିତ ଭାବରେ ଘଟେ । ଜ୍ୟୋତିଷ ଶାସ୍ତ୍ର ପ୍ରଣେତା ଭଗବାନ ଗର୍ଗ ଏହି ବାଳକର ନାମକରଣ ସମୟରେ ଯାହା ଯାହା କହିଥିଲେ ଏବେ ସେ ସବୁକୁ ମୁଁ ପ୍ରତ୍ୟକ୍ଷଭାବେ ଦେଖୁଛି ଓ ଅନୁଭବ କରୁଛି ।"

ଉପନନ୍ଦ ପଚାରିଲେ—"ଗର୍ଗ କ'ଣ କ'ଣ କହିଥିଲେ ?"

ନନ୍ଦ କହିଲେ—"କୃଷ୍ଣର ହାତ ଦେଖି ଓ ଜାତକ ବିଚାର କରି ଏବଂ ଗ୍ରହମାନଙ୍କର ବଳାବଳ ବିଚାରି ସେ କହିଥିଲେ ଏହା ଉପରେ ଯେଉଁ ଶତ୍ରୁ ଆକ୍ରମଣ କରିବ ସେ ମୃତ୍ୟୁ ଲୋକକୁ ଯିବ । ତାହାଦ୍ୱାରା ଗୋପକୁଳର ଖ୍ୟାତି ବଢ଼ିବ । ବ୍ରଜବାସୀ ତାହାର କୃପାରୁ ବଡ଼ ବଡ଼ ବିପଦରୁ ସହଜରେ ରକ୍ଷା ପାଇବେ ।"

ଉପନନ୍ଦ ପଚାରିଲେ—"ଭାଇ ! ତୁମେ ଯାହା କହିଲ ସବୁକଥା ତ ସତ ହେଉଛି । ଆମେ ଭାବୁଥିଲୁ ଗୋକୁଳରେ ଉତ୍ପାତ ଘଟୁଛି । ଏଠାକୁ ଆସିବା ପରେ ବି ସେହି ଉତ୍ପାତ ଲାଗିରହିଛି ।"

ଜଣେ ଗୋପାଳ ଏହା ଶୁଣି କହିଲେ—"ଆଜ୍ଞା, ଚିନ୍ତା କରିବାର କିଛି କାରଣ ନାହିଁ । ଆମର କହ୍ନେଇ ହାତରେ ସମସ୍ତ ସିଦ୍ଧି ଅଛି । ଆମେ ତାକୁ ପିଲାଟିଏ ବୋଲି ଦେଖୁଛୁ । କିନ୍ତୁ ଯେ ଅସୁର ତା' ଉପରେ ହାତ ଦେଲା ତା'ର ମୃତ୍ୟୁ ଘଟିଲା । କେହି ଅସୁର, ରାକ୍ଷସ ତା'ର କିଛି କରିପାରିବେ ନାହିଁ ।"

ଉପନନ୍ଦ କହିଲେ—"ତଥାପି ଭାଇ ! ତା' ହାତରେ ଏକ ତେଉଁରିଆ ବାନ୍ଧିଦିଅ । ଓଝା ପାଖରୁ ତାବିଜ ଆଣି ତା' ବେକରେ ପିନ୍ଧାଇ ଦିଅ । କିଛି ତନ୍ତ୍ରମନ୍ତ୍ର ବି କରିବା ଆବଶ୍ୟକ, ଯାହାଦ୍ୱାରା କୌଣସି ଅସୁର ତା'ପାଖକୁ ଅସିପାରିବେ ନାହିଁ । ଏହାଶୁଣି ନନ୍ଦ

ଓଝା ଡକାଇ ଆଣି ଝଡ଼ାଫୁଙ୍କା କରାଇଲେ । ହାତରେ ତେଉଁଶଆ ଓ ଗଳାରେ ତାବିଜ ପିନ୍ଧାଇଲେ ।"

ମହର୍ଷି ସୂତ କହିଲେ—"ମୁନିଗଣ ! ଅଖିଳ ବ୍ରହ୍ମାଣ୍ଡକୁ ଯେ ରକ୍ଷା କରନ୍ତି ଆଜି ସେହି ଭଗବାନ ଭକ୍ତବାତ୍ସଲ୍ୟ ଦେଖାଇବାକୁ ଯାଇ ଭୂତ ପ୍ରେତଙ୍କ ବାଧାରୁ ରକ୍ଷା ପାଇବା ପାଇଁ ତେଉଁଶଆ ପିନ୍ଧୁଛନ୍ତି । ନନ୍ଦାଦି ଗୋପାଳ ଓ ଯଶୋଦାଦି ଗୋପୀଙ୍କୁ ଆନନ୍ଦ ଦେବା ପାଇଁ ସେ ଏହିପରି ଚେଷ୍ଟା ବ୍ୟକ୍ତ କରୁଛନ୍ତି । ଗୋପବାସୀ ଗୋପୀ ଗୋପାଳଙ୍କ ମୁହଁରେ କେବଳ ରାମକୃଷ୍ଣଙ୍କ କଥା ହିଁ ଆଲୋଚିତ ହେଲା । ସମସ୍ତେ ତାଙ୍କର ବାଲ୍ୟଲୀଳା ଆନନ୍ଦରେ କହିବାକୁ ଓ ଶୁଣିବାକୁ ଲାଗିଲେ ; ତେଣୁ ନିରନ୍ତର ଭଗବତ୍ ଚର୍ଚ୍ଚା କରୁଥିବାରୁ ଗୋପବାସୀ କେହି କେବେ କୌଣସି ପ୍ରକାର ସାଂସାରିକ ଦୁଃଖ କଷ୍ଟ ଅନୁଭବ କଲେ ନାହିଁ । ଶ୍ରୀକୃଷ୍ଣ ମଧ୍ୟ ନିଜର ସାଙ୍ଗ ସାଥୀଙ୍କୁ ଆନନ୍ଦ ଦେବାପାଇଁ ବାଳକସୁଲଭ ନାନାପ୍ରକାର ଲୀଳା କରିବାକୁ ଲାଗିଲେ । ବର୍ତ୍ତମାନ ସେହି ଲୀଳାରୁ କିଛି କହୁଛି, ଆପଣମାନେ ମନ ଦେଇ ଶୁଣନ୍ତୁ ।"

### ଛପ୍‌ପୟ

ଯେହି ଦୁଷ୍ଟନଙ୍କୁ ମାରି ସବନଙ୍କୁ ସୁଖ ଅତି ଦେଗୋ ।
କରେଁ ଅଲୌକିକ କର୍ମ ସୁଯଶ ଜିହି ଜଗମହିଁ ଲେଗୋ ॥
ମାରି ନ କୋଇ ସକେ ଜିହୀ ଅସୁରନଙ୍କୁ ମାରେ ।
ଜୀତେ ସବକୁଁ ସଦା ନହୀଁ ବୈରିନିତେ ହାରେ ॥
ଯୋ ନିତ ହରି ବଳରାମକୀ, କହେ ସୁନେ ଯୋରେଁ କଥା ।
ରମେଁ ରହେ ମନ ଉନହିଁ, ମହିଁ ହୋହି ନ ସାଂସାରିକ ବ୍ୟଥା ॥



## ଶ୍ରୀକୃଷ୍ଣଙ୍କ ବାଲ୍ୟଲୀଳା

ଏବଂ ବିହାରୈଃ କୌମାରୈଃ କୌମାରଂ ଜହତୁର୍ବ୍ରଜେ ।
ନିଲାୟନୈଃ ସେତୁବନ୍ଧୈର୍ମର୍କଟୋତ୍ପ୍ଲବନାଦିଭିଃ ॥

(ଶ୍ରୀ ଭା ୧୦ ସ୍କ, ୧୧ ଅ, ୫୯ ଶ୍ଳୋକ)

## ଛପ୍‌ପୟ

ଖେଳେଁ ବନମଧ୍ୟେ ଶ୍ୟାମ ଏକ ବାଳକଙ୍କୁ ବନାଏଁ ।
ଅପର ବାଳ ସବ ଭାଗି ଜାହିଁ ଇତ ଉତ ଛପିକାଏଁ ।।
ଖୋଲେ ତବ ଓହି ଆଁଖି ଜାଇ ଖୋଜେ ବାଳକକୁଁ ।
ବନ ଜାଏଁ ତେ ଶ୍ୟାମ ଖୋଜି ଛୁଏଁ ଓହି ଜିନକୁଁ ।।
ଆଁଖମିଚୌନୀ ଖେଲ ପୁନ, ଖେଲେଁ ପୁଲବନ୍ଧନ କରେ ।
କପି କଚ୍ଛନ ବୈଠକ କରେଁ, ତାଲ ଠୋକ ଜବହୁଁ ଲରେଁ ।।

ସମୟ ଅନୁସାରେ ଯେପରି ସଙ୍ଗୀତର ରାଗ ବନ୍ଧା ହୋଇଥାଏ, ସେହିପରି ଅବସ୍ଥା ଅନୁସାରେ ବିଭିନ୍ନ ପ୍ରକାର ଖେଳ ଖେଳିବାର ମଧ୍ୟ ବ୍ୟବସ୍ଥା ଥାଏ । ଯେଉଁ ଅବସ୍ଥା ଓ ପରିସ୍ଥିତିର ବାଳକ ତା'ର ଖେଳ ମଧ୍ୟ ସେହି ଅବସ୍ଥା ଅନୁରୂପ ହୋଇଥାଏ । ବଡ଼ ବଡ଼ ସହର ବଜାରରେ ଯେଉଁ ବାଳକମାନେ ରହନ୍ତି ସେମାନଙ୍କ ପରିସ୍ଥିତି ଅନୁସାରେ ଖେଳର ବ୍ୟବସ୍ଥା କରାଯାଇଥାଏ । ନଦୀକୂଳର ବିସ୍ତୃତ ବନଭୂମିରେ ବାସ କରୁଥିବା ପିଲାମାନଙ୍କ ଖେଳ ସେହି ସ୍ଥାନ ଅନୁରୂପ ହୋଇଥାଏ । ଗ୍ରାମର ପିଲାମାନେ ଆନନ୍ଦ ଉଲ୍ଲାସ ମଧ୍ୟରେ ଏଣେତେଣେ ଦୌଡ଼ିବା ସଙ୍ଗେ ସଙ୍ଗେ ଗଛରେ ଚଢ଼ି ଓ ଲତା ଉହ୍ଲାଡ଼ରେ ଲୁଚି ଖେଳନ୍ତି । ନଗରର ସୀମିତ ପରିବେଶ ମଧ୍ୟରେ ରହୁଥିବା ପିଲାମାନେ ଗାଁ ଗହଳର ପିଲାଙ୍କ ପରି କିପରି ଖେଳିପାରିବେ ? ଗ୍ରାମର ପିଲାମାନଙ୍କ ଖେଳରେ ନଗରବାସୀ ବାଳକମାନଙ୍କ ତୁଳନାରେ ଶ୍ରମ ଓ ସାହସର ଆଧିକ୍ୟ ଦେଖାଯାଏ ।

ମହର୍ଷି ସୂତ କହିଲେ—"ମୁନିଗଣ ! ଶ୍ରୀକୃଷ୍ଣ ଯେପରି କ୍ରୀଡ଼ାପ୍ରିୟ ସେହିପରି କୌତୁକପ୍ରିୟ ଥିଲେ । ସେ କୁମାରମାନଙ୍କ ସହିତ ଖେଳିବା ଜାଣିଥିଲେ ଏବଂ କୁମାରୀମାନଙ୍କ ସହିତ ବି ଖେଳିପାରୁଥିଲେ । କେବଳ ସେତିକି ନୁହେଁ, ଯୁବକ ଓ ଯୁବତୀମାନଙ୍କ ସହିତ ନାନାପ୍ରକାର କ୍ରୀଡ଼ା କରିବା ସଙ୍ଗେ ସଙ୍ଗେ ସଜ୍ଜନମାନଙ୍କ ସହିତ ଯଥୋଚିତ ଲୀଳା କରୁଥିଲେ ଏବଂ ରାକ୍ଷସ ଓ ଅସୁରମାନଙ୍କୁ ଖେଳମାଧ୍ୟମରେ ହିଁ ନିପାତ କରୁଥିଲେ । ନିଜ ଆତ୍ମୀୟସ୍ୱଜନଙ୍କ ମେଳରେ ସାଧାରଣ ପିଲାପରି ଆଚରଣ ଦେଖାଉଥିଲେ ତ କେବେ କେବେ ଖେଳ ମାଧ୍ୟମରେ ଜଗଦ୍‌ଗୁରୁ ପାଲଟି ଯାଉଥିଲେ । ଖେଳିବା ମଧ୍ୟରେ ସେ କେତେବେଳେ ନିଜେ ସାରଥି ହୋଇ ରଥ ଚଳାଉଥିଲେ ତ କେତେବେଳେ ଅସଂଖ୍ୟ ରାଜାଙ୍କୁ ପରସ୍ପର ମଧ୍ୟରେ ଯୁଦ୍ଧ ଲଗାଇ ଦେଇ ବିନାଶ କରୁଥିଲେ । ନିଜର ପୁତ୍ର ପୌତ୍ରାଦିଙ୍କୁ ମଧ୍ୟ ସେ ଖେଳ ଖେଳିବା ମଧ୍ୟରେ ସଂହାର କରୁଥିଲେ । ଶ୍ରୀକୃଷ୍ଣଙ୍କର ସବୁକଥା ଖେଳ ମଧ୍ୟରେ ହିଁ ଘଟେ । ସେ ଯେତେବେଳେ ଯେପରି ଇଚ୍ଛା କରନ୍ତି ସେହିପରି ଖେଳ

ଲଗାଇ ଦିଅନ୍ତି ; ତେଣୁ ସେ ସର୍ବଦା ପ୍ରସନ୍ନ ଥାଅନ୍ତି ଓ ଖେଳକୁ ଖେଳ ବୋଲି ଭାବନ୍ତି । ଆମେ ଖେଳକୁ ଯଥାର୍ଥ ଘଟଣା ବୋଲି ବିଚାର କରି ଦୁଃଖିତ, ଚିନ୍ତିତ ଓ ଅଶାନ୍ତ ହୋଇପଡ଼ୁ । ଯଦି ଜୀବନର ସମସ୍ତ ଘଟଣାକୁ ଖେଳ ବୋଲି ଭାବନ୍ତୁ, ତେବେ ଚିନ୍ତା ଓ ଶୋକର ପ୍ରଶ୍ନ ଉଠନ୍ତା ନାହିଁ ।''

ବାଛୁରୀଙ୍କୁ ନେଇ ଚରାଇବାକୁ ଯିବା ଥିଲା ଶ୍ରୀକୃଷ୍ଣଙ୍କର ଏକ ବାହାନା । ଭାଗ୍ୟ ଅନୁସାରେ ବାଛୁରୀଗୁଡ଼ିକ ଯାହା ଖାଇବା କଥା ତାହା ପ୍ରତିଦିନ ସେମାନଙ୍କୁ ମିଳିବ । ଏଥିରେ ବିଚିତ୍ରତା କିଛି ନାହିଁ; କିନ୍ତୁ ଶ୍ରୀକୃଷ୍ଣଙ୍କୁ ତ ଲୀଳା ରଚନା କରିବାକୁ ହେବ । ହସିବା, ଖେଳିବା ଓ ସୁଖୀ ହେବା ବ୍ୟତୀତ ଯେ ବିଧିବିଧାନ ରଚନା କରୁଛି ସେ କରୁ, ଯେ ଚିନ୍ତିତ ହେବା ପାଇଁ ଇଚ୍ଛା କରୁଛି, ସେ ଚିନ୍ତା କରୁଥାଉ, ସେଥିରେ କି ଯାଏ । ଶ୍ରୀକୃଷ୍ଣଙ୍କର କେତେଜଣ ସାଙ୍ଗସାଥି ମିଳିଗଲେ ହେଲା । ସେ ସେଇମାନଙ୍କ ଗହଣରେ ଆତ୍ମବିସ୍ମୃତ ହୋଇପଡ଼ନ୍ତି । ସକାଳେ ଉଠି ନିତ୍ୟକର୍ମ ସାରି ବେଶହୋଇ ବାଛୁରି ନେଇ ବଣକୁ ଗଲେ ଏବଂ ସନ୍ଧ୍ୟାବେଳକୁ ବାଛୁରୀଙ୍କୁ ନେଇ ଫେରିଆସିଲେ ଓ ଘରେ ଖିଆପିଆ କଲେ ।

ଯମୁନାର ମନୋରମ ତୀରଭୂମିରେ ସବୁଜ ଘାସପୂର୍ଣ୍ଣ ସ୍ଥାନରେ ବାଛୁରୀଙ୍କୁ ଛାଡ଼ିଦେଲେ ଏବଂ ସାଙ୍ଗମାନଙ୍କ ସହିତ ଖେଳ ଆରମ୍ଭ କଲେ । କୁମାର ଅବସ୍ଥାକାଳୀନ ଅନେକ ପ୍ରକାର ଖେଳ ସେ ଖେଳୁଥିଲେ । ଶ୍ରୀକୃଷ୍ଣ ଯେପରି ଅନନ୍ତ ତାଙ୍କର ଲୀଳା ମଧ୍ୟ ସେହିପରି ଅନନ୍ତ । କୌଣସି ପ୍ରାଣୀ ତାଙ୍କ ଲୀଳାର ଅନ୍ତ ପାଇପାରିବ ନାହିଁ । ଗଙ୍ଗାଯାତ୍ରୀମାନେ ଯେପରି ନିଜ ନିଜର ଛୋଟପାତ୍ରରେ ଗଙ୍ଗାଜଳ ନେଇ ଘରକୁ ଫେରନ୍ତି ଓ ତାକୁ ହିଁ ଗଙ୍ଗା ବୋଲି ଭାବି ପବିତ୍ର ମନେ କରନ୍ତି ଓ ପୂଜା କରନ୍ତି ସେହିପରି ଶ୍ରୀହରିଙ୍କ ଅନନ୍ତଲୀଳା ମଧ୍ୟରୁ ମାତ୍ର କେତୋଟି ଏଠାରେ ଉପସ୍ଥାପନ କରୁଛୁ ।

ଶ୍ରୀକୃଷ୍ଣ ବଣକୁ ଯାଇ ଗୋପବାଳକମାନଙ୍କ ସହିତ ଲୁଚକାଳି ଖେଳ ଖେଳନ୍ତି । ଏହି ଖେଳ ନାନାପ୍ରକାରେ ଖେଳାଯାଇଥାଏ । ପ୍ରଥମେ ପିଲାମାନେ ଏକ ଧାଡ଼ିରେ ଠିଆ ହୋଇଯାଆନ୍ତି । ଜଣେ ନିଜର ଏକ ଅଙ୍ଗୁଳିକୁ ଚିହ୍ନ ଦେଇ ସମସ୍ତଙ୍କୁ ଅଙ୍ଗୁଳି ଛୁଇଁବା ପାଇଁ ଡାକେ । ଯେ ଚିହ୍ନ ଦିଆଯାଇଥିବା ଅଙ୍ଗୁଳି ଧରେ ସେ ଚୋର ହୁଏ । କୋଟିଏ ସ୍ଥାନରେ ଦାଇଗାର କଟାଯାଏ । ଯେ ଚୋର ହୋଇଥାଏ ତା' ଆଖିକୁ ବନ୍ଦ କରି କଣେ ଦାଇ ପାଖରେ ରହେ ଓ ଅନ୍ୟମାନେ ଯାଇ ନିଜ ସୁବିଧା ଅନୁସାରେ ଲୁଚି ରହନ୍ତି । ଯେ ଆଖି ବନ୍ଦ କରି ଧରିଥାଏ ସେ ବେଳେବେଳେ ହାତ ନ ଦେଇ ଦେଇଠିଆ ହୋଇ ରହେ ଏବଂ ଯେ ବଡ଼ୁକି କାର୍ଯ୍ୟ କରେ ତା'ର ଖେଳବଡ଼ୁକି କାର୍ଯ୍ୟ ଅନ୍ୟମାନଙ୍କୁ ଜଣାଇଦିଏ ।

ପିଲାମାନେ ଲୁଚିଯିବା ପରେ ଚୋର ଆଖିକୁ ଖୋଲି ଦିଆଯାଏ । ସେ ଏଣେତେଣେ ଯାଇ ଲୁଚିଥିବା ପିଲାମାନଙ୍କୁ ଖୋଜେ । ସେ ଦୂରେ ଅଛିକୁ ଦେଲେ ଅନ୍ୟ ଅଡ଼େ ଲୁଚିଥିବା

ପିଲାମାନେ ସୁଯୋଗ ଦେଖି ଦାଉ ପାଖକୁ ଚାଲିଆସନ୍ତି । ଯଦି ଦାଉ ଛୁଇଁବା ପୂର୍ବରୁ ଚୋରମାନେ ଅନ୍ୟ କୌଣସି ବାଳକକୁ ଛୁଇଁଦିଏ, ତେବେ ସେହି ବାଳକ ଚୋର ହୁଏ ଓ ସେ ମୁକ୍ତ ହୋଇଯାଏ । ଯଦି ସେ କାହାରିକୁ ଛୁଇଁ ନ ପାରେ ଏବଂ ସମସ୍ତେ ଆସି ଦାଉ ଛୁଇଁ ଦିଅନ୍ତି ତେବେ ଦ୍ୱିତୀୟ ବାର ତାକୁ ଚୋର ହେବାକୁ ପଡ଼େ । ଏହି ଖେଳ ଆଉ ଏକପ୍ରକାର ଖେଳାଯାଏ । ପିଲାମାନେ ଦୁଇଭାଗ ହୋଇଯାଆନ୍ତି ଏବଂ ଦୁଇ ପକ୍ଷରେ ଜଣେ ଜଣେ ପ୍ରଧାନ ହୁଅନ୍ତି । ଦୁଇ ପ୍ରଧାନ ଏକ ରେଖା ଟାଣି ଦୁଇପାଖରେ ଠିଆ ହୁଅନ୍ତି ଏବଂ କିଏ କାହା ପକ୍ଷରେ ରହିବାକୁ ଇଚ୍ଛୁକ ବୋଲି ଅନ୍ୟମାନଙ୍କୁ ଡାକନ୍ତି । ପିଲାମାନେ ନିଜ ରୁଚି ଅନୁସାରେ ଦୁଇଭାଗ ହୋଇଯାଆନ୍ତି । ଦୁଇପକ୍ଷ ଖେଳର ସ୍ଥିତି ବିଷୟରେ ସିଦ୍ଧାନ୍ତ ନିଅନ୍ତି । ଗୋଟିଏ ସ୍ଥାନରେ ଏକ ଚିହ୍ନ ଦିଆଯାଇ କେଉଁ ପକ୍ଷ ଲୁଚିବ ଓ କେଉଁ ପକ୍ଷ ଖୋଜିବ ତାହା ସ୍ଥିର ହୁଏ । ଏହାପରେ ଗୋଟିଏ ପକ୍ଷ ନିଜ ନିଜର ଆଖି ଭଲଭାବରେ ବନ୍ଦ କରି ରଖନ୍ତି ଏବଂ ଭଲଭାବରେ ବନ୍ଦ ହୋଇଛି କି ନାହିଁ ତାହା ଉଭୟ ପକ୍ଷରୁ ଥିବା ଯାଞ୍ଚକାରୀ ପିଲାମାନେ ଦେଖିସାରି ଠିକ୍ ଅଛି ବୋଲି ଘୋଷଣା କରିବା ପରେ ଅନ୍ୟ ପିଲାମାନେ ଲୁଚିବାକୁ ଯାଆନ୍ତି । ସେମାନେ ଲୁଚିଯିବା ପରେ ଯାଞ୍ଚକାରୀ ପିଲାମାନେ ଆଖି ଖୋଲି ଖୋଜିବା ପାଇଁ ଆଦେଶ ଦିଅନ୍ତି । ଆଖି ବନ୍ଦ କରି ବସିଥିବା ପିଲାମାନେ ଅନ୍ୟପକ୍ଷକୁ ଖୋଜନ୍ତି । ଯଦି ଅନ୍ୟପକ୍ଷର ସମସ୍ତେ ଧରାପଡ଼ନ୍ତି ତେବେ ସେମାନେ ଆଖି ବନ୍ଦ କରି ରହନ୍ତି ଓ ପୂର୍ବପକ୍ଷର ପିଲାମାନଙ୍କୁ ଖୋଜନ୍ତି । ଏ ଖେଳ ବହୁ ସମୟ ଧରି ଚାଲେ । ସଂସାରରେ ଜୀବ ଏହିପରି କାଳ କାଳ ଧରି ଘୂରିବୁଲୁଛି । କେତେକାଳ ହେଲା ସେ ଭଗବାନଙ୍କୁ ଖୋଜୁଛି ତା'ର କଳନା କରିହେବ ନାହିଁ । ଲୁଚୁପୂଚ ଖେଳ ଅନନ୍ତକାଳ ଧରି ଚାଲିଛି । କେତେବେଳେ କେଉଁ ଭାଗ୍ୟବାନ ତାଙ୍କ ଦେଖା ପାଇଥାଏ ତ ହତଭାଗ୍ୟ ଅତି ନିକଟରେ ଥିଲେ ବି ତାଙ୍କୁ ଦେଖିପାରେ ନାହିଁ । ଲୁଚୁପୂଚ ଖେଳ ଏହିପରି ଅନେକ ପ୍ରକାରର ଅଛି ।

ଘୋଡ଼ା ଖେଳ ବି ଏକପ୍ରକାର ଖେଳ । ପିଲାମାନେ ଦଶ ଦଶ ଅଥବା ପାଞ୍ଚ ପାଞ୍ଚ ହୋଇ ଦୁଇଭାଗ ହୋଇ ଏହି ଖେଳ ଖେଳନ୍ତି । ସେମାନଙ୍କ ମଧ୍ୟରୁ ଜଣେ ଘୋଡ଼ା ହୁଏ ଓ ଆଉ ଜଣେ ତା' ଉପରେ ଚଢ଼େ । ଘୋଡ଼ା ଆଗରେ ଦୁଇଟି ଇଟା ରଖାଯାଏ । ଘୋଡ଼ା ଉପରେ ସବାର ଅର୍ଥାତ୍ ଚଢ଼ିଥିବା ପିଲାଟି ସେହି ଇଟା ପାଖରେ ଓହ୍ଲାଇ ଏକ ଛଗ ପଢ଼ି ଘୋଡ଼ା ଚାରିପାଖରେ ବୁଲେ । ଏକ ନିଃଶ୍ୱାସରେ ଛଗଟି ପଢ଼ିବାକୁ ପଡ଼େ । ନିଃଶ୍ୱାସ ଛାଡ଼ିବା ବା ଗାହା ଭୁଲିବାମାତ୍ରେ ପୁଣି ଘୋଡ଼ା ଉପରେ ଯଦି ଚଢ଼ି ନ ପାରେ ତେବେ ସେହି ପିଲା ଘୋଡ଼ା ହୁଏ ଏବଂ ଘୋଡ଼ା ହୋଇଥିବା ପିଲା ତା' ଉପରେ ଚଢ଼େ । ସେ ଘୋଡ଼ା ହୋଇଥିବା ପିଲାର ଆଖି ବନ୍ଦ କରି ରଖେ । ତା' ଆଗରେ ଥିବା ଇଟାକୁ ଅନ୍ୟ ପିଲା ଟଣାଟଣି କରେ । ସବାର ହୋଇଥିବା ପିଲା ପଚାରେ— କିଏ ଇଟା ଟାଣୁଛି ? ଯଦି

ଘୋଡ଼ା ହୋଇଥିବା ପିଲା ଇଟା ଟାଣୁଥିବା ପିଲାର ନାମ କହିଦିଏ ତେବେ ଇଟା ଟାଣୁଥିବା ପିଲା ଘୋଡ଼ା ହୁଏ । ଯଦି ଠିକ୍‌ଭାବେ ସେ ନାମ କହି ନ ପାରେ ତେବେ ଘୋଡ଼ା ଉପରେ ବସିଥିବା ପିଲା ଓହ୍ଲାଇ ଆସି ତରଟି ପଡ଼ି ପଡ଼ି ଏକ ନିଃଶ୍ୱାସରେ ଓ ଏକ ପାଦରେ ଡେଇଁ ଡେଇଁ ଘୋଡ଼ା ଚାରିପାଖ ବୁଲେ ଓ ଗୀତ ଗାଇ ଗାଇ ପୂର୍ବରୁ ପୁଣି ଘୋଡ଼ା ଉପରେ ବସେ । ଯେ ପର୍ଯ୍ୟନ୍ତ ପିଲାର ନାମ ଠିକ କରି କହି ନ ଥାଏ ସେ ପର୍ଯ୍ୟନ୍ତ ଏହିପରି ଖେଳ ଚାଲେ । ଏହି ଖେଳରେ ଶ୍ରୀକୃଷ୍ଣ ମଧ୍ୟ ବହୁବାର ଘୋଡ଼ା ହୋଇଛନ୍ତି ; କିନ୍ତୁ ତାଙ୍କ ପିଠି ଏପରି ଚକ୍‌କଣ ଥିଲା ଯେ, ଯେଉଁ ପିଲା ତାଙ୍କ ପିଠି ଉପରେ ବସୁଥିଲା ସେ ଖସିପଡ଼ି ଯାଇ ତଳେ କଚାଡ଼ି ହୋଇ ପଡ଼ୁଥିଲା । ସେତେବେଳେ ଅନ୍ୟମାନେ କହୁଥିଲେ—ଏ ଘୋଡ଼ା ଭଲ ନୁହେଁ । ସବାରକୁ ତଳେ କଚାଡ଼ି ଦେଉଛି ସବୁବେଳେ ।

ସେତୁବନ୍ଧ ଲୀଳା ଏକପ୍ରକାର ଖେଳ । ଏଥିରେ ପିଲାମାନେ ପଛକୁ ପଛ ନଇଁପଡ଼ି ଜଣେ ଜଣକର ଅଣ୍ଟାକୁ ଧରନ୍ତି । ଜଣେ ପଛଆଡ଼ୁ ପ୍ରତ୍ୟେକର ବେକ ଉପରେ ପାଦ ଦେଇ ଏ ମୁଣ୍ଡରୁ ସେ ମୁଣ୍ଡକୁ ଯାଏ । ଯଦି ସେ ପଡ଼ିଯାଏ ତେବେ ସେ ଆଗକୁ ଯାଇ ନଇଁପଡ଼ି ରହେ ଓ ଅନ୍ୟ ଜଣେ ପଛଆଡ଼ୁ ପୂର୍ବପରି ଏ ମୁଣ୍ଡରୁ ସେ ମୁଣ୍ଡକୁ ଯାଏ । ଯଦି କୌଣସି ପିଲା ନିର୍ବିଘ୍ନରେ ଏ ପାଖରୁ ସେ ପାଖକୁ ଚାଲିଯାଏ ତେବେ ସେ ଅଲଗା ରହେ । ଗୋପବାଳକମାନଙ୍କ ସହିତ ଶ୍ରୀକୃଷ୍ଣ ଏହି ଖେଳ ଅତି ଆନନ୍ଦରେ ଖେଳୁଥିଲେ । ସେହିପରି ଡାଳ ମାଙ୍କଡ଼ ଆଉ ଏକପ୍ରକାର ଖେଳ । ଏଥିରେ ପିଲାମାନେ ଗଛରେ ଚଢ଼ି ଡାଳକୁ ଡାଳ ଡେଇଁ ଲୁଚିବା, ଫଳ ତୋଳିବା, ପକ୍ଷ ଛୁଡ଼ାଇବା ପ୍ରଭୃତି କାର୍ଯ୍ୟ କରନ୍ତି । ଗଛରେ ଚଢ଼ି ପିଲାମାନେ ଆଉ ଏକପ୍ରକାର ଖେଳ ଖେଳନ୍ତି । ଏହି ଖେଳରେ ଜଣେ ଚୋର ନିର୍ବାଚିତ ହୁଏ ଓ ଚୋର ବାଳକ ସହିତ ସମସ୍ତେ ଗଛରେ ବସିରହନ୍ତି । ପ୍ରଧାନ ବାଳକ ଏକ ଦଣ୍ଡ (ଗୁଳିଟ ବାଡ଼ି) ଖୁବ୍ ଦୂରକୁ ଫିଙ୍ଗିଦିଏ । ଚୋର ବାଳକଟି ଗଛରୁ ଓହ୍ଲାଇ ପାଣ୍ଟଟି ଆଣିବାକୁ ଯାଏ । ସେହି ସମୟରେ ବାଡ଼ି ପଡ଼ିଥିବା ପାଖ ଗଛରେ ଥିବା ପିଲା ତଳକୁ ଆସି ବାଡ଼ିଟିକୁ ଆହୁରି ଦୂରକୁ ଫିଙ୍ଗିଦିଏ ଓ ପୁଣି ଗଛକୁ ଚଢ଼ିଯାଏ । ଯଦି ଚୋର ବାଡ଼ି ଆଣିବାକୁ ଗିବାବେଳେ ତଳେ ଥିବା ଅନ୍ୟ ବାଳକକୁ ଛୁଇଁ ଦିଏ ତେବେ ସେହି ବାଳକ ଚୋର ହୁଏ । ଏହି ଖେଳରେ ଚୋର ହୋଇଥିବା ବାଳକକୁ ବହୁତ ଦୌଡ଼ିବାକୁ ପଡ଼େ ଓ ଅନ୍ୟମାନଙ୍କୁ ଗଛରୁ ତଳକୁ ଓ ପୁଣି ଗଛକୁ ଚଢ଼ିବାକୁ ପଡ଼େ । ଏହି ଖେଳରେ ଶ୍ୟାମସୁନ୍ଦର ଥିଲେ ସବୁଠୁ ପ୍ରବୀଣ । ସେ ଏତେ ଶୀଘ୍ର ଗଛକୁ ଚଢ଼ି ପାରୁଥିଲେ ଓ ଗଛରୁ ଗଛକୁ ଡେଇଁ ପଡ଼ୁଥିଲେ ଯେ ତାଙ୍କୁ ଚୋର କରିବା ସହଜ ହେଉ ନ ଥିଲା ।

ଶ୍ରୀକୃଷ୍ଣ ନିଜର ସାଙ୍ଗ ଗୋପାଳ ବାଳକମାନଙ୍କୁ ନେଇ ଆଉ ଏକପ୍ରକାର ଖେଳ ଖେଳୁଥିଲେ । ସେହି ଖେଳରେ ପିଲମାନେ ଏକ ଗୋଲାକାର ଚକପରି ଲାଗି ଲାଗି ବସିଯିବା ପରେ ମଝିରେ ଜଣେ ବଡ଼ପିଲା ବସେ । ସେ ପିଲମାନଙ୍କ ହାତଗୁଡ଼ିକୁ ନିଜର ତର୍ଜନୀ

ଆଙ୍ଗୁଳରେ ଶୀଘ୍ର ଶୀଘ୍ର ଛୁଇଁଯାଏ ଏବଂ ଇଟିକଲି ମିଟିକଲି ଫୁଟିଗଲା କାଇଁଚ, ଭ୍ରମର ଅମର ନାଲି ପଇଁଚ ଇତ୍ୟାଦି ଗୀତ ଗାଇଥାଏ । ଗୀତ ଗାଇ ସାରିବା ସଙ୍ଗେ ସଙ୍ଗେ ପିଲାମାନେ ଏକ ସମୟରେ ହାତ ଉପରକୁ ଟେକନ୍ତି ଏବଂ ପରସ୍ପରର କାନକୁ ଧରନ୍ତି । ଶେଷରେ ଟଣାଟଣି ହୋଇ ପିଲାମାନେ ଏଣେତେଣେ ପଳାଇ ଯାଆନ୍ତି ଓ ଖେଳ ସରିଯାଏ । ସାଙ୍ଗପିଲାମାନଙ୍କ ସହିତ ଶ୍ରୀକୃଷ୍ଣ ଏହିପରି ଘୋଡ଼ାଖେଳ, ଘୋଡ଼ୀଖେଳ, ବଲ୍‌ଖେଳ, ନଗରନଗଣ୍ଡି ଖେଳ, ଲୁଚକାଳିଖେଳ, ଚୀଲଖେଳ, କବାଡ଼ୀଖେଳ, ଷ୍ଟେରଖେଳ ପ୍ରଭୃତି ନାନାପ୍ରକାର ଖେଳ ଖେଳି ଜନମନରଞ୍ଜନ କରୁଥିଲେ ।

ଧିପଗୁଡ଼ୁ ଆଉ ଏକପ୍ରକାର ଉତ୍କୃଷ୍ଟଖେଳସ୍ଥ ଖେଳ । ଜହ୍ନ ରାତିରେ ପିଲାମାନେ ଏକାଠି ହୋଇ ଗଛ ଗୁଳି ବା ଘର ଗୁଳିରେ ଏହି ଖେଳ ଖେଳନ୍ତି । ଏଥିରେ ଚନ୍ଦ୍ରଜ୍ୟୋତ୍ସ୍ନାକୁ ନଦୀ, ଗଛ ବା ଘରଗୁଳିକୁ ନଦୀକୂଳ ରୂପେ କଳ୍ପନା କରାଯାଏ । ଜଣେ ପିଲା କାଳ୍ପନିକ କୁମ୍ଭୀର ହୁଏ । ପିଲାମାନେ ଜହ୍ନ ଆଲୁଅକୁ ଗାଧୋଇବା ଲୁଗା ଧୋଇବା ପ୍ରଭୃତି କାମର ଅଭିନୟ କରନ୍ତି ଏବଂ କୁମ୍ଭୀର ହୋଇଥିବା ପିଲା ସେମାନଙ୍କୁ ଧରିବା ପାଇଁ ଦୌଡ଼ା ଦୌଡ଼ି କରେ । ସେ ଧରିବା ପାଇଁ ଯିବାମାତ୍ରେ ଅନ୍ୟମାନେ ଗୁଳିରେ ଲୁଚିଯାନ୍ତି । ସତେ ଯେପରି ଜଳରୁ ସ୍ଥଳକୁ ଆସିଗଲା ପରି ସମସ୍ତେ ଅନୁଭବ କରନ୍ତି ; କିନ୍ତୁ ଜହ୍ନ ଆଲୁଅରେ ଯେଉଁ ପିଲାକୁ କୁମ୍ଭୀର ହୋଇଥିବା ପିଲା ଛୁଇଁ ଦିଏ ସେ ପିଲା କୁମ୍ଭୀର ହୁଏ । ରାତିରେ ବହୁ ସମୟ ପର୍ଯ୍ୟନ୍ତ ଏ ଖେଳ ଚାଲିଥାଏ । ବୃନ୍ଦାବନରେ ପବିତ୍ର ଭୂମିରେ ଶୁକ୍ଳପକ୍ଷ ରାତିରେ ଶ୍ରୀକୃଷ୍ଣ ପିଲାମାନଙ୍କ ସହିତ ଏହି ଖେଳ ଖେଳୁଥିଲେ । ମା’ ଯଶୋଦା ଆସି ଯେତେବେଳେ ଡାକ ପକାନ୍ତି ସେତେବେଳେ ଶ୍ରୀକୃଷ୍ଣ ଘରକୁ ଫେରନ୍ତି ।

ମହର୍ଷି ସୂତ କହିଲେ—“ମୁନିଗଣ ! କେତେ କହିବି । ପିଲାମାନଙ୍କ ଖେଳର କିଛି ଠିକ୍ ଠିକଣା ନାହିଁ । ସବୁଦିନେ କିଛି ନା କିଛି ନୂଆ ଖେଳ ଖେଳିବା ସଙ୍ଗେ ସଙ୍ଗେ ଶ୍ରୀକୃଷ୍ଣ ଏଗାରବର୍ଷକାଳ ବ୍ରଜରେ ବାଲ୍ୟଲୀଳା କରିଥିଲେ । ବଲ୍, ଗୋଲି, ଗୋଟି ଡାବୁଲ, ଲୁଚକାଳି ଆଦି ନାନାପ୍ରକାର ଖେଳ । ସେ ସବୁର ଗଣନା ଓ ବର୍ଣ୍ଣନା କରିବା ସମ୍ଭବ ନୁହେଁ । ଏଠାରେ ମାତ୍ର କେତୋଟି ଖେଳର ସୂଚନା ଦେଲି । ଶ୍ରୀକୃଷ୍ଣ ବୃନ୍ଦାବନର ବିଭିନ୍ନ କୁଞ୍ଜରେ ବୁଲି ବୁଲି ନାନାପ୍ରକାର ଲୀଳା କରିବାକୁ ଲାଗିଲେ । ଅନନ୍ତ କୋଟି ବ୍ରହ୍ମାଣ୍ଡର ଏକମାତ୍ର ଅଧୀଶ୍ୱର ଶ୍ରୀକୃଷ୍ଣ ବୃନ୍ଦାବନର ପରମପାବନ ଭୂମିରେ ଏହିପରି ଖେଳରେ ନିଜର ଐଶ୍ୱର୍ଯ୍ୟକୁ ଭୁଲିଗଲେ । ପ୍ରାକୃତ ବାଳକ ପରି ସେ ଖେଳୁଥିଲେ । ତାଙ୍କ ବାଲ୍ୟଲୀଳା ପ୍ରସଙ୍ଗକ୍ରମେ ମୁଁ ପରେ ବର୍ଣ୍ଣନା କରିବି ।”

## ଛପ୍ପୟ

କବହୁଁ ସେନ ସଜାଇ ବଜାୟୁ କର ଗାଲେଁ ଘଣ୍ଟା ।
କବହୁଁ ଖେଲେଁ ଖେଲ ଉଡ଼ୁଡ଼ୁ ଚୁଳୀ ଡଣ୍ଡା ॥
ଅଛାଥାପି ଊର ମଲ୍ଲ୍କା ଘୋଡ଼ା ଖନଖନ ।
ଢୈଢୈଡଣ୍ଡା ଚୀଲଝପଟ୍ଟା ଅଟକନ-ବଟକନ ॥
ଜା ଛପ୍ପନକେ ପେଡ଼ପୈ, ଢେଂ ଢୈ ଦୁନୀ ଢୈ ।
ଖେଲେଁ ହର ସବ ମିଲ କହେଁ—କୃଷ୍ଣଚନ୍ଦ୍ରକୀ ଜୈ ॥



## ବାଳବିନୋଦ

କ୍ୱଚଦ୍ବନାଶାୟ ମନୋ ଦଧଦ୍ ବ୍ରଜାତ୍
ପ୍ରାତଃ ସମୁତ୍ଥାୟ ବୟସ୍ୟବତ୍ସପାନ୍ ।
ପ୍ରବୋଧୟନ୍ଶୃଙ୍ଗରବେଣ ଚାରୁଣା
ବିନିର୍ଗତୋ ବତ୍ସପୁରଃସରୋ ହରି ॥
(ଶ୍ରୀ ଭା ୧୦ ସ୍କ, ୧୨ ଅ, ୧ ଶ୍ଳୋକ)

## ଛପ୍ପୟ

ଏକ ଦିବସକୀ ବାତ ସୁନହୁ ହରି ନିଶ୍ଚୟ କୀହ୍ନୋଁ ।
କାଲ୍ହି କଲେଉ କରେଁ ବନହୁଁ ଜିୟ ଆୟସୁ ଦୀହ୍ନୋ ॥
ଲଡ୍ଡୂ, ପୂଆ, ଖୀର, ଜଲେବି, ପେଡ଼ା, ପପ୍ଡ଼ୀ ।
ହଲୁଆ, ମୋହନଥାର, ସମେସେ, ଫେଁନୀ ରବଡ଼ୀ ॥
ସବ ସାମଗ୍ରୀ ସଜିକେ, ଶ୍ୟାମ ସଖନ ରଙ୍ଗ ଚଲ ଦୟେ ।
ଗ୍ୱାଲ ବାଲ ସବଇ ସଜେ, ବନ ଶୋଭା ନିରଖତ ଭୟେ ॥

ତିନୋଟି କାରଣରୁ ଭୋଜନ କରାଯାଏ । ତାହା ହେଲା, ପେଟପୁରାଇବା ପାଇଁ, ସମ୍ବନ୍ଧରକ୍ଷା ଓ ପ୍ରେମ ପାଇଁ । ପେଟ ପୁରାଇବା ପାଇଁ ପଶୁ ପକ୍ଷୀ, କୀଟ ପତଙ୍ଗ, ମନୁଷ୍ୟ

ସମସ୍ତେ ଭୋଜନ କରୁଛନ୍ତି । ପ୍ରତ୍ୟେକ ଜୀବଠାରେ ଭୋଜନ ପ୍ରବୃତ୍ତି ଥାଏ । ସେଥିପାଇଁ ଆଗ୍ରହ ବା ଶିକ୍ଷାର ଆବଶ୍ୟକତା ପଡ଼େନାହିଁ । ସମ୍ବନ୍ଧ ରକ୍ଷା ଦୃଷ୍ଟିରୁ ଯେଉଁ ଭୋଜନ କରାଯାଏ ତାହା ଇଚ୍ଛା ବା ଅନିଚ୍ଛା ଉପରେ ନିର୍ଭର କରେନାହିଁ । କାରଣ, ବ୍ରତ, ବିବାହାଦି କାର୍ଯ୍ୟରେ ଭୋଜନ ନ କଲେ ସମ୍ବନ୍ଧୀୟ ଲୋକେ ଖରାପ ଭାବନ୍ତି । ପ୍ରେମବଶତଃ ଆଉ ଏକପ୍ରକାର ଭୋଜନ କରିବାକୁ ଲୋକ ବାଧ୍ୟହୁଏ । ପ୍ରେମରେ ପ୍ରସ୍ତୁତ ଓ ପରିବେଶିତ ଭୋଜନରେ ଦାତା ଓ ଭୋକ୍ତା ଉଭୟ ପରମ ସୁଖ ଅନୁଭବ କରନ୍ତି । ଅନେକ ବ୍ୟକ୍ତି ସମ୍ମିଳିତଭାବେ ଏକତ୍ର ବସି ଭୋଜନ କରିବାରେ ଯେଉଁ ଆନନ୍ଦ ମିଳେ ତାହା ଅବର୍ଣ୍ଣନୀୟ । ବାସ୍ତବତଃ ଦେଖିବାକୁ ଗଲେ ସ୍ୱାଦ ଖାଦ୍ୟ ବସ୍ତୁରେ ନୁହେଁ ପ୍ରେମରେ ଥାଏ । ପ୍ରେମ ବିନା ଛପନ ପ୍ରକାର ଖାଦ୍ୟ ବିଷତୁଲ୍ୟ ମନେହୁଏ ଏବଂ ପ୍ରେମରେ ଶାଗଭାତ ମଧ୍ୟ ଅମୃତତୁଲ୍ୟ ଆନନ୍ଦଦାୟକ ହୁଏ । ସେଥିପାଇଁ ଭଗବାନ ରାଜା ଦୁର୍ଯ୍ୟୋଧନର ରାଜକୀୟ ମିଷ୍ଟାନ୍ନ ଭୋଜନ ଛାଡ଼ି ବିଦୁର ଘରେ ଶାଗଭାତ ଖାଇ ପରମ ସନ୍ତୋଷ ଲାଭ କରିଥିଲେ ।

ସମଭାବାପନ୍ନ ପାଞ୍ଚଦଶ ମିଶି ଏକତ୍ର ଭୋଜନ କଲାବେଳେ ଯେ କୌଣସି ପ୍ରକାର ଖାଦ୍ୟବସ୍ତୁ ପ୍ରେମଭାବବଶତଃ ଅତୀବ ମଧୁର ଓ ପରମ ରୁଚିକର ମନେହୁଏ । ସେଥିପାଇଁ ଅନେକ କ୍ଷେତ୍ରରେ କେତେକ ମିଳିମିଶି ଭୋଜିଭାତର ଆୟୋଜନ କରନ୍ତି । ଯେଉଁମାନେ ଏପରି ପଙ୍‌କ୍ତି ଭୋଜନରେ ଭାଗ ନେଇନାହାନ୍ତି ସେମାନଙ୍କ ଜୀବନ ବୃଥା । କାରଣ ଗଧ, ଘୁଷୁରି, କୁକୁର ତ ପେଟ ପୂରାଇ ଖାଉଛନ୍ତି । କୁଆ ବି ତା' ଅଣ୍ଟରେ ନିଜର ପେଟ ପାଳି ଶହ ଶହ ବର୍ଷ ବଞ୍ଚି ରହୁଛି । ସେଥିରେ ଆଉ ବିଶେଷତ୍ୱ କ'ଣ ଅଛି ?

ମହର୍ଷି ସୂତ କହିଲେ—"ମୁନିଗଣ ! ଦିନେ ଶ୍ରୀକୃଷ୍ଣ ଭାବିଲେ—ଆମେ ସମସ୍ତେ କାଲି ସକାଳେ ନିତ୍ୟକର୍ମ ସାରି କିଛି ନ ଖାଇ ବଣକୁ ଯିବା । ମଧ୍ୟାହ୍ନ ଭୋଜନ ପାଇଁ କିଛି ଅଧିକ ଖାଦ୍ୟ ନେଇଯିବା । ଖେଳୁ ଖେଳୁ ଭଲକରି ଭୋକ ଲାଗିଲେ ସମସ୍ତେ ଏକତ୍ର ବସି ଭୋଜନ କରିବା । ଏହା ବଡ଼ ଆନନ୍ଦପ୍ରଦ ହେବ । ଏହାଭାବି ଶ୍ରୀକୃଷ୍ଣ ସନ୍ଧ୍ୟାବେଳେ ସମସ୍ତଙ୍କୁ କହିଲେ—ଭାଇମାନେ ! କାଲି ସକାଳେ କେହି ନିଜ ନିଜ ଘରୁ ଜଳଖିଆ ଖାଇ ଆସିବ ନାହିଁ । ଏବେ ଯାଇ ମା'ମାନଙ୍କୁ କହିଦିଅ, କାଲି ଆମର ବଣଭୋଜି ହେବ । ଆମ ପାଇଁ ଯାହା ଖାଦ୍ୟ ଦେବ ତାକୁ ଶିକାରେ ରଖିଦିଅ । ଆମେ ବଣକୁ ଯାଇ ସମସ୍ତେ ମିଳିମିଶି ଖାଇବୁ ।"

ସମସ୍ତେ ଆନନ୍ଦିତ ହୋଇ କହିଲେ—"ବଢ଼ିଆ ହେବ । କାଲି ଆମେ ବଣଭୋଜି କରିବା । ଆମେ ସବୁ ଘରୁ ଭଲ ଭଲ ଖାଦ୍ୟ ନେଇ ଆସିବା । ଏହା କହି ଶ୍ରୀକୃଷ୍ଣଙ୍କଠାରୁ ଅନୁମତି ନେଇ ପିଲାମାନେ ଯେ ଯାହାର ଘରକୁ ଗଲେ ଓ ନିଜ ନିଜର ମା'ଙ୍କୁ କହିଲେ—"ମା, କହ୍ନେଇ ଭାଇ କହିଛି କାଲି ଆମର ବଣଭୋଜି ହେବ । କାଲିପାଇଁ ତୁ

ମୋତେ ଭଲ ଭଲ ଖାଦ୍ୟବସ୍ତୁ ଦେବୁ । ଏପରି ଖାଦ୍ୟ ଦେବୁ ତାହା ଯେପରି କହ୍ନେଇ ଘରଠାରୁ ବଢ଼ିଆ ହେବ ।”

ପୁଅର କଥାଶୁଣି ମା’ କହିଲେ—“ବାପ ! ଆମେ ତାଙ୍କ ସହିତ କପରି ସମାନ ହେବୁ ? ସେ ହେଲେ ରାଜା ଆଉ ଆମେ ହେଲୁ ସାଧାରଣ ଲୋକ ; ତେଣୁ ଆମର ସାମର୍ଥ୍ୟ ଯାହା ତାହା ହିଁ କରିଦେବି । ଏହା କହି ମା’ମାନେ ଯଥାଶକ୍ତି ନାନାପ୍ରକାର ମିଷ୍ଟାନ୍ନ କରିବାରେ ଲାଗିପଡ଼ିଲେ । କେତେକ ଘିଅରେ ତିଆରି କଲେ । କେତେକ ମାଛ ଅନ୍ଧାରରୁ ଉଠି ଖାଦ୍ୟ ପ୍ରସ୍ତୁତ କରିଦେଲେ । ଖାଦ୍ୟ ପଦାର୍ଥ ପତରରେ ଗୁଡ଼ାଇ ଶିକାରେ ରଖିଦେଲେ ।”

ମନରେ ଅତ୍ୟଧିକ ଆନନ୍ଦ ହେବାରୁ ଶ୍ରୀକୃଷ୍ଣଙ୍କ ଆଖିରେ ନିଦ ନାହିଁ । ସାଙ୍ଗମାନଙ୍କ ସହିତ ଏକାନ୍ତରେ ମିଳନ ଓ ଉତ୍ତମ ଭୋଜନ ଆଶାରେ କାହାର ଆଖିକୁ ନିଦ ଆସିବ ? ଶ୍ରୀକୃଷ୍ଣ ବଡ଼ି ସକାଳୁ ଉଠିପଡ଼ିଲେ । ସେତେବେଳକୁ କେହି ଉଠି ନ ଥାନ୍ତି । ପିଲାମାନେ ତ ଟିକିଏ ବିଳମ୍ବରେ ଉଠନ୍ତି ; ତେଣୁ ଶ୍ରୀକୃଷ୍ଣ ପ୍ରତ୍ୟେକଙ୍କ ଘର ଦୁଆର ମୁହଁରେ ଠିଆହୋଇ ଉଚ୍ଚସ୍ୱରରେ ଶିଙ୍ଗା ଫୁଙ୍କିବାକୁ ଲାଗିଲେ । ଶିଙ୍ଗାଧ୍ୱନି ଶୁଣି ପିଲାମାନେ ଉଠିପଡ଼ିଲେ । ହଠାତ୍ ନିଦରୁ ଉଠି ପଡ଼ିଥିବାରୁ ବାଉଳା ହୋଇ ପିଲମାନେ ନିଜ ନିଜ ମା’ଙ୍କୁ ପଚାରିଲେ—“କିଏ ଶିଙ୍ଗା ବଜାଉଛି ?”

ଏହା ଶୁଣି ଶ୍ରୀକୃଷ୍ଣ କହିଲେ—“ଆରେ, ମୁଁ ବଜାଉଛି । ତୁମେ ସବୁ ଶୋଇଥିବ ନା ଉଠିବ ? ସୂର୍ଯ୍ୟ ଉଦୟ ହେବାକୁ ବସିଲେଣି । ଆଜି ସୂର୍ଯ୍ୟୋଦୟ ପୂର୍ବରୁ ଆମକୁ ବଣରେ ପହଞ୍ଚିବାକୁ ପଡ଼ିବ । ଉଠିଆସ, ଚାଲ ।”

ପିଲାମାନେ କହିଲେ—“ଆମେ ଟିକିଏ ମୁହଁ ଧୋଇଦେଉ ।”

ଶ୍ରୀକୃଷ୍ଣ କହିଲେ—“ଆରେ ଚାଲ, ମୁହଁ ସେଇଠି ଧୋଇବା । ଯମୁନାରେ ସବୁକିଛି ହୋଇପାରିବ । ଚାଲ ।”

ଶ୍ୟାମସୁନ୍ଦର ସମସ୍ତଙ୍କୁ ଏହିପରି କହି ଏକାଠି କଲେ । ବଳଦେବଙ୍କୁ ସାଙ୍ଗରେ ନେଲେ ନାହିଁ । କାରଣ, ଭୋଜିଭାତରେ ହସଖୁସିରେ ବଡ଼ସାନ ଏକାଠି ହେଲେ ସଙ୍କୋଚ ଆସେ, ମୁକ୍ତକଣ୍ଠରେ କଥାବାର୍ତ୍ତା ବା ହସଖୁସି ହୋଇପାରେ ନାହିଁ; କିନ୍ତୁ ସମବୟସ୍କମାନେ ଏକାଠି ହେଲେ ବିଗ୍ରହ ଓ ପ୍ରକୃତ ସମାନ ସୁଖ ଓ ଆନନ୍ଦ ମିଳେ ; ତେଣୁ ବନଭୋଜି ଲୀଳାରେ ବଳଦେବଙ୍କୁ ସାମିଲ କରିଗଲେ ନାହିଁ । ଶ୍ରୀକୃଷ୍ଣ ଶିଙ୍ଗା ବଜାଇବାରୁ ସମସ୍ତେ ଶିଙ୍ଗା ବଜାଇଲେ । ତା’ର ଅର୍ଥ ହେଲା ଆମେ ବାଛୁରିଙ୍କୁ ଖୋଲି ଦେଲୁଣି । ଏହାପରେ ଦଳ ଦଳ ବାଛୁରିଙ୍କୁ ଆଗରେ ଅଡ଼େଇ ସମସ୍ତେ ଗୋଠରୁ ବଣ ଆଡ଼କୁ ବାହାରି ପଡ଼ିଲେ । ବ୍ରଜପୁରରୁ ବାଛୁରିଙ୍କ ସାଙ୍ଗରେ ଯାଉଥିବା ଗୋପାଳବାଳକମାନଙ୍କର ଶୋଭା ଅପୂର୍ବ

ରମଣୀୟ । ସେହି ରମଣୀୟ ଦୃଶ୍ୟକୁ ପ୍ରତ୍ୟକ୍ଷ ଭାବେ ଅଥବା ଭାବରାଜ୍ୟରେ ଯେ ଦେଖିନାହିଁ ତାହାର ଜୀବନ ବୃଥା ।

ମା'ମାନେ ରାତରେ ଶୋଇବାବେଳେ ପିଲାମାନଙ୍କ ଆଖିରେ ମୋଟା ମୋଟା କଜ୍ଜଳଗାର ଲଗାଇ ଦେଉଥିଲେ । ସକାଳେ ଉଠିବାମାତ୍ରେ ପିଲାମାନେ ମୁହଁ ନ ଧୋଇ ସେହିପରି ବାହାରିଗଲେ । ଆଖିକୋଣରେ ମେଞ୍ଚାଏ କରି ଲେଞ୍ଚରା ଲାଗିଥାଏ । ସମସ୍ତଙ୍କ ମୁଣ୍ଡରେ ଥାଏ ଚକ୍‌ମକ୍ କରୁଥିବା ଟୋପି । କେତେକ ମୁଣ୍ଡରେ ପଗଡ଼ି ବାନ୍ଧିଥାନ୍ତି । ସମସ୍ତେ ବିଭିନ୍ନ ରଙ୍ଗର ଲୁଗା ଓ ଜାମା ପିନ୍ଧିଥାନ୍ତି । ସମସ୍ତଙ୍କ ଧୋତି ଆଣ୍ଠୁଯାଏ ଲମ୍ବିଥାଏ । କମରରେ ପେଟି ବନ୍ଧାଥାଏ । ହାତରେ ବାଡ଼ି ଓ ଫେଟାର ଗୋଟିଏ ପାଖରେ ବଇଁଶୀ ଓ ଅନ୍ୟପାଖରେ ଶିଙ୍ଗା ବନ୍ଧା ହୋଇଥାଏ । ଗୋଟିଏ ହାତରେ ବାଡ଼ି ଓ ଅନ୍ୟ ହାତରେ ଖାଦ୍ୟବସ୍ତୁ ଥିବା ଶିକା ଏବଂ ଶିକାଟି ପିଠି ଉପରେ ଥାଏ । ସମସ୍ତେ ହସଖୁସି ହୋଇ ବାଡ଼ି ହଲେଇ ବାଛୁରିଙ୍କ ପଛେ ପଛେ ଚାଲିଥାନ୍ତି ।

ଶ୍ରୀକୃଷ୍ଣ ନଟବର ବେଶରେ ସଜ୍ଜିତ ହୋଇଥାନ୍ତି । ମସ୍ତକରେ ମୟୂରଚନ୍ଦ୍ରିକା, କାନରେ କୁଣ୍ଡଳ ଓ ନାକରେ ଗୁଣା ଶୋଭାପାଉଥାଏ । ନାକର ବୁଲାକ ହଲି ହଲି ବାରମ୍ବାର ଓଠକୁ ସ୍ପର୍ଶ କରୁଥାଏ । ବଡ଼ ବଡ଼ କମଳସଦୃଶ ଚଣାଳ ଓ ବାଙ୍କ ନୟନରେ ମୋଟା ମୋଟା କଜ୍ଜଳରେଖା ଲଗା ଯାଇଥାଏ । କଟୀରେ ପୀତବସନ ଟାଣକରି ବନ୍ଧା ଯାଇଥାଏ ଓ ସେଥିରେ ବଂଶୀ ଓ ଶିଙ୍ଗା ଖୋସି ଦେଇଥାନ୍ତି । କଳା କଳାଟି ବାଡ଼ିରେ ଝୁଲାଇ କାନ୍ଧ ଉପରେ ରଖିଥାନ୍ତି ଏବଂ ଖାଦ୍ୟ ଥିବା ଶିକାଟିର ଓଜନ ଅଧିକ ହେବାରୁ ତାକୁ ବାଛୁରି ଉପରେ ଲଦି ଦେଇଥାନ୍ତି । ଏହିପରି ଭାବରେ ଶ୍ରୀକୃଷ୍ଣ ନିଜର ସାଙ୍ଗମାନଙ୍କୁ ସାଙ୍ଗରେ ନେଇ ଗୋଷ୍ଠରୁ ବନ ଅଭିମୁଖେ ପ୍ରସ୍ଥାନ କଲେ । ହଜାର ହଜାର ଗୋପାଳ ବାଳକ ତାଙ୍କୁ ଅନୁଗମନ କରୁଥିଲେ । ମଧୁମଙ୍ଗଳ ବ୍ୟତୀତ କେହି ସେମାନଙ୍କ ମଧ୍ୟରୁ ପାଞ୍ଚବର୍ଷରୁ ଅଧିକ ବୟସର ବାଳକ ନ ଥିଲେ । ଶ୍ରୀକୃଷ୍ଣଙ୍କର ବାଛୁରି ଥିଲେ ଅସଂଖ୍ୟ । ସମସ୍ତେ ନିଜ ନିଜର ବାଛୁରିଙ୍କୁ ଶ୍ରୀକୃଷ୍ଣଙ୍କ ବାଛୁରି ସହିତ ମିଶାଇ ଦେଇଥିଲେ । ସମସ୍ତେ ଯେତେବେଳେ ଶ୍ରୀକୃଷ୍ଣଙ୍କ ଅନୁଗତ ସେତେବେଳେ ବାଛୁରିଗୁଡ଼ିକ ପୃଥକ୍ କିପରି ରହିବେ ?

ବଣରେ ପହଞ୍ଚି ବାଛୁରିକୁ ଚରିବାପାଇଁ ଛାଡ଼ିଦେଲେ । ଯମୁନାକୂଳକୁ ଯାଇ ସମସ୍ତେ ନିଜ ନିଜର ନିତ୍ୟକର୍ମରେ ଲାଗିପଡ଼ିଲେ । ହାତ ମୁହଁ ଧୋଇ କୋମଳ ବାଲୁକା ବିସ୍ତୃତ କ୍ରୀଡ଼ାସ୍ଥଳକୁ ସମସ୍ତେ ଗଲେ । ଶ୍ରୀକୃଷ୍ଣ ସୂର୍ଯ୍ୟୋଦୟ ପୂର୍ବରୁ ବାହାରି ଆସିଥିଲେ ; ତେଣୁ ସୂର୍ଯ୍ୟଦେବତା ତାଙ୍କର ବାଲ୍ୟଲୀଳା ଦେଖିବା ଅଭିପ୍ରାୟରେ ଶୀଘ୍ର ଉଦୟ ହୋଇଗଲେ । ଗୋପାଳ ବାଳକମାନଙ୍କର ଖେଳ ଆରମ୍ଭ ହୋଇଗଲା । ପିଲାମାନଙ୍କ ମଧ୍ୟରେ ବିଭିନ୍ନ ପ୍ରକୃତିର ପିଲା ଥାଆନ୍ତି । କିଏ ହସକୁରା ତ କିଏ କାନ୍ଦୁରା । କିଏ

ଚତୁର ତ କଏ ବୋକା । କଏ ଗମ୍ଭୀର ତ କଏ ଚଞ୍ଚଳ । କଏ ଗୁମସୁମ ପ୍ରକୃତିର ତ କଏ ବାଚାଳ । କଏ ବେଶୀ ଖାଏ ତ କଏ ଅଳ୍ପ ଖାଏ । ଯେ ଅଳ୍ପ କଥାରେ ରାଗିଯାଏ, ଅଭିମାନ କରେ ପିଲମାନେ ତାକୁ ବେଶୀ ଚିଡ଼ାନ୍ତି । ଯେପରି ପିଲ ସମସ୍ତଙ୍କର ଉପହାସର କାରଣ ହୁଏ ।

ଶ୍ରୀକୃଷ୍ଣଙ୍କର କାମ ହେଲି ସମସ୍ତଙ୍କୁ ପ୍ରସନ୍ନ ରଖିବା, ହସାଇବା ଓ ସୁଖୀ କରାଇବା । କାନ୍ଦିବା କ'ଣ ସେ ଜାଣନ୍ତି ନାହିଁ । ଯାହାର ମା' ମରିଯାଏ ସେ ପିଲା କାନ୍ଦେ; କିନ୍ତୁ ତାଙ୍କ ମା' ତ ଅମର । ସେ କେବେହେଲେ ମରନ୍ତି ନାହିଁ ; ତେଣୁ ତାଙ୍କର କାନ୍ଦିବା ଦରକାର କ'ଣ ? ସେ ସବୁବେଳେ ହସୁଥାନ୍ତି । ସମସ୍ତଙ୍କ ମନୋବାଞ୍ଛା ପୂରଣ କରନ୍ତି । ମା'ର ସର୍ବଦା ଇଚ୍ଛାଥାଏ, ନିଜର ପୁଅକୁ ସୁନ୍ଦର ସୁନ୍ଦର ବେଶ ପୋଷାକରେ ସଜାଇବା ପାଇଁ ଏବଂ ଭଲ ଭଲ ଖାଦ୍ୟ ଖୁଆଇବା ପାଇଁ । ଶ୍ରୀକୃଷ୍ଣ ମା'ଙ୍କର କୌଣସି ଅନୁରୋଧକୁ ଅସ୍ୱୀକାର କରନ୍ତି ନାହିଁ । ସେ ବେଶ ପୋଷାକ ପିନ୍ଧନ୍ତି ଓ ବିଭିନ୍ନ ପ୍ରକାର ଖଟା, ମିଠା, ଲୁଣିଆ, ପିତା ଖାଦ୍ୟ ପଦାର୍ଥ ଖାଆନ୍ତି ଏବଂ ମା'ଙ୍କୁ ଆନନ୍ଦିତ କରନ୍ତି । ମା' ଘରୁ ମଣି, ମୁକ୍ତା, ସୁନା, କାଚ ଇତ୍ୟାଦି ବିଭିନ୍ନ ଅଳଙ୍କାର ଆଣି ସଜେଇ ଶ୍ରୀକୃଷ୍ଣଙ୍କୁ ବଣକୁ ପଠାନ୍ତି । ବଣରେ ମଧ୍ୟ ସାଙ୍ଗ ପିଲାମାନେ ତାଙ୍କୁ ନାନାପ୍ରକାର ବେଶରେ ସଜାନ୍ତି । ପିଲାମାନେ ନାନାପ୍ରକାର ଫୁଲ, ପତ୍ର, ଫଳ ସଂଗ୍ରହ କରି ଆଣି ଶ୍ରୀକୃଷ୍ଣଙ୍କ ସର୍ବାଙ୍ଗମଣ୍ଡନ କରନ୍ତି । ଆମ୍ବପତ୍ର, ତୁଳସୀପତ୍ର, ବେଲପତ୍ର ପ୍ରଭୃତି ମଧ୍ୟରୁ ବୃନ୍ଦାବନରେ କେଉଁ ପତ୍ରର ଅଭାବ ଅଛି ? ସେଠାରେ ବାରମାସ ବସନ୍ତ ବିହୁଥାଏ । ତେଣୁ କୌଣସି ପତ୍ର, ଫଳ ବା ଫୁଲର ଅଭାବ ନ ଥାଏ । ଭଗବାନ ଶ୍ରୀକୃଷ୍ଣଙ୍କୁ ଯେତେବେଳେ ଯାହା ଭଲ ଲାଗେ ପିଲାମାନେ ତାହା ହିଁ ଆଣି ତାଙ୍କୁ ସଜାନ୍ତି । ସେଥିରେ ଶ୍ରୀକୃଷ୍ଣ ଆପତ୍ତି ବା ସଂକୋଚ କରନ୍ତି ନାହିଁ । ସେବକ ଯେପରି ସଜେଇ ଆନନ୍ଦ ଲଭ କରେ ସେ ସେପ୍ରକାର ସାଜସଜ୍ଜାକୁ ଆଦରି ନିଅନ୍ତି ।

ଶ୍ରୀକୃଷ୍ଣଙ୍କ ସାଜସଜା ପରେ ହସ ଖେଳ ଆରମ୍ଭ ହୋଇଯାଏ । ଶ୍ରୀକୃଷ୍ଣ କାହାର ଟୋପିକୁ ଧରି ଫିଙ୍ଗିଦିଅନ୍ତି ତ କାହା ଟୋପିକୁ ବଲ୍ କରି ଅନ୍ୟ ପିଲା ପାଖକୁ ଫିଙ୍ଗି ଦିଅନ୍ତି । ସମସ୍ତେ ହସି ହସି ଗଡ଼ିଯାଆନ୍ତି । କଏ କାହା ଲୁଗାରେ ଅନ୍ୟର ଲୁଗାକୁ ଗଣ୍ଠି ପକାଇଦିଏ । ଆଉ ତାକୁ ଡାକିଦିଏ । ସେ ପିଲା ଉଠି ଆସିବାବେଳେ ତା' ପଛରେ ଏକ ଲାଙ୍ଗୁଡ଼ ଅଛି ବୋଲି ସମସ୍ତେ ଚିତ୍କାର କରନ୍ତି ଓ ହସନ୍ତି । କଏ ଯାଇ ପାଣି ପିଉଥିବାବେଳେ ଅନ୍ୟ ଜଣେ ଯାଇ ତାକୁ ପାଣି ଭିତରକୁ ପେଲିଦିଏ । ବିଚରାର ଲୁଗା ଓଦା ହୋଇଯାଏ । ଏହାଦେଖି ସମସ୍ତେ ହସନ୍ତି । କେହି ଧୀରେ ଧୀରେ ଆସି ଚୁପ୍‌ଚାପ୍ ବସିଥିବା ପିଲାର ପଛପଟରେ ରହି ତା'ର ଦୁଇ ଆଖିକୁ ଦୁଇ ହାତରେ ବନ୍ଦ କରିଦିଏ ।

ଯାହାର ଆଖି ବନ୍ଦଥାଏ ସେ ଅନୁମାନ କରି ଆଖି ବନ୍ଦ କରିଥିବା ପିଲାର ନାମ କୁହେ । ଯେ ପର୍ଯ୍ୟନ୍ତ ଠିକ୍ ନାମ କହି ନ ପାରେ ସେ ପର୍ଯ୍ୟନ୍ତ ଆଖି ତା'ର ବନ୍ଦ ରହେ; କିନ୍ତୁ ଠିକ୍ ନାମ ଯେତେବେଳେ ସେ କହି ଦିଏ ସେତେବେଳେ ତା'ର ଆଖି ଖୋଲି ଦିଆଯାଏ । ଯଦି କହି ନ ପାରେ ତେବେ ସେ ହାରି ମାନିଯାଏ ଓ ତା'ରି ଆଖି ଖୋଲିଦିଆଯାଏ ଏବଂ ସମସ୍ତେ ହସି ହସି ଗଡ଼ିଯାଆନ୍ତି ।

ଯେ ଟିକ୍କା ପ୍ରକୃତିର ପିଲା ଥାଏ ଚୁପ୍‌ଚାପ୍ ଅନ୍ୟ ପିଲା ତା'ର ଶିକାକୁ ଲୁଚାଇ ଦିଅନ୍ତି । ସେ ଶିକା ଖୋଜିଲେ ତାକୁ ଅନ୍ୟମାନେ ଏଠି ଅଛି, ସେଠାରେ ଅଛି ବୋଲି କହନ୍ତି । ଶେଷରେ ନିଜର ଶିକା ନ ପାଇ ଯେତେବେଳେ ସେ କାନ୍ଦିବାକୁ ଲାଗେ ସେତେବେଳେ ତା'ର ଶିକା ତାକୁ ଦେଇଦିଅନ୍ତି । କିଏ ଚୁପ୍‌କିରି ଆସି ଅନ୍ୟ ପିଲାର ପିଠିରେ ଗୁପୁଡ଼େ ମାରିଦିଏ । କିଏ ମାରିଲା ବୋଲି ପଚାରିଲେ ଯେ ନାମ କହି ନ ପାରିଲେ ଅନ୍ୟମାନେ ହସନ୍ତି । କିଏ ଗୋଟି ଖେଳେ ତ କେତେକ ଗୋଟିଓ୍ୱାଚୁଲପୁଅ ଖେଳନ୍ତି । ଏହିପରି ନାନାପ୍ରକାର ଖେଳରେ ପିଲାମାନେ ନିଜକୁ ଭୁଲିଯାଆନ୍ତି ।

ମହର୍ଷି ସୂତ କହିଲେ—ମୁନିଗଣ ! ଗୋପବାଳକମାନେ ଶ୍ରୀକୃଷ୍ଣଙ୍କ ସହିତ ମିଶି ଯମୁନାକୂଳରେ କୋମଳ ବାଲୁକା ପ୍ରାନ୍ତରରେ ଏହିପରି ନାନାପ୍ରକାର ଲୀଳାଖେଳା କରିବାକୁ ଲାଗିଲେ । ଖେଳରେ ମନ ବୁଝିଗଲା ପରେ ବନଶୋଭା ଦେଖିବାପାଇଁ ସମସ୍ତେ ବାହାରିଲେ । ବର୍ତ୍ତମାନ ସଂକ୍ଷେପରେ ବନଶୋଭାର ବର୍ଣ୍ଣନା କରୁଛି, ଆପଣମାନେ ମନଦେଇ ଶୁଣନ୍ତୁ ।"

## ଛପ୍‌ପୟ

ମୁଖ କରି ହରି କୀ ଓର ପ୍ରେମ ତେଁ ବୈଠେ ଆଗେ ।
ଅବ ସବ ସୁଖ ତେଁ ବୈଠି ହଁସୀ କଛୁ କରିବେ ଲଗେ ॥
କୋଇ ବାଳକ ବସ୍ତ୍ର କସ୍ତ୍ର ତେଁ ବାଁଧେ ଚୁପ୍‌କେ ।
କାହ୍ନୁ କୀ ଲୈ ଛାକ୍ ସଖା କଛ ପେଡ଼ନ ଡୁବକେ ॥
ଛୀକୋ ଲୈ ଚମ୍ପତ୍ କରେ ଔର ଔର କୁଁ ଦେହୁଁ କକ ।
ଖୁଲଅଓେ୍ୱଁ ବେଓେ୍ୱଁ ସଖା ଖିଲଖିଲଇ ହଁସି ଜାଇଁ ସବ ॥



# ବନରେ ବତ୍ସଲୀଳା

ଇତ୍ଥଂ ସତାଂ ବ୍ରହ୍ମସୁଖାନୁଭୂତ୍ୟା
ଦାସ୍ୟଂ ଗତାନାଂ ପରଦୈବତେନ ।
ମାୟାଶ୍ରିତାନାଂ ନରଦାରକେଣ
ସାକଂ ବିଜହ୍ରୁଃ କୃତପୁଣ୍ୟପୁଞ୍ଜାଃ ॥

(ଶ୍ରୀ ଭା ୧୦ ସ୍କ, ୧୨ ଅ, ୧୧ ଶ୍ଳୋକ)

## ଛପ୍ପୟ

ଜୋ କନୁଆ କୁଁ ଛୁଏ ବୀର ତାହୀ କୁଁ ଜନେଁ ।
ପହୁଲେ ଜୋ ଛୁଁ ଲେଇ ବଜାଏ ଗ୍ୱାଇଙ୍କୀ ମାନେ ॥
କରହିଁ ଅନୁକରନ ଭ୍ରମର ସରସ ସ୍ୱର ଗୁନ ଗୁନ ଗାୱେଁ ।
ନାଚେଁ ଖେଲେଁ ହୁଁସେ ବାଁସୁରୀ ମଧୁର ବଜାୱେଁ ॥
ନଭମହିଁ କଛୁ ଦେଖାଇକେଁ ଜିହ୍ୱା ଜିହ୍ୱକା କହିଛୀ ବକେଁ ।
ବୋଲେ ଛଣକ ପର ଗଇ କାନ ଇନ୍ଦ୍ରପଦମହିଁ ପକେଁ ॥

ସଂସାର ଏକ କ୍ରୀଡ଼ାଭୂମି । ଜୀବ ସର୍ବଦା ସେଠାରେ ଖେଳୁଥାଏ । କାରଣ କ୍ରୀଡ଼ା ବିନା କେହି ରହି ପାରିବେ ନାହିଁ ; କିନ୍ତୁ ପାର୍ଥକ୍ୟ ହେଉଛି ଏତିକି ଯେ, ସେ ସର୍ବଦା ମରଣଶୀଳ ପ୍ରାଣୀଙ୍କ ସହିତ ଖେଳୁଛି । ଫଳରେ ବାରମ୍ବାର ଜନ୍ମ ହେଉଛି ଓ ବାରମ୍ବାର ଦୁଃଖ ଭୋଗ କରୁଛି । ଯଦି ଶାଶ୍ୱତ ସନାତନ ସଚ୍ଚିଦାନନ୍ଦ ସ୍ୱରୂପ ଶ୍ୟାମସୁନ୍ଦରଙ୍କ ସହିତ ସେ ଖେଳିବ ତେବେ ସଂସାରକୁ ବାରମ୍ବାର ଯିବାଆସିବାର ଜଞ୍ଜାଳ ଚିରଦିନ ପାଇଁ ଦୂର ହୋଇଯିବ ଏବଂ ସେ ନିଜେ ସୁଖ ସ୍ୱରୂପ ଓ ଶାଶ୍ୱତ ହୋଇଯିବ । ମର୍ତ୍ତ୍ୟଧର୍ମୀ ପ୍ରାଣୀ ସହିତ ଲୀଳାଖେଳାରେ ମାଂସ, ରକ୍ତ, ମୂତ୍ର, କଫ, ବିଷ୍ଠା, ପ୍ରଭୃତି ବସ୍ତୁ ମିଳେ । ଏହା ଅଶୁଦ୍ଧ ଖେଳ । ସେହି ଖେଳ ବିଶୁଦ୍ଧ ହୁଏ, ଯେଉଁ ଖେଳ ଶୁଦ୍ଧସ୍ୱରୂପ ଭଗବାନଙ୍କ ସହିତ ଖେଳାଯାଏ । ତାଙ୍କୁ ହିଁ ନିଜର ସଖା, ସ୍ୱାମୀ, ସୁତ ବା ପତି ମନେକରି ତାଙ୍କରି କୋଳରେ ଖେଳିବା ଉଚିତ । ଯେ ଏହିପରି ଖେଳରେ ନିମଜ୍ଜିତ ହୋଇଯାଏ ତା'ର ଜୀବନ ଧନ୍ୟ ।

ବ୍ରଜପୁରର ଗୋପାଳ ବାଳକମାନେ ଭାଗ୍ୟଶାଳୀ ଥିବାରୁ ଆନନ୍ଦଘନ ନନ୍ଦନନ୍ଦନଙ୍କ ସହିତ ଖେଳରେ ସମ୍ମିଳିତ ହୋଇ ବିଶ୍ୱରେ ପ୍ରଶଂସାର୍ହ ହୋଇ ପାରିଛନ୍ତି ।

ମହର୍ଷି ସୂତ କହିଲେ—"ମୁନିଗଣ ! ଆନନ୍ଦଚନ୍ଦ୍ର ଶ୍ରୀକୃଷ୍ଣଚନ୍ଦ୍ରଙ୍କ ସହିତ ଗୋପାଳ ବାଳକମାନେ ଯମୁନାକୂଳରେ ବସି ହସଖେଳରେ ମାତିଯାଇଥିଲେ । ଶ୍ରୀକୃଷ୍ଣ ଯେତେବେଳେ ବନର ଶୋଭା ଦେଖିବା ପାଇଁ ବାହାରିଲେ ସେତେବେଳେ ଗୋପାଳ ବାଳକମାନେ ତାଙ୍କ ପଛେ ପଛେ ଯାଇ ଏଆଡ଼େ ସେଆଡ଼େ ବୁଲିବାକୁ ଲାଗିଲେ । ବୁଲୁ ବୁଲୁ ଶ୍ରୀକୃଷ୍ଣ ଟିକିଏ ଦୂରକୁ ଚାଲିଗଲେ । ପିଲାମାନଙ୍କ ମଧ୍ୟରୁ କିଏ ପ୍ରଥମେ ଯାଇ ଶ୍ରୀକୃଷ୍ଣଙ୍କୁ ଛୁଇଁ ପାରିବ ବୋଲି ଭାବି ସମସ୍ତେ ଦୌଡ଼ିବାକୁ ଲାଗିଲେ । ଯେ ଭଲ ଦୌଡ଼ିପାରେ ସେ ପ୍ରଥମେ ଯାଇ ଶ୍ରୀକୃଷ୍ଣଙ୍କୁ ଛୁଆଁଇ ପକାଇଲା ଓ ହସି ହସି କହିଲା—ମୁଁ ପ୍ରଥମେ ଛୁଇଁଲି । ମୁଁ ପ୍ରଥମ ହେଲି । ଶ୍ରୀକୃଷ୍ଣ ତାକୁ ପ୍ରଶଂସା କଲେ । ପୁଣି ବିଭିନ୍ନ ପ୍ରକାର ଖେଳରେ ସମସ୍ତେ ମାତିଗଲେ ।"

ଶ୍ରୀକୃଷ୍ଣ ସମସ୍ତଙ୍କୁ କହିଲେ—"ଭାଇମାନେ ! ତୁମେ ସବୁ ବଂଶୀ ବଜାଅ, କିଏ କିପରି ବଂଶୀ ବଜାଉଛ ଦେଖିବା ।" ଏହା ଶୁଣିବାମାତ୍ରେ ସମସ୍ତେ ବଂଶୀ ବଜାଇବାକୁ ଲାଗିଲେ । ଶ୍ରୀକୃଷ୍ଣ କହିଲେ—"ନା, ହେଲା ନାହିଁ । ସମସ୍ତେ ଏକ ସ୍ୱରରେ ଏକ ସଙ୍ଗରେ ବଜାଅ । ସମସ୍ତଙ୍କ ସ୍ୱର ଓ ତାଳ ଏକ ହେଲେ ପ୍ରେମ ମୂର୍ତ୍ତିମାନ୍ ହୋଇ ପ୍ରକଟିତ ହେବ । ଅନେକତା ପ୍ରେମର ଘାତକ ଓ ଏକତା ସ୍ନେହର ଜନନୀ ।"

ଶ୍ରୀକୃଷ୍ଣ କଥା ଶୁଣି ସମସ୍ତେ ମଣ୍ଡଳାକାରରେ ଠିଆ ହୋଇଗଲେ ଏବଂ ଏକସ୍ୱରରେ ବଂଶୀ ବଜାଇବାକୁ ଲାଗିଲେ । ଭଗବାନ ଶ୍ରୀକୃଷ୍ଣ ସମସ୍ତଙ୍କ ମଝିରେ ଠିଆହୋଇ ବଂଶୀ ବଜାଇବା ପୂର୍ବରୁ କହିଲେ—"ସମସ୍ତେ ମୋ' ବଂଶୀର ସ୍ୱର ସହିତ ସ୍ୱର ମିଳାଇ ବଂଶୀ ବଜାଅ । ସମସ୍ତେ ତାହା ହିଁ କଲେ । ସମ୍ମିଳିତ ବଂଶୀ ଧ୍ୱନିରେ ଆନନ୍ଦର ଏକ ପ୍ରବଳଧାରା ପ୍ରବାହିତ ହେବାକୁ ଲାଗିଲା । ଜୀବ ସେପର୍ଯ୍ୟନ୍ତ ନିରାନନ୍ଦ ଅନୁଭବ କରେ ଯେ ପର୍ଯ୍ୟନ୍ତ ସେ ଭଗବାନଙ୍କ ସ୍ୱର ସହିତ ସ୍ୱର ମିଶାଇ ପାରି ନ ଥାଏ । ତା'ର ସ୍ୱର ବେସୁରା ଲାଗେ ଓ ତା'ର ରାଗ ଆଳାପରେ ମଧୁରତା ନ ଥାଏ । ନିଜର ସ୍ୱରକୁ ଯେ ଭଗବାନଙ୍କ ସ୍ୱର ସହିତ ମିଶାଇଦିଏ ଓ ତାହାରି ମାଧ୍ୟମରେ ଆତ୍ମସମର୍ପଣ କରିଦିଏ ସେ କେବେହେଲେ ନିରାନନ୍ଦ ଅନୁଭବ କରେ ନାହିଁ । ଗୋପାଳ ବାଳକମାନେ ଶ୍ରୀକୃଷ୍ଣଙ୍କ ସହିତ ମିଶି ବହୁ ସମୟ ପର୍ଯ୍ୟନ୍ତ ବଂଶୀ ବଜାଇବାରେ ଆତ୍ମବିସ୍ମୃତ ହୋଇପଡ଼ିଲେ ।

ଭଗବାନ ପୁଣି କହିଲେ—"ଆଚ୍ଛା ଭାଇମାନେ ! ଏଥର ଶିଙ୍ଗା ବଜାଇବା ।" ସମସ୍ତେ ନିଜ ନିଜ ଶିଙ୍ଗା ବାହାର କରି ଏକ ସ୍ୱରରେ ବଜାଇବାକୁ ଲାଗିଲେ । ଏହି ସମୟରେ ଶହ ଶହ ଭ୍ରମର ପୁଷ୍ପମଧୁ ପାନ କରିବା ପାଇଁ ଆସିଗଲେ । ପିଲାମାନେ ଶିଙ୍ଗା ବଜାଇବା ଭୁଲିଯାଇ ଭଅଁରମାନଙ୍କର ଗୁଞ୍ଜନ ଧ୍ୱନି ଅନୁକରଣ କଲେ । ଆମ୍ବ ଗଛ

ଡାଳରେ ଏଇ ସମୟରେ କୋଇଲି ବୋବାଇବାକୁ ଆରମ୍ଭ କଲା । କେତେକ ପିଲା ଭ୍ରମର ଗୁଞ୍ଜନ ଅନୁକରଣ କଲାବେଳେ ଆଉ କେତେକ କୋଇଲର ସ୍ୱର ଅନୁକରଣ କରିବାକୁ ଲାଗିଲେ ଓ କୁହୁ କୁହୁ ଶବ୍ଦ କଲେ । ପିଲାମାନେ ଯେତେ ଜୋର୍‌ରେ କୁକ୍ କୁକ୍ କରିବାକୁ ଲାଗିଲେ କୋଇଲି ବି ସେମିତି ଜୋର୍‌ରେ କୂଜନ କରିବାକୁ ଲାଗିଲା । କୋଇଲି ଓ ପିଲାମାନଙ୍କ ସ୍ୱର ପ୍ରାୟ ଏକପ୍ରକାର ଶୁଣାଯାଉଥିଲା । ଶ୍ରୀକୃଷ୍ଣ ବି ପିଲାମାନଙ୍କ ସହିତ ମିଶି କୁ କୁ ଶବ୍ଦ କରି ଆନନ୍ଦିତ ହେଲେ ।”

କେତେକ ପିଲା ଆକାଶରେ ଉଡ଼ିଯାଉଥିବା ପକ୍ଷୀର ଛାଇ ଅନୁସରଣ କରି ଏଣେ ତେଣେ ଦୌଡ଼ିବାକୁ ଲାଗିଲେ । ହରିଣମାନଙ୍କୁ ଅନୁସରଣ କରି କେତେ ପିଲା ଦୌଡ଼ିଲେ । କେତେକ ବଣୁଆ ଜୀବଜନ୍ତୁଙ୍କୁ ଅନୁକରଣ କରି ନାନାପ୍ରକାରେ ବୁଲିଲେ । କେତେକ ମାଛ ଅପେକ୍ଷାରେ ବସିଥିବା ବଗକୁ ଅନୁକରଣ କରି ଆଖି ବନ୍ଦ ରଖି ମିଥ୍ୟା ସମାଧିରେ ବସିଗଲେ । ଅନ୍ୟପିଲାମାନେ ପରସ୍ପର ମଧ୍ୟରେ ଅଙ୍କାତାମସା କରି ହସି ହସି ଗଡ଼ିଯାଉଥିଲେ । ନୃତ୍ୟ କରୁଥିବା ମୟୂରକୁ ଦେଖି କେତେକ ନିଜର ଲୁଗାକୁ ମେଲେଇ ନାଚିଲେ ଓ ମୟୂର ପରି ଶବ୍ଦ କଲେ । ମୟୂରର ପକ୍ଷ ଖସିପଡ଼ିଲେ ତାକୁ କେତେକ ପିଲା ଉଠେଇ ନେଇ ଶ୍ରୀକୃଷ୍ଣଙ୍କ ମୁଣ୍ଡରେ ଖୋସି ଦେଲେ । କାରଣ ମୟୂରପକ୍ଷ ଥିଲା ଶ୍ରୀକୃଷ୍ଣଙ୍କର ଅତି ପ୍ରିୟ ବସ୍ତୁ ।”

ମୁନି ଶୌନକ ପଚାରିଲେ—“ମହାଭାଗ ! ଭଗବାନ୍ ଶ୍ରୀକୃଷ୍ଣ ମୟୂର ପକ୍ଷକୁ କାହିଁକି ମସ୍ତକରେ ଧାରଣ କରୁଥିଲେ । ଏହା ତ ଯେପରି କିଛି ଉପାଦେୟ ବା ପବିତ୍ର ବସ୍ତୁ ନୁହେ । ଭଗବାନଙ୍କର ତାହା ଏତେ ପ୍ରିୟ ହେଲା କାହିଁକି ?”

ମହର୍ଷି ସୂତ କହିଲେ—“ମହାଶୟ ! ଶ୍ରୀକୃଷ୍ଣଙ୍କ କଥା ତାଙ୍କୁ ହିଁ ଜଣା । କାହାପ୍ରତି କେତେବେଳେ ତାଙ୍କ ମନରେ କୃପା ଜାତ ହେବ ତାହା କିଏ କହି ପାରିବ ? ଏପରିକି ଯାହା ଉପରେ ସେ କ୍ରୋଧ ପ୍ରକାଶ କରନ୍ତି ତା'ପ୍ରତି ତାଙ୍କର ଅଧିକ ଦୟା ଥାଏ । ମୟୂର ପକ୍ଷ ଏକ ଗୁଣକାରୀ ବସ୍ତୁ । ମୟୂର ପକ୍ଷର ଭସ୍ମ ମହୁରେ ମିଶାଇ ଖାଇଲେ ମୃଗୀରୋଗ, ଭୂତପ୍ରେତ ବାଧା ଦୂର ହୁଏ । ମୟୂର ପକ୍ଷୀଗୁଡ଼ିକ ମଧ୍ୟରେ ଶୁଦ୍ଧ ପକ୍ଷୀ । ସେ କେବେ-ହେଲେ ମୈଥୁନାସକ୍ତ ହୁଏ ନାହିଁ । ଯେତେବେଳେ ସେ ନାଚେ ସେତେବେଳେ ତା' ଆଖିରୁ ପ୍ରେମାଶ୍ରୁ ନିର୍ଗତ ହୁଏ । ସେହି ଅଶ୍ରୁପାନ କରି ମୟୂରୀ ଗର୍ଭବତୀ ହୁଏ ।”

ଦିନେ ଶ୍ରୀକୃଷ୍ଣ ଜଙ୍ଗଲରେ ବୁଲୁଥିବା ସମୟରେ ଏକ ମୟୂର ନିଜ ଦେହରୁ ଏକ ପକ୍ଷ ଖସାଇଦେଲା । ଶ୍ରୀକୃଷ୍ଣ ମୟୂରକୁ କହିଲେ—“ଭାଇ ! ତୁ ପକ୍ଷ କାହିଁକି ଖସାଇ ଦେଉଛୁ ?” କିନ୍ତୁ ମୟୂର ତାଙ୍କ କଥା ନ ଶୁଣି ତା' ବାଟରେ ବୁଲିଗଲା । ଶ୍ରୀକୃଷ୍ଣ ପକ୍ଷଟି ନେଇ ମସ୍ତକରେ ଧାରଣ କଲେ ଆଉ କହିଲେ—“ସମସ୍ତେ ଯାହାକୁ ପରିତ୍ୟାଗ କରନ୍ତି ଓ

ପାଦରେ ଆଡ଼େଇ ଯାଆନ୍ତି, ମୁଁ ତାଙ୍କୁ ଆଦର କରେ ଓ ମସ୍ତକରେ ଧାରଣ କରେ । ସେହି-ଦିନଠାରୁ ଶ୍ରୀକୃଷ୍ଣ ସବୁବେଳେ ମୟୂର ପକ୍ଷ ମସ୍ତକରେ ଧାରଣ କରୁଥିଲେ ।"

କେତେକ କହନ୍ତି—"ଶ୍ରୀକୃଷ୍ଣଙ୍କ ଗୁଣଗ୍ରାହିତାରେ ପ୍ରୀତ ହୋଇ ମୟୂର ନିଜର ପକ୍ଷ ତାଙ୍କୁ ପାରିତୋଷିକ ସ୍ୱରୂପ ଦେଇଥିଲା । ଏ ବିଷୟରେ ଏକ କାହାଣୀ ଅଛି । ଜଣେ ବଡ଼ ସଙ୍ଗୀତଜ୍ଞ ଥିଲେ । ତାଙ୍କ ସଙ୍ଗୀତର ବିଶେଷ ଖ୍ୟାତି ଥିଲା । କୌଣସି ଏକ ସମାଜ ତାଙ୍କୁ ସଙ୍ଗୀତ ଗାଇବା ପାଇଁ ନିମନ୍ତ୍ରଣ କଲେ । ତାଙ୍କ ସଙ୍ଗୀତ ଶୁଣିବା ପାଇଁ ଅନେକ ଶ୍ରୋତା ସମବେତ ହୋଇଥିଲେ । ସେହି ସଙ୍ଗୀତ ସଭାରେ ଜଣେ ବୈରାଗୀ ସାଧୁ ବସିଥିଲେ । ତାଙ୍କ ଦେହରେ ଖଣ୍ଡିଏ ମାତ୍ର କୌପୀନ ଥିଲା । ସଙ୍ଗୀତ ବିଦ୍ୟାରେ ସେ ଥିଲେ ଜଣେ ବିଶେଷଜ୍ଞ । ସଙ୍ଗୀତ ଗାୟକ ଏପରି ମଧୁର ସଙ୍ଗୀତ ପରିବେଷଣ କଲେ ଯେ ତାଙ୍କ ଗାୟକ କଳାରେ ବିରକ୍ତ ମହାତ୍ମା ମଧ୍ୟ ମୁଗ୍ଧ ହୋଇଗଲେ । ସେ ଗାୟକଙ୍କୁ କିଛି ପାରିତୋଷିକ ଦେବାପାଇଁ ଚାହୁଁଥିଲେ ; କିନ୍ତୁ ଦେଲାଭଳି କୌଣସି ଜିନିଷ ତାଙ୍କ ପାଖରେ ନ ଥିଲା । ହଠାତ୍ ତାଙ୍କର ନିଜ କୌପୀନ କଥା ମନେ ପଡ଼ିଲା । ସେ ନିଜ କୌପୀନଟି କାଢ଼ି ସଙ୍ଗୀତ ଗାୟକଙ୍କ ଉପରକୁ ପକାଇଦେଲେ । ଜଣେ ବୈରାଗୀ ମହାତ୍ମାଙ୍କର ଗୁଣଗ୍ରାହକତା ଦେଖି ସଙ୍ଗୀତ ଗାୟକ ଖୁବ୍ ଆନନ୍ଦିତ ହେଲେ । କଳାକାରର କଳା ଦେଖି ଯଦି କେହି ବିଶେଷଜ୍ଞ ପ୍ରଶଂସା କରେ ତା'ଠାରୁ ବଳି ଆଉ କିଛି ପାରିତୋଷିକ ଆଶା କରେ ନାହିଁ । ସଙ୍ଗୀତ ଗାୟକ ସମସ୍ତଙ୍କ ଆଗରେ ଠିଆ ହୋଇ ବଡ଼ ଶ୍ରଦ୍ଧାରେ ସେହି କୌପୀନଟିକୁ ଭକ୍ତି ସହକାରେ ନିଜ ମୁଣ୍ଡରେ ବାନ୍ଧିଦେଲେ । ଶ୍ରୀକୃଷ୍ଣଙ୍କଠାରେ ସେହିପରି ଏକ ଘଟଣା ଘଟିଗଲା ।"

ମୟୂର ନାଚୁଥିଲା । ଶ୍ରୀକୃଷ୍ଣ ତା'ର ନାଚ ସହିତ ତାଳ ଦେଇ ସୁସ୍ୱରରେ ବଂଶୀ ବଜାଉଥିଲେ । ବଂଶୀ ବଜାଇବାରେ ଶ୍ରୀକୃଷ୍ଣ ପ୍ରବୀଣ ଥିଲେ । ମୟୂର ଶ୍ରୀକୃଷ୍ଣଙ୍କ ବଂଶୀ ବାଦନ କଳାରେ ମୁଗ୍ଧ ହୋଇ ନିଜର ପକ୍ଷ ଉପାଡ଼ି ତାଙ୍କୁ ପୁରସ୍କାର ସ୍ୱରୂପ ଦେଇଥିଲା । ଶ୍ରୀକୃଷ୍ଣ ମୟୂରର ପାରିତୋଷିକକୁ ସମ୍ମାନ ଜଣାଇ ନିଜ ମସ୍ତକରେ ତାହା ଧାରଣ କରିଥିଲେ । ମୟୂର ମୁକୁଟ ବିଷୟରେ ପଣ୍ଡିତମାନେ ନାନାକାରଣ ଉଲ୍ଲେଖ କରନ୍ତି । କିନ୍ତୁ ମୋ ବିଚାରରେ ମୟୂର ପକ୍ଷ ଦେଖିବାକୁ ଭାରି ସୁନ୍ଦର । ମୟୂର ବଣରେ ରହେ । ବଣରେ ରହୁଥିବା ଗୋପବାଳକମାନଙ୍କୁ ମୟୂରପକ୍ଷ ଭଲ ଲାଗେ । ସେମାନେ ପକ୍ଷଗୁଡ଼ିକ ଏକାଠି କରି ଗାଈ ମହିଷକୁ ଖାଇବା ପାଇଁ ସେଥିରେ ଝାଡ଼ୁ ତିଆରି କରନ୍ତି । ଗୋପବାଳମାନେ କାନ ଓ ନାକରେ ମୟୂର କାଠି ପିନ୍ଧନ୍ତି ଏବଂ ବାଳକମାନେ ପକ୍ଷକୁ ମୁକୁଟ କରି ମସ୍ତକରେ ଧାରଣ କରନ୍ତି । ଭଗବାନ୍ ଶ୍ରୀକୃଷ୍ଣ ଗୋପବେଶ ଧାରଣ କରିଥିବାରୁ ନିଜ ଗାଈ ବାଛୁରୀଙ୍କୁ ମୟୂର ପକ୍ଷ ପିନ୍ଧାଉଥିଲେ ଏବଂ ନିଜେ ମଧ୍ୟ ପିନ୍ଧୁଥିଲେ ; ତେଣୁ ଭଗବାନ ଶ୍ରୀକୃଷ୍ଣ ନିଜର

ଐଶ୍ୱର୍ଯ୍ୟକୁ ଲୁଚାଇ ରଖିବା ପାଇଁ ମୟୂର ପକ୍ଷକୁ ଏକ ଉପାଦାନ ରୂପେ ଗ୍ରହଣ କରିଥିଲେ । ମନକୁ ମୁଗ୍ଧ କରିବା ପାଇଁ ଅଖିଳକୋଟିବ୍ରହ୍ମାଣ୍ଡ ନାୟକ ପରାତ୍ପର ଭଗବାନ କ ପ୍ରକାର ଲୀଳା କରନ୍ତି ତାହା ଜାଣିବା ସହଜ ନୁହେଁ । ତତ୍ତ୍ୱଜ୍ଞାନୀ ପୁରୁଷମାନେ ସେହି ସର୍ବାନ୍ତର୍ଯ୍ୟାମୀ ପୁରୁଷଙ୍କୁ ବ୍ରହ୍ମାନନ୍ଦ ରୂପରେ ଅନୁଭବ କରନ୍ତି । ଜ୍ଞାନୀଲୋକେ ତାଙ୍କୁ ବ୍ରହ୍ମ କହନ୍ତି ଏବଂ ନିର୍ଗୁଣ ନିରାକାର ରୂପରେ ଉପଲବ୍ଧ କରନ୍ତି । ଦାସ୍ୟଭାବ ପୋଷଣ କରୁଥିବା ବ୍ୟକ୍ତି ତାଙ୍କୁ ନିଜର ଏକମାତ୍ର ସ୍ୱାମୀ ଓ ସର୍ବଶ୍ରେଷ୍ଠ ଦେବତାରୂପେ ପୂଜା କରେ । କିଏ ତାଙ୍କୁ ବ୍ରହ୍ମ, ପରମାତ୍ମା କହେ ତ କେହି ତାଙ୍କୁ ଭଗବାନ୍ ବୋଲି କହେ । ବୃନ୍ଦାବନରେ ଗୋପବାଳକ ମେଳରେ ବୁଲୁଥିବାରୁ ସାଧାରଣ ଲୋକେ ତାଙ୍କୁ ମୋହମାୟାବଶତଃ ସାଧାରଣ ବାଳକ ରୂପେ ବିଚାର କରନ୍ତି । ସର୍ବବିଧ ଐଶ୍ୱର୍ଯ୍ୟର ଅଧୀଶ୍ୱର ହୋଇ ମଧ୍ୟ ସେ ସାଧାରଣ ବାଳକ ପରି ଆଚରଣ ଦେଖାଇ ଲୋକଙ୍କୁ ମୁଗ୍ଧ କରନ୍ତି । ପ୍ରାକୃତ ଶିଶୁ ପରି ଲୀଳା କରୁଥିଲେ ମଧ୍ୟ ତାଙ୍କର ଲୀଳା ଅନନ୍ତ ଓ ଅସୀମ । ତଥାପି ଆଉ କେତେ ଲୀଳା ବିଷୟରେ ସୂଚନା ଦେଉଛୁ । ଆପଣମାନେ ସମାହିତ ଚିତ୍ତ ହୋଇ ତାହା ଶ୍ରବଣ କରନ୍ତୁ ।”

### ଛପ୍ପୟ

ନରସିଂହା କୋ ଶବ୍ଦ କରେ ଶ୍ୱାନନ ସଙ୍ଗ ଭୁକେଁ ।<br>
ସୁନି କୋକିଲ କୀ କୂକ ତାହି ସଙ୍ଗ କୋଇ କୂକେଁ ॥<br>
କୋଇ ବନକେ ବ୍ୟାସ କଥା ବେଦନ କୀ ବାଁଚେ ।<br>
କୋଇ ପଟ ଫୈଲାଇ ବର୍ହିସି ମୋରନ ସଙ୍ଗ ନାଚେ ॥<br>
କୋଇ ଖଗ ଛାୟା ଲଖେ, ସଙ୍ଗ ସଙ୍ଗ ଦୌଡ଼େ ଦୂର ତକ ।<br>
ହଂସ ଚାଲ ଅନୁକରନ କର, କୋଇ ପହୁଁଚେ ପ୍ରଭୁ ତଲକ ॥



## ବ୍ରଜବାଳକମାନଙ୍କର ସୌଭାଗ୍ୟ

ଯତ୍ପାଦପାଂସୁର୍ବହୁଜନ୍ମକୃଚ୍ଛ୍ରତୋ<br>
ଧୃତାତ୍ମଭିର୍ଯୋଗିଭିରପ୍ୟଗମ୍ୟଃ ।<br>
ସ ଏବ ଯଦ୍ ଦୃଗ୍ବିଷୟଃ ସ୍ୱୟଂ ସ୍ଥିତଃ<br>
କିଂ ବର୍ଣ୍ଣ୍ୟତେ ଦିଷ୍ଟମତୋ ବ୍ରଜୌକସାମ୍ ॥

(ଶ୍ରୀ ଭା ୧୦ ସ୍କ, ୧୨ ଅ, ୧୨ ଶ୍ଳୋକ)

## ଛପ୍ପୟ

କୋଇ ବଗୁଲା ବନେ ଧ୍ୟାନ କୋ ଢୋଁଗ ବନାୱେଁ ।
କହୁ କହୁ ବଗୁଲା ଭଗତ ଅନ୍ୟ ଗୋପାଲ ଖଡ଼ାୱେଁ ।।
କୋଇ ବନ୍ଦର ବନେ ଚଢ଼େ ତରୁ ତାହୁ ହୁଲୱେଁ ।
କୋଇ ଖୌଁ ଖୌଁ କରେ କପିନ ଲଖି ମୁହଁ ମଟକାୱେଁ ।।
ବକରୀ ବକସ ଭେଡ଼ ବନ, ଚେଁ ମେଁ ଚେ ମେଁ କଛୁ କରେଁ ।
କର ଧୁନଃପ୍ରଭ ଧୁନ ମୂନ ଶପେ, କୋଇ ଉଁଚେ ତେଁ ଗିରେଂ ।।

ଖେଳର କୌଣସି ଅର୍ଥ ନାହିଁ । ଯେଉଁ ଖେଳର ଅର୍ଥ ଅଛି ତାହା ଖେଳ ନୁହେଁ । ଖେଳ ଖେଳ ପାଇଁ ଖେଳାଯାଇଥାଏ । ତା'ଦ୍ୱାରା ବୁଦ୍ଧି ବଢ଼େ, ଶରୀର ପୁଷ୍ଟ ହୁଏ, ବ୍ୟାବହାରିକ ଜ୍ଞାନ ବୃଦ୍ଧି ପାଏ ଓ ସାଧାରଣ ବସ୍ତୁ ସହିତ ପରିଚୟ ଘଟେ । ଏ ସବୁ ହେଲା ଖେଳର ଆନୁଷଙ୍ଗିକ ଫଳ; କିନ୍ତୁ ଖେଳ କୌଣସି ଫଳ ଆକାଙ୍‌କ୍ଷାରେ ଖେଳା ଯାଏନାହିଁ । ଖେଳର ଶ୍ରେଷ୍ଠ ଫଳ ହେଉଛି ଆନନ୍ଦଲାଭ । ଆନନ୍ଦରେ ଖେଳ କେବଳ ଖେଳାଯାଏ । ସରଳ ବାଳକ ବାଳିକାମାନେ କୌଣସି ଫଳ ପାଇବା ଇଚ୍ଛାରେ ଖେଳନ୍ତି ନାହିଁ । ପରମହଂସ ଜ୍ଞାନୀ ମୁନିମାନେ ଜ୍ଞାନ ଲାଭ କରିବା ପରେ ସମସ୍ତ ଫଳର ଅଭିଳାଷ ତ୍ୟାଗ କରି ବାଳକମାନଙ୍କ ପରି ଖେଳନ୍ତି । ଭଗବଦ୍‌ଭକ୍ତମାନେ ପ୍ରାରବ୍‌ଧ ଭୋଗ ପରେ ଯାହା ଯାହା କରନ୍ତି ତାହାକୁ ଖେଳ କୁହାଯାଏ । ଭଗବାନ ମଧ୍ୟ ଅବତାର ଗ୍ରହଣ ପରେ ଆଉ କରିବେ କ'ଣ ସେ କେବଳ ଖେଳନ୍ତି । କାରଣ ପ୍ରାଣୀମାନଙ୍କ ସୃଷ୍ଟି ଦାୟିତ୍ୱ ତ ଚତୁର୍ମୁଖ ବ୍ରହ୍ମା ବହନ କଲେ । ପାଳନ କରନ୍ତି ଚତୁର୍ଭୁଜ ବିଷ୍ଣୁ । ସେ ଅସୁରମାନଙ୍କୁ ମାରନ୍ତି ଓ ଧର୍ମସ୍ଥାପନା କରନ୍ତି । ଦୁଷ୍ଟ ନିବାରଣ ଓ ସନ୍ଥ ପରିପାଳନ ତାଙ୍କର କାମ । ତ୍ରିନେତ୍ର ଶିବ ରହିଲେ ସଂହାର ଦାୟିତ୍ୱରେ । ଡମରୁ ବଜେଇ ତ୍ରିଶୂଳ ଘୂରେଇ ସେ ଯେତେବେଳେ ସବୁ ଦିଗ୍‌ଗଜଙ୍କୁ ସେଥିରେ ଛେଦନ କରିଦିଅନ୍ତି ସେତେବେଳେ ବ୍ରହ୍ମାଣ୍ଡର ସଂହାର ଘଟେ । ଭଗବାନ ଏହି ସବୁ ଛୋଟିଆ କାମ ପାଇଁ ଅବତୀର୍ଣ୍ଣ ହୁଅନ୍ତି ନାହିଁ । ଭକ୍ତମାନଙ୍କ ସହିତ ଲୀଳାଖେଳା କରିବା ପାଇଁ ସେ ଅବତାର ଗ୍ରହଣ କରନ୍ତି । ଖେଳରେ ହିଁ ସୁଖ ମିଳେ, ହସ ଲାଗେ । ବେଳେ ବେଳେ ହସି ହସି ଆଖିରୁ ଲୁହ ଝରିପଡ଼େ, ତେଣୁ ହସିବା ଓ ଆଖିରେ ଲୋତକ ଆଣିବା ହେଲା ଖେଳର ପ୍ରକୃତ ପ୍ରୟୋଜନ । ଶ୍ରୀକୃଷ୍ଣା-ବତାରରେ ଭଗବାନ ଏଭଳି ପ୍ରକାର ଖେଳ ଖେଳିଲେ ଯେ ମାୟାମୋହଗ୍ରସ୍ତ ମଣିଷ କଥା ଛାଡ଼, ସ୍ୱୟଂ ବ୍ରହ୍ମା ମଧ୍ୟ ମୋହିତ ହୋଇଗଲେ । ଶ୍ରୀକୃଷ୍ଣଙ୍କର ଭଗବତ୍ତା ଉପରେ ବ୍ରହ୍ମାଙ୍କର ମଧ୍ୟ ସନ୍ଦେହ ସୃଷ୍ଟି ହୋଇଥିଲା ।

ମହର୍ଷି ସୂତ କହିଲେ—"ମୁନିଗଣ ! ବୃନ୍ଦାବନର କାନନରେ ଶ୍ରୀକୃଷ୍ଣ ସଖାମାନଙ୍କ ସହିତ ମିଶି ନାନାପ୍ରକାର ଖେଳ କରୁଥିଲେ । ଗୋପାଳ ବାଳକମାନଙ୍କୁ ମାଙ୍କଡ଼ କରାଇ ଗଛ ଉପରେ ଚଢ଼ି ମାଙ୍କଡ଼ ପରି ମୁହଁ କରି ସେ ଖେଳୁଥିଲେ । ସେ ନିଜେ ଗଛର ଏ ଡାଳରୁ ସେ ଡାଳକୁ ଡେଇଁଯାଉଥିଲେ ।"

କେବେ କେହି ଅନ୍ୟକୁ ହଠାତ୍ କହେ—"ଆରେ ଦେଖିଲୁ ଏ କ'ଣ ? ଅନ୍ୟ ଜଣ ଆଶ୍ଚର୍ଯ୍ୟ ହୋଇ ପଚାରିବେ । ଦେଖିବାବାଲା କହେ—ଆରେ କାନ ଅତଡ଼ା ପଡ଼ିଗଲା । ବଡ଼ ହେଲେ କାନ ପାଚିବ ।"

କାନ ପାଚିବା ଭୟରେ ଯାହାର ଅତଡ଼ା ପଡ଼ିଥାଏ ସେ କହେ—"ଆରେ, ମୋ' କାନର ଅତଡ଼ାଟା ଭଲ କରିଦେ ।"

ସେତେବେଳେ ଅଉ ଜଣେ ଦୁଇ ହାତକୁ ଘଷି ଦୁଇ କାନରେ ଘଷିଦିଏ । ଯାହାର କାନ ଅତଡ଼ା ପଡ଼ିଥାଏ ସେ ସି ସି କଲେ ଅତଡ଼ା ଛୁଟିଯାଏ ।

କେବେ କେବେ ନଦୀ କୂଳରେ ପିଲାମାନେ ସରୁଧାରରେ ପାଣି ବହିଯାଉଥିବା ଜାଗାରେ ଦଳ ଲଗାଇ ବସନ୍ତି । ସେଥିରେ ଗ୍ରେଟ ଗ୍ରେଟ ବେଙ୍ଗ ଆଶ୍ରୟ ନେଇ ବୋବାନ୍ତି । ବେଳେ ବେଳେ ବେଙ୍ଗସବୁ ବାହାରକୁ ଆସି ଏପାଖ ସେପାଖ ଡିଅନ୍ତି । ପିଲାମାନେ ମଧ୍ୟ ବେଙ୍ଗକୁ ଅନୁକରଣ କରି ଡିଆଁଡେଇଁ କରନ୍ତି ।

ପିଲାମାନେ ପାଣିରେ ନିଜର ପ୍ରତିବିମ୍ବ ଦେଖି ମୁହଁକୁ ନାନାପ୍ରକାର ବିକୃତ କରନ୍ତି ଓ ନିଜ ନିଜର ବିକୃତ ମୁହଁ ଦେଖି ହସି ହସି ଗଡ଼ିଯାଆନ୍ତି । କିଏ କେତେପ୍ରକାର ମୁହଁ ଚିତାପାରିବ ବୋଲି ପରସ୍ପର ମଧ୍ୟରେ ପ୍ରତିଯୋଗିତା କରନ୍ତି । ଏହି ଖେଳରେ ପିଲାମାନଙ୍କର ବହୁ ସମୟ କଟିଯାଏ ।

କେତେକ ପିଲା ଶୁଖିଲା ଅନ୍ଧାରିଆ କୂଅ ପାଖକୁ ଯାଇ ଭିତରକୁ ମୁହଁ ଓ, ଓ, ଶବ୍ଦ କରନ୍ତି । ଯେ ଯାହା କହନ୍ତି ତା'ର ପ୍ରତିଧ୍ୱନି ଶୁଣାଯାଏ । ପ୍ରତିଧ୍ୱନି ଶୁଣି କୂଅକୁ ସେମାନେ ଗାଳି ଦିଅନ୍ତି । ପିଲାମାନେ ଗଛର ପତ୍ରକୁ ମୋଡ଼ି ପେଁକାଳି କରି ବଜାନ୍ତି । ହାତମୁଠା ଉପରେ ପତ୍ରକୁ ଠୋଲି କରି ରଖି ତା' ଉପରେ ଘୁଷୁଡ଼ା ମାରି ଫୁଟାନ୍ତି । ଏକ ସମୟରେ ଅନେକ ପିଲା ଏହିପରି କରନ୍ତି । ଫଟ୍ ଫଟ୍ ଶବ୍ଦ ଶୁଣି ଅନ୍ୟମାନେ ହସି ହସି ଗଡ଼ିଯାଆନ୍ତି । କେତେକ କାଖରେ ହାତ ରଖି ଫୁଟାନ୍ତି । ତାହା ଠିକ୍ ପାଦ୍ଲା ପରି ଶୁଣାଯାଏ । କେତେକ ଗାଲକୁ ଠୋଲି ଫୁଟାନ୍ତି । କେତେକ ପିଲା ଗାଲରେ ହାତଦେଇ ବିଚିତ୍ରସ୍ୱରରେ ଗୀତ ଗାଆନ୍ତି । କେବେ କେବେ ଦୁଇଜଣ ପିଲା ହାତକୁ ହାତ ଛନ୍ଦି ତା' ଉପରେ କୃଷ୍ଣଙ୍କୁ ବସାଇ ଦୂରକୁ ନେଇଯାଆନ୍ତି । ଶ୍ରୀକୃଷ୍ଣଙ୍କୁ ବର କରି ସେହିପରି

ହାତଛଡା ପାଲିଙ୍କିରେ ନେଇ ଏକ ସୁନ୍ଦର ସ୍ଥାନରେ ଓହ୍ଲାନ୍ତି ଓ ତାଙ୍କର ସବାହ କରନ୍ତି । କୋହ୍, ଆସେ, ଗୀତଗାନ ଗ୍ଭଲେ ଏବଂ ନାନାପ୍ରକାର ଖେଳ ଲଗିରହେ ।

ମହର୍ଷି ସୂତ ପୁଣି କହିବାକୁ ଲଗିଲେ—"ମୁନିଗଣ ! ବ୍ରଜବାସୀ ଗୋପାଳ ବାଳକମାନଙ୍କର ଲୀଳାଖେଳା ବର୍ଣ୍ଣନା କରିବା ସମ୍ଭବ ନୁହେଁ ବରଂ ତାହା କେବଳ ଅନୁଭବ କରାଯାଇ ପାରେ । ହେ ମହର୍ଷିଗଣ ! ଯେତେବେଳେ ଆମର କୌଣସି ପ୍ରିୟମିତ୍ର ଅସି ପହଞ୍ଚଯାଏ ସେତେବେଳେ ଆମର ପ୍ରାଣ ମନ ପୁଲକିତ ହୋଇଯାଏ । ମନହୁଏ, ସବୁବେଳେ ତାହାର ମୁହଁକୁ ଚାହିଁରହିବା ପାଇଁ । ଯଦି ସାଂସାରିକ ପ୍ରେମରେ ଏତେ ଆକର୍ଷଣ ଅଛି ତେବେ ପ୍ରଭୁଙ୍କ ପ୍ରେମରେ କେତେ ଯେ ଆକର୍ଷଣ ଥିବ ତାହା ପ୍ରକାଶ କରିବା ସମ୍ଭବ ନୁହେଁ ।"

ଆମେ ଯେତେବେଳେ କୌଣସି ସନ୍ଥ ମହାତ୍ମା ବା ମହାପୁରୁଷମାନଙ୍କ ଜୀବନୀ ପଢିବା ସମୟରେ ଜାଣୁ ଯେ ଭକ୍ତ ଓ ଅନୁଗାମୀମାନଙ୍କୁ ସେ ଅତି ସ୍ନେହ କରୁଥିଲେ ସେତେବେଳେ ଆମ ମନରେ ଏହିଭାବ ଆସେ ଯେ—ହାୟ ! ଆମେ ତାଙ୍କ ସମୟରେ ଜନ୍ମ ନ ହେଲୁ କାହିଁକି ? ଆମେ କେଡ଼େ ହତଭାଗ୍ୟ, ଆମେ ସେହି ମହାପୁରୁଷଙ୍କ ଲୀଳାରେ ଭାଗ ନେଇପାରିଲୁ ନାହିଁ । ତାଙ୍କ କାର୍ଯ୍ୟାବଳୀ ଆମେ ନିଜ ଆଖିରେ ଦେଖିପାରିଲୁ ନାହିଁ । ମହାପୁରୁଷମାନଙ୍କ ଚରିତରେ ଯଦି ଏତେ ଆକର୍ଷଣ ଅଛି, ତେବେ ଯେ ସାକ୍ଷାତ୍ ପରଂବ୍ରହ୍ମ, ଅଖିଳ କୋଟି ବ୍ରହ୍ମାଣ୍ଡର ନାୟକ, ତାଙ୍କ ଚରିତରେ ହୃଦୟକୁ ବିହ୍ୱଳ କରିପାରି ଓ ହୃଦୟତନ୍ତ୍ରୀର ତାରକୁ ଝଂକୃତ କରିପାରି ବହୁ୍ୟଗୁଣ ଅଛି ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ।

ଯେଉଁ ପ୍ରଭୁଙ୍କ ଚରଣ କମଳର ଧୂଳି ପାଇଁ ବ୍ରହ୍ମାଦି ଦେବଗଣ ସଦା ବ୍ୟାକୁଳ ହୁଅନ୍ତି, ଯାହାଙ୍କ ଭୁବନମୋହନ ରୂପର ଏକ ଝଲକ ଦେଖିବା ପାଇଁ ବଡ଼ ବଡ଼ ଯୋଗୀ, ବୈରାଗୀ, ତପସ୍ୱୀ, ମୁନି ବହୁ ଜନ୍ମଧରି ଜପ ତପ କରନ୍ତି ସେହି ପରମେଶ୍ୱରପ୍ରଭୁ ବାଳକ ରୂପରେ ବୃନ୍ଦାବନବାସୀ ମୂର୍ଖ ଗୋପାଳ ବାଳକମାନଙ୍କ ସହିତ ସୁଖରେ ଲୀଳାଖେଳା କରୁଛନ୍ତି । ପିଲମାନେ ତାଙ୍କୁ ମାରନ୍ତି, ଗାଳି ଦିଅନ୍ତି, ସ୍ନେହ କରନ୍ତି, ସାଙ୍ଗରେ ଖାଆନ୍ତି । ସେହି ପିଲାମାନଙ୍କ ଭାଗ୍ୟକୁ କେତେ ପ୍ରଶଂସା କରାଯାଇ ପାରିବ ? ଯେଉଁମାନଙ୍କ ଘରକୁ ଯାଇ ସେ ବସନ୍ତି, ଖେଳନ୍ତି, ନାଚନ୍ତି, ଗାଆନ୍ତି, ଦୁଧ ଦହି ଖାଆନ୍ତି ଓ ଅଲୌକିକ ଲୀଳା କରନ୍ତି ସେମାନଙ୍କ ଭାଗ୍ୟକୁ କିପରି ପ୍ରଶଂସା କରାଯାଇ ପାରିବ ? ବାପ, ମା', ଭାଇ, ବନ୍ଧୁ ଯେଉଁମାନେ ତାଙ୍କୁ ସ୍ନେହ, ଆଦର କରନ୍ତି ସେମାନଙ୍କ ଭାଗ୍ୟକୁ ଯେତେ ପ୍ରଶଂସା କଲେ ବି ତାହା ଯଥେଷ୍ଟ ହେବ ନାହିଁ । ବର୍ତ୍ତମାନ ଏକ ଅପୂର୍ବ ଲୀଳାର କଥା କହୁଛି, ଆପଣମାନେ ମନଦେଇ ଶୁଣନ୍ତୁ ।"

### ଛପ୍‌ପୟ୍

କୋଇ ମେଢ଼କ ବନେ ମଳିନ ଜଳମହିଁ ଘୁସି ଜାଓଁ ।
କୁଦକ କୁଦକକେ ଚଲେ ଟର୍ କରି ଶବ୍ଦ ସୁନାଓଁ ॥
ଜଳମହିଁ ଲଖି ପ୍ରତିବିମ୍ବ ହିଁଯେ ଇତ ଉତ ଭଗି ଜାଓଁ ।
ଲଖି ଲଖି ଲୀଳା ଲଳିତ ଗଲ ଅତି ହିୟ୍ ହରଷାଓଁ ॥
ଭକ୍ତନକେ ଭଗବାନ୍ ଜୋ, ଜ୍ଞାନନକେ ଜୋ ବ୍ରହ୍ମ ହରି ।
କହେ ଅଙ୍କ ଶିଶୁ ଆଜ ତେ, ବ୍ରଜ ବହିରେ ନରବେଶ ଧରି ॥

୬

## ଅଘାସୁରର ଆଗମନ

ଅଥାଘନାମାଭ୍ୟପତନ୍ମହାସୁର
ସ୍ତେଷାଂ ସୁଖକ୍ରୀଡ଼ନବୀକ୍ଷଣାକ୍ଷମଃ ।
ନିତ୍ୟଂ ଯଦନ୍ତର୍ନିଜଜୀବିତେପ୍ସୁଭିଃ
ପୀତାମୃତୈରପ୍ୟମରୈଃ ପ୍ରତୀକ୍ଷ୍ୟତେ ॥

(ଶ୍ରୀ ଭା ୧୦ ସ୍କ, ୧୨ ଅ, ୧୩ ଶ୍ଳୋକ)

### ଛପ୍‌ପୟ୍

ଜିନକୁଁ ଗ୍ୱାଲଗଁୱାର ଖେଲମେଁ ଖେଲ ହରାୱେଁ ।
ତିନ ଗ୍ୱାଲନକେ ଭାଗ୍ୟ ଇନ୍ଦ୍ର ବିଧି ଶମ୍ଭୁ ସରାୱେଁ ॥
ଯୌଁ କରି କ୍ରୀଡ଼ା କୃଷ୍ଣ ସବନକୋ ଚିତ ଚୁରାୟୌ ।
ତବଇ ତହିଁ ଅଘ ଅସୁର ବକୀ ବକ ଭାଇ ଆୟୌ ॥
ବନ୍ଧନ ବନ୍ଧୁ ମେରେ ହନେ, ସୋଚେ ଖଲ ଜା ଶ୍ୟାମନେ ।
ମାରୁଁ ଗୋପନକେ ସହିତ, ଅବ ଅରି ଆୟୌ ସାମନେ ॥

ଖେଳ ହିଁ ଶ୍ରୀକୃଷ୍ଣଙ୍କର ପ୍ରଧାନ ଲୀଳା । ଗୋପବାଳକମାନଙ୍କ ସହିତ ହେଉ ଅଥବା ଗୋପୀମାନଙ୍କ ସହିତ ହେଉ କ୍ରୀଡ଼ା ନିମିତ୍ତ ହିଁ ଶ୍ରୀକୃଷ୍ଣ ପୃଥିବୀରେ ଅବତୀର୍ଣ୍ଣ ହୋଇଛନ୍ତି ।

କୀଡ଼ାପ୍ରିୟ, ଭୋଗରାଗପ୍ରିୟ ହୋଇ ମଧ୍ୟ ବୈଷ୍ଣବୀ ଶକ୍ତି ତାଙ୍କଠାରେ ସନ୍ନିହିତ ଥାଏ। ଶ୍ରୀକୃଷ୍ଣଙ୍କ ସହିତ ପାଳକ ବିଷ୍ଣୁ ମଧ୍ୟ ଅବତାର ଗ୍ରହଣ କରନ୍ତି। ଭଗବାନ ବିଷ୍ଣୁଙ୍କର ଦୁଷ୍ଟ-ନାଶନ ଓ ଶିଷ୍ଟ ପାଳନ ହେଲା ପ୍ରଧାନ କାର୍ଯ୍ୟ ; ତେଣୁ ନାଟକ ମଞ୍ଚରେ ରୁଚି ପରିବର୍ତ୍ତନ ପାଇଁ ଯେପରି ହାସ୍ୟପରିହାସାତ୍ମକ ମନୋରଞ୍ଜନ ବ୍ୟବସ୍ଥା ଥାଏ ସେହିପରି ଭଗବାନ୍ ବିଷ୍ଣୁ କ୍ରୀଡ଼ା ମଧ୍ୟରେ ହିଁ ଅସୁର ସଂହାର କରନ୍ତି। ଏହାଦ୍ୱାରା ଶ୍ରୀକୃଷ୍ଣଙ୍କ ପ୍ରତି ଅନୁରାଗ ବୃଦ୍ଧି ପାଏ ; କିନ୍ତୁ ଶ୍ରୀକୃଷ୍ଣଙ୍କ ଲୀଳାଖେଳା ଐଶ୍ୱର୍ଯ୍ୟ ପ୍ରଦର୍ଶନ ପାଇଁ ନୁହେଁ ମଧୁର ରସର ପରି-ପୋଷଣ ପାଇଁ ଉଦ୍ଦିଷ୍ଟ।

ମହର୍ଷି ସୂତ କହିଲେ—"ମୁନିଗଣ ! ଶ୍ରୀକୃଷ୍ଣ ବହୁଳ ଚରିତରେ ବୃନ୍ଦାବନରେ ନାନାବିଧ ଲୀଳା କରୁଥିବାବେଳେ ମଥୁରାରେ କଂସ ଚିନ୍ତାରେ ନିମଗ୍ନ ଥିଲା। ସେ ପୂତନାକୁ ପଠାଇଥିଲା। ଶ୍ରୀକୃଷ୍ଣ ତାକୁ ସଦ୍‌ଗତି ପ୍ରଦାନ କଲେ। ବକାସୁର ମଧ୍ୟ କଂସର ଅନୁରୋଧରେ ଆସି ଇହଲୀଳା ତ୍ୟାଗ କରି ପରମପଦ ଲଭିକଲା। ତା'ର ଅଘ ନାମରେ ଏକ ଭାଇ ଥିଲା। ଶ୍ରୀକୃଷ୍ଣ ଯାହାକୁ ଆଦର କରନ୍ତି ତା'ର ସମସ୍ତ ପରିବାରବର୍ଗଙ୍କୁ ମଧ୍ୟ ଉଦ୍ଧାର କରନ୍ତି। ପ୍ରହ୍ଲାଦ ଉପରେ ପ୍ରସନ୍ନ ହୋଇ ପ୍ରଭୁ ତାକୁ ବର ପ୍ରାର୍ଥନା କରିବାକୁ କହିଲେ—ପ୍ରହ୍ଲାଦ କହିଲା—"ପ୍ରଭୋ ! ମୋର ପିତା, ଆପଣଙ୍କର ପ୍ରଭାବକୁ ଜାଣନ୍ତି ନାହିଁ। ସେ ସବୁବେଳେ ଆପଣଙ୍କୁ ନିନ୍ଦା କରନ୍ତି। ଆପଣଙ୍କ ପ୍ରତି ତାଙ୍କର ଘୋର ବିରୋଧଭାବ ଥିଲା। ତାଙ୍କର ଦୁର୍ଗତି ନ ହେଉ ଏହି ବର ମୋତେ ଦିଅନ୍ତୁ।"

ଭକ୍ତ ପ୍ରହ୍ଲାଦର ପ୍ରାର୍ଥନା ଶୁଣି ପ୍ରଭୁ ନୃସିଂହ ହସି ହସି କହିଲେ—"ଆରେ ତୁ ଏ ବର କାହିଁକି ମାଗିଲୁ ? ତୁ କେବଳ ତୋର ବାପାଙ୍କ ସଦ୍‌ଗତି କଥା ପ୍ରାର୍ଥନା କଲୁ। କିନ୍ତୁ ତୋର କାର୍ଯ୍ୟଦ୍ୱାରା ପୂର୍ବ ସପ୍ତପୁରୁଷ ଓ ପରବର୍ତ୍ତୀ ସପ୍ତ ପୁରୁଷ ଏବଂ ସପ୍ତ ମାତୃକୁଳ, ଏପରି ମୋଟ ଏକୋଇଶ ପୁରୁଷ ସଦ୍‌ଗତି ଲାଭ କରିଛନ୍ତି। ତୋ' ପରି ଭକ୍ତ ଯେଉଁ ବଂଶରେ ଜନ୍ମ ହୁଅନ୍ତି, ତା'ର ପିତା ସଦ୍‌ଗତି ଲାଭ କରିବେ ସେଥିରେ କୌଣସି ସନ୍ଦେହ ନାହିଁ। ଯେ ମୋର ଅଙ୍ଗ ସ୍ପର୍ଶ କରିବାର ସୁଯୋଗ ପାଏ, ତା' ସହିତ ତା'କୁଳର ସମସ୍ତେ ଉଦ୍ଧାର ପାଇଯାଆନ୍ତି।"

ପୂତନାର ବକ ଓ ଅଘ ନାମରେ ଦୁଇ ଭାଇ ଥିଲେ। ବକ ବକ ରୂପରେ ଆସି ବାସୁଦେବଙ୍କ ହାତରେ ମୃତ୍ୟୁ ବରଣ କରି ତରିଗଲା। ଅଛି ରହିଲା ଅଘ। ସେ ମଧ୍ୟ ଦ୍ୱେଷ ବୁଦ୍ଧିରେ ଭଗବାନଙ୍କୁ ଭଜନ କରୁଥିଲା। ପ୍ରଭୁ ସର୍ବେଶ୍ୱରଙ୍କୁ ଶତ୍ରୁ ଭାବରେ ସେ ଚିନ୍ତା କରୁଥିଲା। ସେ ଯେତେବେଳେ ନିଜର ଭାଇ ଓ ଭଉଣୀର ବଧ କଥା ଶୁଣିଲା ସେତେବେଳେ ବଂଶୀଧରଙ୍କ ଉପରେ ବହୁତ ରାଗିଗଲା। ସେ କ୍ରୋଧାନ୍ୱିତ ହୋଇ କହିଲା—ମୁଁ, ମୋର ଭାଇ ଓ ଭଉଣୀଙ୍କୁ ଯେ ମାରିଛି, ତାକୁ ନିଶ୍ଚୟ ମାରିବି। କଂସ ତାହା ହିଁ ଚାହୁଁଥିଲା। ସେ

ଅଘଙ୍କୁ ଡକାଇ କହିଲା—"ଭାଇ ! ବ୍ରଜପୁରରେ ମୋର ଶତ୍ରୁ ଅଛି । ତୋର ଭାଇ ଓ ଭଉଣୀଙ୍କୁ ମଧ୍ୟ ସେ ମାରି ଦେଇଛି ;ତେଣୁ ସେ ତୋର ବି ଶତ୍ରୁ । ତାକୁ ଯେ କୌଣସି ଉପାୟରେ ହେଉ ପଛକେ ବିନାଶ କରିବା ଉଚିତ ।"

ଅଘାସୁର କହିଲା—"ରାଜନ୍ ! ଆପଣ ଆଦୌ ଚିନ୍ତା କରନ୍ତୁ ନାହିଁ । ମୋର ଭାଇ ଓ ଭଉଣୀଙ୍କୁ ସେହି ମାୟାବୀ କପଟରେ ମାରିଦେଇଛି । ମୁଁ ଏପରି ରୂପ ଧାରଣ କରିବି ଯେ ମୋ' ପେଟ ଭିତରକୁ ଗୋପାଳ ବାଳକ ସହିତ ତୋର ଶତ୍ରୁ ମଧ୍ୟ ଆସିଯିବ ଓ ମୃତ୍ୟୁବରଣ କରିବ । ମୁଁ ବର୍ତ୍ତମାନ ବୃନ୍ଦାବନ ଯାଉଛି ।" ଏହା କହି ଅଘାସୁର ବୃନ୍ଦାବନ ଅଭିମୁଖେ ଯାତ୍ରା କଲା ।"

ବୃନ୍ଦାବନରେ ପହଞ୍ଚି ଅଘାସୁର ଦେଖିଲା ଯେ ସୁନ୍ଦର ସୁନ୍ଦର ଅଂସଖ୍ୟ ବାଛୁରି ଯମୁନା କୂଳରେ ସବୁଜ କୋମଳ ଘାସ ଖାଉଛନ୍ତି । ଆନନ୍ଦକନ୍ଦ ବ୍ରଜଚନ୍ଦ୍ର ଶ୍ରୀକୃଷ୍ଣ ସଖାମାନଙ୍କ ସହିତ ବନରେ ବୁଲୁଛନ୍ତି । ଶ୍ରୀକୃଷ୍ଣଙ୍କୁ ସଖାମାନଙ୍କ ସହିତ ଆନନ୍ଦରେ ଖେଳୁଥିବାର ଦେଖି ଅଘାସୁର କ୍ରୋଧରେ ଅସ୍ଥିର ହୋଇପଡ଼ିଲା । ଅତ୍ୟଧିକ ଈର୍ଷାନ୍ୱିତ ହୋଇ ଭଗବାନ କୃଷ୍ଣଙ୍କୁ ଦେଖିବାମାତ୍ରେ ଚିହ୍ନି ଗଲା—ଏଇ ହେଉଛି ମୋର ଭାଇ ଓ ଭଉଣୀଙ୍କୁ ବିନାଶ କରିବା ବ୍ୟକ୍ତି । ସାଙ୍ଗସାଥି ସହିତ ଏହାକୁ ମୁଁ ଆଜି ମାରିଦେବି । ଏହାଦ୍ୱାରା ମୋର ଦୁଇଟି ଲାଭ ହେବ । ପ୍ରଥମତଃ ମୃତ ଭାଇ ଭଉଣୀଙ୍କ ଶତ୍ରୁ ଉପରେ ପ୍ରତିଶୋଧ ନେବି । ଦ୍ୱିତୀୟରେ ସବୁ ବାଳକଙ୍କୁ ମାରିଦେଇ ବ୍ରଜବାସୀଙ୍କୁ ମୃତତୁଲ୍ୟ କରିଦେବି । ସନ୍ତାନସନ୍ତତି ହେଉଛନ୍ତି ସଂସାରୀମାନଙ୍କ ଯଥାର୍ଥ ପ୍ରାଣ । ଆତ୍ମା ହିଁ ପୁତ୍ର ରୂପେ ଜନ୍ମ ହୁଏ । ନିଜର ଆତ୍ମା ଓ ପୁତ୍ର ମଧ୍ୟରେ କୌଣସି ଭେଦ ନାହିଁ । ତେଣୁ ପ୍ରାଣ ଚାଲିଗଲେ ଶରୀର ଚିନ୍ତା ରହିବ ନାହିଁ ।

ଏହିପରି ଚିନ୍ତାକରି ଅଘାସୁର ବାଛୁରୀଙ୍କ ଆସିବା ବାଟରେ ବସି ରହିଲା । ସେ ଭାବିଲା—ଏବେ କି ରୂପ ଧରିବି ? ବହୁତ ଭାବି ଚିନ୍ତି ସେ ସ୍ଥିର କଲା—ମୁଁ ଏକ ବଡ଼ ଅଜଗର ସାପ ହୋଇଯିବି । ଏହାଦ୍ୱାରା ଗୋପାଳବାଳକମାନଙ୍କ ସହ ଶ୍ରୀକୃଷ୍ଣ ମୋ' ମୁହଁ ପାଖକୁ ଆସିବାମାତ୍ରେ ଭସ୍ମ ହୋଇଯିବେ । ଏହିପରି ଭାବି ଅଘାସୁର ଚାରିକୋଶ ଲମ୍ବ ବିଶିଷ୍ଟ ପର୍ବତାକାର ଶରୀର ଧାରଣ କଲା । କେହି ତାକୁ ଦେଖି ଅଜଗର ବୋଲି ଜାଣିବାର ଅବକାଶ ରହିଲା ନାହିଁ । ଦୂରରୁ ସେ ଏକ ଶ୍ରେଷ୍ଠ ପାହାଡ଼ପରି ଦେଖାଯାଉଥିଲା ।

ଅଜଗର ସାପ ପବନ ପିଇ ବଞ୍ଚି ରହେ । ସେ କିଛି ପରିଶ୍ରମ କରେ ନାହିଁ । ଅଳସୁଆଙ୍କ ପରି ଚୁପ୍‌ଚାପ୍ ପଡ଼ିରହିଥାଏ । ଯେତେବେଳେ ବେଶୀ ଭୋକ ଲାଗେ ସେତେ-ବେଳେ ସେ ବନ୍ଦଥିବା ପାଟିକୁ ମେଲା କରି ଜୋର୍‌ରେ ନିଃଶ୍ୱାସ ନିଏ । ଭଗବାନ୍ ତାକୁ ଏପରି ଶକ୍ତି ଦେଇଛନ୍ତି ଯେ, ଜୋର୍‌ରେ ନିଃଶ୍ୱାସ ନେବାମାତ୍ରେ ତା'ର ପାଖ ଆଖରେ ଥିବା

ଶଶକ, ଶୃଗାଳ, ପକ୍ଷୀ, ପଶୁ ଓ ମଣିଷ ଅଥବା ଅନ୍ୟ ଯେ କୌଣସି ଜୀବ ଆପେ ଆପେ ଆସି ତା' ପାଟି ପାଖରେ ପହଞ୍ଚିଯାଆନ୍ତି । ସେ ସେମାନଙ୍କୁ ଗିଳିଦେଇ ପାଟି ବନ୍ଦ କରିଦିଏ । ଅଘାସୁର ତ ଷୃଷ୍ଣକୋଶ ଲମ୍ବ ଓ ଓସାରର ଅଜଗର ରୂପ ଧରିଥିଲା । ତା'ର ମୁହଁ ଏକ ପାହାଡ଼ ଗୁମ୍ଫା ପରି ଦେଖାଯାଉଥିଲା । ସେହି ମୁହକୁ ମେଲା ରଖି ସେ ବାଛୁରୀ ଓ ପିଲାମାନଙ୍କ ଆସିବା ବାଟରେ ଶୋଇରହିଲା ।

ଆକାଶ ମେଘାଛନ୍ନ ଥିଲା । ଶ୍ରୀକୃଷ୍ଣଙ୍କୁ ଖଣ୍ଡ କାଟିବ ବୋଲି ଭାବି ମେଘ ଯେପରି ଆକାଶରେ ଛନ୍ଦ ଧାରଣ କରିଥିଲା । ଅଜଗରର ଉପର ଓଠ ମେଘ ସହିତ ମିଶି ଯାଉଥିଲା ଓ ତଳ ଓଠ ମାଟିରେ ମିଶିଯାଇଥିଲା । ଖୋଲା ମୁହଁର ମାଢ଼ି ଦୁଇଟି ବଡ଼ ଗୁମ୍ଫା ପରି ମନେ ହେଉଥିଲା ଏବଂ ତା' ପାଟିର ଦାନ୍ତ ଶ୍ରେଷ୍ଠ ଶ୍ରେଷ୍ଠ ଶୃଙ୍ଗ ପରି ଦେଖା ଯାଉଥିଲା । ତା'ର ଜିଭ ଦୁଇଟି ଗୁମ୍ଫା ଭିତରକୁ ପଡ଼ିଥିବା ନାଲି ସଡ଼କ ପରି ମନେ ହେଉଥିଲା । ଗୁମ୍ଫା ପରି ମୁଖଗହ୍ୱର ଅନ୍ଧାର ଦେଖାଯାଉଥିଲା । ଦାବାଗ୍ନି ଦୁଇଟି ସ୍ଥାନରେ ଜଳିଲା ପରି ତା' ଆଖି ଦୁଇଟି ଜଳୁଥିଲା । ଅଘାସୁରର ନିଃଶ୍ୱାସ ବାୟୁ ଗୁମ୍ଫାରେ ପବନ ପଶିଗଲେ ଯେପରି ସାଇଁ ସାଇଁ ଶବ୍ଦ ଶୁଭେ ସେହିପରି ପ୍ରଚଣ୍ଡ ଶବ୍ଦ କରୁଥିଲା ।

ଏପରି ଏକ ବିଚିତ୍ର ଜନ୍ତୁକୁ ଦେଖି ଗୋପାଳବାଳକମାନେ ବିସ୍ମିତ ହୋଇପଡ଼ିଲେ । କେତେକ କହିବାକୁ ଲାଗିଲେ—"ଏତେ ବଡ଼ ଜନ୍ତୁ ଆଜି ପର୍ଯ୍ୟନ୍ତ ଆମେ କେହି ଦେଖି ନାହୁଁ । ଆଉ କେତେକ ହସି ହସି କହିଲେ—ଏପରି ଜନ୍ତୁ କ'ଣ ଅଛନ୍ତି । ଏ ହେଉଛି ବୃନ୍ଦାବନର ଏକପ୍ରକାର ଶୋଭା । କିଏ କହିଲା—ଏପରି ବିଚିତ୍ର ବସ୍ତୁ ଆଗରୁ ଦେଖି ନାହୁଁ । ଗୋବର୍ଦ୍ଧନ ପର୍ବତର ଏହା ଏକ ଶାଖା ହୋଇପାରେ ।"

ଅନ୍ୟ କେତେକ କହିଲେ—"ଏହା ବୃନ୍ଦାବନର ଶୋଭା ନୁହେଁ କି ଗୋବର୍ଦ୍ଧନ ପର୍ବତର ଶାଖା ନୁହେଁ । ଏହା ଏକ ଅଜଗର ସାପ ପରି ମନେ ହେଉଛି । ମୁହଁ ମେଲେଇ ଆମକୁ ଗିଳିବ ବୋଲି ଅପେକ୍ଷା କରିଛି ।"

ଆଉ କେତେକ ପିଲା କହିଲେ—"ନା ନା, ଏ ଅଜଗର ନୁହେଁ । ଏହା ଗୋବର୍ଦ୍ଧନ ପର୍ବତର ଏକ ଗୁମ୍ଫା ; କିନ୍ତୁ ଆକାର ପ୍ରକାର ଅଜଗର ପରି ମନେ ହେଉଛି ।"

ଆଉ ଜଣେ ପିଲା ବାତୁଳ ପରି କହିବାକୁ ଲାଗିଲା—"ଏହାର ମୁହଁ ଅଜଗରର ମୁହଁ ପରି ଦେଖାଯାଉନି କି ? ସୂର୍ଯ୍ୟ କିରଣରେ ରକ୍ତବର୍ଣ୍ଣ ଧାରଣ କରିଥିବା ମେଘ ଏହାର ଉପର ଓଠ ଏବଂ ନୀଳ ମେଘର ଛାୟାରେ ଆରକ୍ତ ଦେଖାଯାଉଥିବା ଭୂମି ପରି ଏହାର ତଳ ଓଠ ଦେଖାଯାଉଛି କି ନାହିଁ, ଲକ୍ଷ୍ୟକର ସମସ୍ତେ । ଏହାର ଦକ୍ଷିଣ ଓ ବାମ ପାଖରେ ଥିବା ଦାନ୍ତ ଗୋବର୍ଦ୍ଧନ ପର୍ବତର ଶ୍ରେଷ୍ଠ ଶ୍ରେଷ୍ଠ ଶିଖର ପରି ଭ୍ରମ ସୃଷ୍ଟି କରୁ ନାହିଁ କି ? ଗୁହା ଭିତରର ଅନ୍ଧକାର ଅଜଗର ମୁଖ ଗହ୍ୱରର ଶୂନ୍ୟସ୍ଥାନ ପରି ମନେ ହେଉଛି ।

ଦାବାନଳର ଉଷ୍ଣତା ହେତୁ ଗରମ ପବନ ବହିଲା ପରି ଏହାର ନିଃଶ୍ୱାସ ବାୟୁ ଗରମ ଲାଗୁଛି । ଦାବାଗ୍ନିରେ ଭସ୍ମୀଭୂତ ଜୀବଜନ୍ତୁଙ୍କ ମାଂସର ପୋଡ଼ାଗନ୍ଧ ପରି ଏହାର ଶ୍ୱାସ ଦୁର୍ଗନ୍ଧ ହେଉଛି । ସମ୍ଭବତଃ ଜୀବଜନ୍ତୁଙ୍କୁ ଖାଇବାରୁ ଏହି ଅଜଗର ଶ୍ୱାସ ଛାଡ଼ୁଛି ।”

ମହର୍ଷି ସୂତ କହିଲେ—“ମୁନିଗଣ ! ଗୋପାଳବାଳକମାନେ ଅଘାସୁରକୁ ପର୍ବତ ବୋଲି ମନରେ ଯେଉଁ କଳ୍ପନା ଜଳ୍ପନା କରୁଥିଲେ ତାହା କଳ୍ପନା ନୁହେଁ, ପ୍ରକୃତ ସତ୍ୟ । କିନ୍ତୁ ପିଲା ହୋଇଥିବାରୁ ବାଳସୁଲଭ ବିଚାର କରୁଥିଲେ । ସେମାନେ ଭୁଲ୍ ବିଚାର କରୁଥିଲେ । ବାସ୍ତବରେ ସେହି ଅଜଗର ଥିଲା ଅଘାସୁର । ସେ କି ପ୍ରକାର ମାୟା କଲା ତାହା କହୁଛି ଶୁଣନ୍ତୁ ।”

### ଛପ୍ପୟ

ଯେଉଁ କରି ନିଷ୍ଠୁର ବନେ ଯା ଅସୁର ଅଜଗର ଅତଙ୍କରୀ ।
ମୁଖ ଗିରିଗୁହା ସମାନ ସଡ଼କ ସମ ଜୀଭ ନିକାରୀ ।।
ଅଧର ଧରାପେ ଧର୍‌ୟୋ ଓଠ ଘନ ନଭମହିଁ ଲଗେୟା ।
ବାଲକ କେ ଭର ଦୃଶ୍ୟ ନିରଖି କୌତୂହଲ ଜାଗେୟା ।।
ଉପମା ଅଜଗରତେଁ କରେଁ, ଗିରିକୋ ଗୁହା ବତାଇକେଁ ।
କୋଇ କଛୁ କହି କହି ହଁସେ, ତୁଳନା କରେ ସିହାକେଁ ।।



## ସମସ୍ତେ ଅଘାସୁର ମୁଖରେ

କୃତ୍ୟଂ କିମତ୍ରାସ୍ୟ ଖଳସ୍ୟ ଜୀବନଂ
ନ ବା ଅର୍ମୀଷାଂ ଚ ସତାଂ ବିହିଂସନମ୍ ।
ଦ୍ୱୟଂ କଥଂ ସ୍ୟାଦିତସଂବିଚିନ୍ତ୍ୟ ତତ୍—
ଜ୍ଞାତ୍ୱାବିଶତ୍ତୁଣ୍ଡମଶେଷଦୃଗ୍‌ଧରିଃ ।।

(ଶ୍ରୀଭା ୧୦ସ୍କ. ୧୨ଅ,. ୨୮ଶ୍ଳୋକ)

### ଛପ୍ପୟ

ବାଳ ସୁଲଭ ଚାଞ୍ଚଲ୍ୟ କହେଁ ଜାମେଁ ଘୁସି ଜାୱେଁ ।
ହୋହି ଅସୁର ବକ ସରସ ମରେ ଲଖି ସବ ସୁଖ ପାୱେଁ ।।

ଯେହେଁ କହି ଅହି ମୁଖ ଘୁସେ ବଳାବତ ବାଳକ ତରୀ ।
ପୁନ ବଚ୍ଛର ଖୁସିଗଏ ଭଏ ଚକିତ ବନଓ୍ୱାରୀ ।।
ଅନ୍ତର୍ଯ୍ୟାମୀ ଅସୁର ଜେ, ଜାଣି ସକଳ ଛଳ ବଳ ଗଏ ।
ବାଳକ ବଚ୍ଛର ବଚେ କଷ, ମନେ ଅସୁର ସୋଚନ୍ତ ଭଏ ।।

ଆତ୍ମସମର୍ପଣ ବିନା ସୌହାର୍ଦ୍ଦ୍ୟ ଓ ସଖ୍ୟ ସାଧିତ ହୋଇପାରେ ନାହିଁ । ନିଜ ବନ୍ଧୁ ଉପରେ ଯେ ପର୍ଯ୍ୟନ୍ତ ପୂର୍ଣ୍ଣ ବିଶ୍ୱାସ ଆସି ନାହିଁ, ସେପର୍ଯ୍ୟନ୍ତ ଯଥାର୍ଥ ମିତ୍ରତା ସୃଷ୍ଟି ହୋଇଛି ବୋଲି କହି ହେବ ନାହିଁ । ମୋର ବନ୍ଧୁ ଯାହା କରିବେ ତାହା ମୋର ମଙ୍ଗଳକର ହେବ—ଏହି ଭାବନା ଦୃଢ଼ ହେଲେ ଯାଇ ମିତ୍ରତାରେ ସୁଖ ମିଳିବ । ଯେଉଁଠି ସନ୍ଦେହ ଅଛି, ସଂଶୟ ଅଛି, ବିଶ୍ୱାସ କମ୍ ଅଛି ସେଠାରେ ମିତ୍ରତା ନାହିଁ, ସଖ୍ୟ ନାହିଁ, ଅଛି କେବଳ ସ୍ୱାର୍ଥ, ବେପାର, ଅଦଳ ବଦଳ ଓ ବ୍ୟବହାର । ଏ ବିଷୟରେ କଥାଟିଏ ଅଛି । ଥରେ ଦୁଇ ବନ୍ଧୁ ସାଥିହୋଇ ବଣକୁ ଗଲେ । ବୁଲି ବୁଲି ଥକି ପଡ଼ିବାରୁ ଗୋଟିଏ ଜାଗାରେ ବସି ପଡ଼ିଲେ । ସଂସାରରେ ଯଦି ସବୁଠାରୁ ସୁଖକର ଶଯ୍ୟା କିଛି ଅଛି ତାହା ହେଉଛି ନିଜ ପ୍ରେମିକର କୋଳ ବା ବନ୍ଧୁର କୋଳ । ଜଣେ ଅନ୍ୟର କୋଳରେ ମୁଣ୍ଡ ଦେଇ ଶୋଇପଡ଼ିଲା । ଏହି ସମୟରେ ଏକ ବଡ଼ ସାପ ଆସି ଶୋଇଥିବା ବ୍ୟକ୍ତିକୁ ଦଂଶନ କରିବାକୁ ଉଦ୍ୟତ ହେଲା । ଯେଉଁ ବନ୍ଧୁ କୋଳରେ ସେହି ବ୍ୟକ୍ତି ଶୋଇଥିଲା ସେ ନମ୍ରତାର ସହିତ ସାପକୁ ପଚାରିଲା—"ତୁମେ ମୋର ବନ୍ଧୁକୁ କାହିଁକି ଦଂଶନ କରିବାକୁ ଚାହୁଁଛ ?"

ସର୍ପ କହିଲା—"ପୂର୍ବ ଜନ୍ମରୁ ଏହା ସହିତ ମୋର ଶତ୍ରୁତା ଅଛି ।"

ମିତ୍ର କହିଲା—"ତୁମର ତ ଦଂଶନ କଲେ କ୍ରୋଧ ଶାନ୍ତ ହୋଇଯିବ । ତେବେ ମୋର ବନ୍ଧୁକୁ ଛାଡ଼ି ମୋତେ ଦଂଶନ କର ।"

ସର୍ପ କହିଲା—"ତୁମ ସହିତ ତ ମୋର ଶତ୍ରୁତା ନାହିଁ । ମଣିଷ ନିଜ କୃତ କର୍ମର ଫଳ ନିଜେ ଭୋଗ କରେ । ମୁଁ ପୂର୍ବଜନ୍ମରେ ପ୍ରତିଜ୍ଞା କରିଥିଲି ଯେ ଏହାର କଣ୍ଠର ରକ୍ତ ପାନ କରିବି ; ତେଣୁ ମୋତେ ଏହାର ରକ୍ତ ପାନ କରିବାରେ ପ୍ରତିବନ୍ଧକ ସୃଷ୍ଟି କରନାହିଁ । ମୋର ପ୍ରତିଜ୍ଞା ପୂରଣରେ ସାହାଯ୍ୟ କର ।"

ମିତ୍ର ଟିକିଏ ବିଚାର କରି କହିଲା—"ଠିକ୍ ଅଛି । ତୁମେ କେବଳ ତା'ର ରକ୍ତ ତ ପିଇବ । ଆଉ ତ କିଛି କରିବାର ନାହିଁ ? ଦେଖ, ତୁମେ ରକ୍ତ ପାନ କଲାବେଳେ ପାଟିର ଦାନ୍ତରୁ ବିଷ ବାହାରି ତା'ର ରକ୍ତରେ ମିଶିଯିବ ଏବଂ ସେ ମୃତ୍ୟୁ ବରଣ କରିବ । ମୁଁ ଯଦି ତା'ର କଣ୍ଠରୁ ରକ୍ତ ବାହାର କରି ତୁମକୁ ଦେବି ତା'ଦ୍ୱାରା ତୁମର ପ୍ରତିଜ୍ଞା

ପୂରଣ ହେବ ଏବଂ ମୋର ବନ୍ଧୁ ମଧ୍ୟ ଜୀବିତ ରହିବ । କୁହ, ଏଥିରେ ତୁମର ଆପତ୍ତି ନାହିଁ ତ ?"

ସର୍ପ କହିଲା—"ଭଲ କଥା, ମୋର ଏଥିରେ କୌଣସି ଆପତ୍ତି ନାହିଁ ।"

ସର୍ପ ଯେତେବେଳେ ନିଜର ସମ୍ମତି ଜଣାଇଲା ସେତେବେଳେ ମିତ୍ର ଏକ ତୀକ୍ଷ୍ଣ ଖଡ୍‌ଗ ବାହାର କରି ନିଜ କୋଳରେ ଶୋଇଥିବା ବନ୍ଧୁର କଣ୍ଠରୁ ରକ୍ତ ବାହାର କରିବା ପାଇଁ ପ୍ରସ୍ତୁତ ହେଲା । ଗଭୀର ନିଦ୍ରାରେ ଶୋଇଥିବାରୁ ସର୍ପ ଓ ମିତ୍ର ମଧ୍ୟରେ କ'ଣ କଥାବାର୍ତ୍ତା ହୋଇଥିଲା, ତାହା ସେ ଜାଣି ପାରିଲା ନାହିଁ । ଖଡ୍‌ଗ ଧରିଥିବା ମିତ୍ର ତା'ର ବେକକୁ କାଟି ରକ୍ତ ବାହାର କରିବାକୁ ଉଦ୍ୟତ ହେଲା । କଷ୍ଟ ହେବାରୁ ଶୋଇଥିବା ମିତ୍ରର ଆଖି ଖୋଲିଗଲା । ସେ ଦେଖିଲା, ତା'ର କଣ୍ଠକୁ ଯେ କାଟୁଛି ସେ ତା'ର ମିତ୍ର । ତେଣୁ ସେ ପୁଣି ନିଶ୍ଚିନ୍ତରେ ଆଖି ବନ୍ଦ କରି ଶୋଇପଡ଼ିଲା । ମିତ୍ର ଯେ ତା'ର ହିତପାଇଁ ବେକକୁ କାଟୁଛି ସେଥିରେ ତା'ର ମନରେ କୌଣସି ପ୍ରକାର ଦ୍ୱିଧା ନ ଥିଲା । ଜାଗ୍ରତ ଥିବା ମିତ୍ର ରକ୍ତ ବାହାର କରି ସାପକୁ ଦେଲା ଏବଂ ସର୍ପ ରକ୍ତ ପାନ କରି ସାରି ଫେରିଗଲା । ସେ ନିଜର ଲୁଗାକୁ ଚିରି ବନ୍ଧୁର ବେକରେ ପଟି ବାନ୍ଧିଦେଲା । ଦୁଇ ମିତ୍ର କିଛି ସମୟ ପରେ ଉଠି ଗ୍ଲିଗଲେ । ଶୋଇଥିବା ମିତ୍ର କିଛି ପଗ୍ଚରିଲା ନାହିଁ କି ଜାଗ୍ରତ ଥିବା ମିତ୍ର କିଛି କହିଲା ନାହିଁ । କିଛିଦିନ ପରେ ଘା' ମଧ୍ୟ ଭଲ ହୋଇଗଲା ।

ଦିନେ ବେକ କାଟିଥିବା ମିତ୍ର ଅନ୍ୟ ବନ୍ଧୁକୁ କହିଲା—"ଭାଇ ! ସେଦିନ ମୁଁ ତୁମର ବେକକୁ କାଟୁଥିଲି । ତୁମେ ଆଖି ଖୋଲି ପୁଣି ଆଖି ବୁଜିଦେଲ । ମୁଁ କାହିଁକି କାଟୁଥିଲି, ତାହା ତ ମୋତେ ଆଜି ପର୍ଯ୍ୟନ୍ତ କେବେହେଲେ ପଗ୍ଚରିଲ ନାହିଁ ।"

ଅନ୍ୟତମ ମିତ୍ର ହସି ହସି କହିଲା—"ମୋର ପଗ୍ଚରିବା କ'ଣ ଦରକାର । ମୋର ଯଦି ସନ୍ଦେହ କି ଭୟ ହୋଇଥାନ୍ତା ତେବେ ପଗ୍ଚରିଥାଆନ୍ତି । ଆପଣଙ୍କ ଗୋଡ଼ରେ କଣ୍ଟା ପଶିଲେ ଆପଣ ତାକୁ ଲହୁଣୀରେ ମାଂସକୁ କାଟି ବାହାର କରନ୍ତି । ଆପଣ କ'ଣ ନିଜକୁ କେବେ ଏ ବିଷୟରେ ପ୍ରଶ୍ନ ପଗ୍ଚରନ୍ତି ? ଆପଣ ଜାଣନ୍ତି କଣ୍ଟାକୁ ବାହାର କରିବା ପାଇଁ ମାଂସକୁ କାଟିବା ଆବଶ୍ୟକ । ମୋର ବେକରୁ ରକ୍ତ ବାହାର କରିବାରେ ସେହିପରି ଆପଣ ମୋର ମଙ୍ଗଳ କଥା ବିଗ୍ଚର କରିଥିବେ । ସେଥିରେ ହସ୍ତକ୍ଷେପ କରିବାର ଅଧିକାର ନାହିଁ ।"

ଏହା ଶୁଣି ମିତ୍ରକୁ ଗାଢ଼ ଆଲିଙ୍ଗନ କରିବା ସଙ୍ଗେ ସଙ୍ଗେ ମିତ୍ରଟି କହିଲା—"ଭାଇ ତୁମେ ଧନ୍ୟ ! ତୁମର ମୋ'ଠାରେ ଏତେ ବିଶ୍ୱାସ ଅଛି ତାହା ମୁଁ କଳ୍ପନା କରି ନାହିଁ । ମୋ' କ୍ଷେତ୍ରରେ ସେପରି ଘଟଣା ଘଟିଥିଲେ ସମ୍ଭବତଃ ମୋର ସନ୍ଦେହ ଜାତ ହୋଇଥାନ୍ତା । ଏତିକି କହି ସେ ସର୍ପ ସହିତ ହୋଇଥିବା କଥାବର୍ତ୍ତା ଶୁଣାଇଥିଲେ ।"

ନିଜର ମିତ୍ର ଉପରେ ପୂର୍ଣ୍ଣ ବିଶ୍ୱାସ ରହିବା ଦ୍ୱାରା ମୈତ୍ରୀର ପରାକାଷ୍ଠା ପ୍ରତିପାଦିତ ହୁଏ । ଯଦି କେହି ସର୍ବଦା ଭାବେ—"ମୋର ମିତ୍ର ମୋର ଭଲ ହିଁ କରିବ, ସେ ଥାଉଁ ଥାଉଁ ମୋର କୌଣସି ପ୍ରକାର ଅମଙ୍ଗଳ ଘଟିବ ନାହିଁ କି କେହି ମୋର କୌଣସି କ୍ଷତି କରିପାରିବେ ନାହିଁ । ଅନ୍ୟ ମିତ୍ର ଭାବେ—"ମୋର ମିତ୍ରର କଲ୍ୟାଣ ପାଇଁ ଏ ଜୀବନ ଉତ୍ସର୍ଗ କରିବି ଏବଂ ଯାହାଦ୍ୱାରା ମିତ୍ରର ଦୁଃଖ ଦୂର ହେବ ତାହା ହିଁ କରିବି ।" ପରସ୍ପର ମଧ୍ୟରେ ଏହିପରି ବିଚାର ଯେଉଁଠି ଥାଏ ସେଠାରେ ପ୍ରକୃତ ମିତ୍ରତା ଥାଏ ଏବଂ ଯେ ଏପରି ଭାବନା ପୋଷଣ କରନ୍ତି ସେ ପ୍ରକୃତ ସୁହୃଦ୍ । ଭଗବାନ ଶ୍ରୀକୃଷ୍ଣଙ୍କର ଗୋପାଳ ବାଳକମାନଙ୍କ ସହିତ ଏହିପରି ମିତ୍ରତା ଥିଲା ।"

ମହର୍ଷି ସୂତ କହିଲେ—"ମୁନିଗଣ ! ଗୋପାଳବାଳକମାନେ ଅଜଗର ରୂପ ଧରିଥିବା ଅଘାସୁର ମୁଖକୁ ପର୍ବତର ଗୁମ୍ଫା ମନେ କରି ନିଶ୍ଚିତ ହେବା ପରେ ଜଣେ କହିଲା—"ଚାଲ ଏହି ଗୁମ୍ଫା ଭିତରକୁ ଯିବା ।"

ଆଉ ଜଣେ କହିଲା—"ଯଦି ଗୁମ୍ଫା ନ ହୋଇ ଏହା ପ୍ରକୃତରେ ଏକ ଅଜଗରର ମୁଖ ହୋଇଥିବ ?"

ଆଉ ଜଣେ ଚଗଲା ପିଲା କହିଲା—"କ'ଣ ହେଲା ? ଯଦି କୌଣସି ଅସୁର ଅଜଗର ରୂପ ଧରି ପଡ଼ିଥିବ ତେବେ କାହ୍ନୁଆ ଭାଇ ତ ଅଛୁ, ଚିନ୍ତା କ'ଣ ? କାଲି ଯେପରି ବଗର ମୁଖକୁ ଦୁଇଫାଳ କରି ଚିରିଦେଇଥିଲା ସେହିପରି ଏହାକୁ ମଧ୍ୟ ମାରି ଶୁଆଇଦେବ । କହ୍ନେଇ ଭାଇ ଥିବାଯାଏ ଆମର ଭୟ କାହାକୁ ?"

ସମସ୍ତେ ଏକସ୍ୱରରେ କହିଲେ—"ହଁ ଠିକ୍ କଥା । ଚାଲ ଗୁମ୍ଫା ଭିତରକୁ ଯିବା । ଏହା କହି ସମସ୍ତେ ତାଳି ବଜାଇ ଦୌଡ଼ିଲେ ଏବଂ ଅଘାସୁରର ମୁଖ ଭିତରେ ପଶିଗଲେ । ବାଛୁରୀଗୁଡ଼ିକ ପିଲାମାନଙ୍କୁ ଅନୁସରଣ କରି ଅଜଗର ମୁଖ ଭିତରକୁ ପଶିଗଲେ ।"

ଦୂରରେ ଥାଇ ଭଗବାନ ଶ୍ରୀକୃଷ୍ଣ ଏସବୁ ଦୃଶ୍ୟ ଦେଖୁଥିଲେ ଏବଂ ପିଲାମାନଙ୍କ କଥାବାର୍ତ୍ତାକୁ ମନ ଦେଇ ଶୁଣୁଥିଲେ । ଭଗବାନଙ୍କ ମୁଖକମଳର କମନୀୟ ଶୋଭାକୁ ଲକ୍ଷ୍ୟ କରି ସମସ୍ତେ ଅଜଗର ମୁଖରେ ପଶିଥିଲେ । ସେ ସରଳ ନିରପରାଧ ପିଲାମାନଙ୍କ ମଉଜିଆ କଥା ଶୁଣି ବୃନ୍ଦାବନଚନ୍ଦ୍ର ଭାବିଲେ—"ପିଲାମାନେ କିପରି ପଡ଼ିଗଲେ । ସତ ସାପକୁ ମିଛ ବୋଲି ଭାବି ତାକୁ ବୃନ୍ଦାବନର ଶୋଭା ରୂପେ ଗ୍ରହଣ କଲେ ।" କିନ୍ତୁ ଭଗବାନଙ୍କଠାରେ କୌଣସି କଥା ଗୋପନ ରହେ ନାହିଁ । ସେ ସର୍ବଦ୍ରଷ୍ଟା, ସର୍ବଜ୍ଞ ଓ ସର୍ବାନ୍ତର୍ଯାମୀ । ସେ ଜାଣିଥିଲେ ଯେ ଏହା ବୃନ୍ଦାବନର ଶୋଭା ନୁହେଁ କି ଗିରିଗୁମ୍ଫା ନୁହେଁ । ଏହା ଯଥାର୍ଥରେ ଏକ ଅଜଗର ସାପ । ଅଜଗର ରୂପ ଧରି କଂସର ସଖା, ବକା ଓ ବକର ଭାଇ ଅଘାସୁର ଆସିଛି । ଭାଇ ଓ ଭଉଣୀ ଉଦ୍ଧାର ପାଇଯାଇଛନ୍ତି । ଅଘାସୁର ସେଥିରୁ ବଞ୍ଚିତ ହେବା

ଉଚିତ ନୁହେଁ । ଏହାଙ୍କୁ ମଧ୍ଯ ପରମପଦ ମିଳିବା ଆବଶ୍ୟକ । ନିଜ ଭାଇ ଓ ଭଉଣୀର ପଥ ଏ ମଧ୍ଯ ଅନୁସରଣ କରିବା ଉଚିତ ।''

ଶୌନକ ପଚାରିଲେ—''ମହାଭାଗ ! ଭଗବାନ୍ ନିଜର ସଖାମାନଙ୍କୁ ଅସୁର ମୁଖ ମଧ୍ଯକୁ ଯିବାବେଳେ ବାରଣ କଲେ ନାହିଁ କାହିଁକି ?''

ମହର୍ଷି ସୂତ କହିଲେ—''ମହାଶୟ ! ଭଗବାନ୍ ନିଶ୍ଚୟ ସେମାନଙ୍କୁ ବାରଣ କରିବା ପାଇଁ ସ୍ଥିର କରିଥିଲେ । ଆରେ ରୁହ ରୁହ, ଏହା ଖୁବ୍ ଦୂରରୁ କହିଥିଲେ ; କିନ୍ତୁ ଭଗବାନ୍ ଦୂରରେ ଥିବାରୁ ତାଙ୍କ କଥା କେହି ଶୁଣିପାରିଲେ ନାହିଁ ଏବଂ ଶୁଣିଲେ ମଧ୍ଯ ନ ଶୁଣିଲା ପରି ରହିଲେ । ବାଳସୁଲଭ ଚପଳତା ଥିଲା । ଯାହା ଥରେ ମନରେ ଆସେ ତାହା କରି ସାରିଲେ ଯାଇ ସେମାନେ ସ୍ଥିର ହୁଅନ୍ତି । ଭଗବାନ ମନା କରୁ କରୁ ସମସ୍ତେ ଅସୁରର ପେଟ ଭିତରକୁ ପଶିଗଲେ ।''

ଶୌନକ ପଚାରିଲେ—''ଭଗବାନ୍ ସେମାନଙ୍କୁ ନିଜର ଯୋଗୀ ଶକ୍ତି ବଳରେ ଅଟକେଇ ପାରିଥାନ୍ତେ ।''

ମହର୍ଷି ସୂତ ହସି ହସି କହିଲେ—''ମହାଶୟ ! ଖେଳରେ କେହି କ'ଣ ଯୋଗୀ ଶକ୍ତି ପ୍ରଦର୍ଶନ କରେ । ଖେଳ ତ ଖେଳ । ଆଉ ଯାହା କିଛି ହେଲା ସେସବୁ ସେହି ଭଗବାନଙ୍କ ଇଚ୍ଛାରେ ହେଲା । ଭଗବାନଙ୍କୁ ଲୀଳା କରିବାର ଥିଲା ଓ ଅଘାସୁର ଉଦ୍ଧାର ହେବାର ଥିଲା । ସେଥିପାଇଁ ଏ ସବୁ ଘଟିଥିଲା । ଭଗବାନ୍ ଯେଉଁଠି ଥାଆନ୍ତି ସେଠାରେ ଅନିଷ୍ଟର ସମ୍ଭାବନା ହିଁ ନ ଥାଏ ।''

ଶୌନକ କହିଲେ—''ହଁ ମହାଭାଗ ! ଆପଣଙ୍କ କହିବା ଯଥାର୍ଥ । ଭଗବାନ ହିଁ ସବୁକିଛି କରନ୍ତି ଓ କରାନ୍ତି । ଏସବୁ ଲୀଳାଧାରୀଙ୍କ ଲୀଳା, କୌତୁକୀର କୌତୁକ ଓ ବିନୋଦୀର ବିନୋଦ । ଜଗତର ହର୍ଷ ଓ ବିସ୍ମୟଠାରୁ ଭଗବାନ୍ ପୃଥକ୍ । ତାଙ୍କର କିଛି ନା କିଛି ଖେଳ ଦରକାର । କ୍ରୀଡ଼ାପ୍ରିୟ ହୋଇଥିବାରୁ ସେ କ୍ରୀଡ଼ା ନ କରି ରହିପାରନ୍ତି ନାହିଁ । ହଉ, ତା' ପରେ କ'ଣ ହେଲା ?''

ମହର୍ଷି ସୂତ କହିଲେ—''ଭଗବନ୍ ! ସବୁ ବାଳକ ଓ ବାଛୁରୀ ଅଘାସୁରର ମୁଁହର ଭିତରକୁ ଚାଲିଗଲେ । ତଥାପି ସେ ତା'ର ମୁଖ ବନ୍ଦ କଲା ନାହିଁ । ସେ ଭାବିଲା—ପ୍ରଧାନ ଶତ୍ରୁ ତ ଏ ପର୍ଯ୍ୟନ୍ତ ଆସିଲା ନାହିଁ । ଯେଉଁ ଶ୍ରୀକୃଷ୍ଣ ମୋର ଭାଇ ଓ ଭଉଣୀଙ୍କୁ ମାରିଦେଇଛି ସେ ଆସିଲେ ହିଁ ମୁଖ ବନ୍ଦ କରିବି । ଏହା ଭାବି ସେ ଶ୍ରୀକୃଷ୍ଣଙ୍କ ଆସିବା ବାଟକୁ ଚାହିଁ ରହିଲା ।''

ଭଗବାନ ସର୍ବଦା ଭକ୍ତଙ୍କୁ ଅନୁସରଣ କରନ୍ତି । ଭକ୍ତ ଯୁଆଡ଼େ ଯାଏ ଭଗବାନ ତା' ପଛେ ପଛେ ଯାଆନ୍ତି । ଭକ୍ତଙ୍କୁ ଅଭୟ ପ୍ରଦାନକାରୀ ଭୟହାରୀ ଭଗବାନ

ଭାବିଲେ—ଏହି ଗୋପାଳ ବାଳକମାନେ ମୋ'ର ବିଶ୍ୱାସରେ ଅଜଗର ମୁହଁ ଭିତରେ ପଶିଗଲେ । ମୋ' ଉପରେ ତାଙ୍କର ଭରସା ଅଛି । ମୋ' ଛଡ଼ା ତାଙ୍କର ଅନ୍ୟ କେହି ରକ୍ଷକ ନାହିଁ । ସେମାନେ ମୋ' ହାତରୁ ଯାଇ ମୃତ୍ୟୁର ଜଠରାନଳରେ ପଶି ଯାଇଛନ୍ତି । ସେମାନଙ୍କୁ ଯଥାଶୀଘ୍ର ଉଦ୍ଧାର କରିବା ଆବଶ୍ୟକ ।

ଭଗବାନ ସେତେବେଳେ ଚିନ୍ତାଗ୍ରସ୍ତ ଦେଖାଯାଉଥିଲେ । ସତେ ଯେପରି ସେ ଦୈବର ବିଚିତ୍ର ଲୀଳା ବିଷୟରେ ବିସ୍ମିତ ହୋଇ ଯାଇଥିଲେ ଏବଂ ଦୀନ, ଦୁଃଖୀ, ସରଳ ଗୋପାଳ ବାଳକମାନଙ୍କ ପ୍ରତି ଦୟାଭାବ ପ୍ରଦର୍ଶନ କରୁଥିଲେ । ଲୀଳା ଅନୁସାରେ ସେ ଭାବ ସୃଷ୍ଟି କରନ୍ତି । କାରଣ ସେ ହେଉଛନ୍ତି ନଟବର । ସେ ଚିନ୍ତିତ ହୋଇ ଭାବିବାକୁ ଲାଗିଲେ—ବର୍ତ୍ତମାନ ଯେପରି ଏହି ନିରପରାଧ ବାଳକ ଓ ବାଛୁରିଗୁଡ଼ିକଙ୍କର ଜୀବନ ରକ୍ଷା ହେବ ଏବଂ ଅସୁର ମଧ୍ୟ ଉଦ୍ଧାର ହୋଇଯିବ । ବହୁତ ଭାବିବାପରେ ସେ ସ୍ଥିର କରି ନିଜକୁ ନିଜେ କହିଲେ—ଏହା ହିଁ କରିବା ଉଚିତ ହେବ । ଯେ ମୋର ଅନୁଗତ ତା'ର ପଛରେ ରହିବା ମୋର କର୍ତ୍ତବ୍ୟ ; ତେଣୁ ଗୋପାଳବାଳକ ଓ ବାଛୁରିଗୁଡ଼ିକ ଯେଉଁ ବାଟେ ଯାଇଛନ୍ତି ତାଙ୍କ ପଛେ ପଛେ ମୁଁ ମଧ୍ୟ ଅଘାସୁର ମୁଖଗହ୍ୱରରେ ପ୍ରବେଶ କରିବି ।

ମହର୍ଷି ସୂତ କହିଲେ—"ମୁନିଗଣ ! ଭଗବାନ ଶ୍ରୀକୃଷ୍ଣ ଅଜଗର ମୁଖରେ ପ୍ରବେଶ କରିବା ପରେ ଅଘାସୁର ଖୁସି ହୋଇଗଲା । ଆକାଶରେ ଥିବା ଅସୁରଗଣ ଏହା ଦେଖି ଆନନ୍ଦରେ ଡେଇଁବାକୁ ଲାଗିଲେ । ଅଘାସୁରର ଅତ୍ୟାଚାରରେ ଦୁଃଖିତ ଦେବଗଣ ଏହି କରୁଣ ଦୃଶ୍ୟରେ ମର୍ମାହତ ହୋଇ ମେଘମଣ୍ଡଳ ମଧ୍ୟରେ ଥିବା ରଥରେ ବସି ହାହାକାର କରିବାକୁ ଲାଗିଲେ । ବର୍ତ୍ତମାନ ଅଘାସୁରର ପେଟ ଭିତରେ ରହି ଅସୁରାରି ଶ୍ରୀକୃଷ୍ଣ ଯେଉଁ ଲୀଳା କଲେ ତାହା କହୁଛି ଶୁଣନ୍ତୁ ।"

## ଛପ୍ପୟ

ନନ୍ଦନନ୍ଦନ ସରବଜ୍ଞ ସକଳ କେ ଘଟ କୀ ଜାନେଁ ।
ଅସୁର ଅଘାସୁର ଢଙ୍ଗ ବନ୍ଧୁଘାତୀ ରିପୁ ମାନେଁ ।
ଅଘ ମୁଖ ପ୍ରବିଶେ ତୁରତ ଦୟାସାଗର ବନବାରୀ ।
ସବ ସୁର ହାହାକାର କରେଁ ସୁଖ ଅସୁରନ ଭାରୀ ॥
ଅନୁଗତ ପାଲନ କେ ନିମିତ୍ତ, ସବ କାରଜ ନଟବର କରହିଁ ।
ଭକ୍ତ ଚରନ ରଜ ଲେଉଁ, ନିତ ପୀଛେ ପୀଛେ ଫିରହିଁ ॥



## ଅଘାସୁର ଉଦ୍ଧାର

ସକୃଦ୍‌ଯଦଙ୍ଗପ୍ରତିମାନ୍ତରାହିତା
ମନୋମୟୀ ଭାଗବତୀଂ ଦଦୌ ଗତିମ୍ ।
ସ ଏବ ନିତ୍ୟାତ୍ମସୁଖାନୁଭୂତ୍ୟଭି—
ବ୍ୟୁଦସ୍ତମାୟୋଽନ୍ତର୍ଗତୋ ହି କିଂ ପୁନଃ ॥
(ଶ୍ରୀ ଭା ୧୦ ସ୍କ, ୧୨ ଅ, ୩୯ ଶ୍ଳୋକ)

### ଛପ୍‌ପୟ

ମୁଖମହଁ ହରକୁଁ କରଖି ଅଘାସୁର ଅତ ହରଷାୟୋ ।
ସୁର ମୁନ ଚକ୍ରିତ ଲଖେ ଶ୍ୟାମ ତନୁ ବୁରତ ବଢ଼ାୟୋ ॥
ସ୍ୱାଁସ ରୁକୀ ସୁର ରୁନ୍ଧ ନେତ୍ର ନକସେ ଫାଟେ୍ୟା ସିର ।
ବଛବ ବାଳ ଜିବାଇ କରେ ଅଘ ମୁଖ ତେଁ ବାହିର ॥
ଅସୁର ବଦନତେଁ ଜ୍ୟୋତି ଇକ, ଦିବ୍ୟ ନିକସି ଠାଢ଼ୀ ଭଈ ।
ମୁଖତେଁ ହିର ନିକସେ ତବହିଁ, ଶ୍ୟାମ ଅଙ୍ଗ ମହଁ ମିଲ ଗଈ ॥

ନିଜର ସର୍ବସ୍ୱକୁ ଯେଉଁମାନେ ଶ୍ୟାମସୁନ୍ଦରଙ୍କର ଚରଣାରବିନ୍ଦରେ ସମର୍ପଣ କରିଛନ୍ତି, ନନ୍ଦନନ୍ଦନଙ୍କୁ ସବୁର ଆଧାର ବୋଲି ବୁଝିଛନ୍ତି, ଶ୍ରୀହରି ସେମାନଙ୍କ ପାଖେ ପାଖେ ସବୁବେଳେ ଥାଆନ୍ତି । ଯଦି କୌଣସି କାରଣବଶତଃ ଭକ୍ତ ଅଶୁଦ୍ଧ ସ୍ଥାନକୁ ଚାଲିଯାଏ ତେବେ ଭଗବାନ ମଧ୍ୟ ତା' ପଛେ ପଛେ ଅନୁଗମନ କରନ୍ତି । ସେ କେବେ-ହେଲେ ଭକ୍ତକୁ ଛାଡ଼ି ରହିପାରନ୍ତି ନାହିଁ । ଭକ୍ତ ଯୁଆଡ଼େ ଯାଏ ଭଗବାନ ସେଇଆଡ଼େ ଯାଆନ୍ତି । ଭଗବାନ ଯେଉଁଠାକୁ ଗଲେ ସେଠାରେ ଆଉ ଅପବିତ୍ରତାର ସ୍ଥାନ ନାହିଁ । ଦୁଃଖ ଆମର ଦୁଃଖ ହୋଇ ସେଇପର୍ଯ୍ୟନ୍ତ ରହେ ଯେପର୍ଯ୍ୟନ୍ତ ଶ୍ୟାମସୁନ୍ଦର ପାଖକୁ ଆସି ନ ଥାନ୍ତି । ତାଙ୍କ ସହିତ ଥିବାବେଳେ ବିପତ୍ତି ମଧ୍ୟ ସମ୍ପତ୍ତିଠାରୁ ଅଧିକ ସୁଖକର ହୁଏ ଏବଂ ଦୁଃଖ ମଧ୍ୟ ସୁଖଠାରୁ ଅଧିକ ଆନନ୍ଦଦାୟକ ହୁଏ ।

ମହର୍ଷି ସୂତ କହିଲେ—"ମୁନିଗଣ ! ଅଘାସୁର ଚାହୁଁଥିଲା—ଶ୍ରୀକୃଷ୍ଣଚନ୍ଦ୍ର କୌଣସିମତେ ମୋର ପାଟି ଭିତରକୁ ଆସନ୍ତୁ । ସର୍ବାନ୍ତର୍ଯ୍ୟାମୀ ପ୍ରଭୁ ସ୍ୱୟଂ ଯେତେବେଳେ

ମୁଖଗହ୍ୱରରେ ପ୍ରବେଶ କଲେ ସେତେବେଳେ ତା'ର ଆନନ୍ଦର ସୀମା ରହିଲ ନାହିଁ । ନିଜର କାର୍ଯ୍ୟ ସଫଳ ହେଲ ବୋଲି ଭାବି ଅଘାସୁର ମନକୁ ମନ କହିଲ—ଏବେ ପାଟି ବନ୍ଦକରି ସମସ୍ତଙ୍କୁ ସାବାଡ କରି ଦେବି । ଅଘାସୁର ଏହିପରି ଭାବି ମନେ ମନେ ଖୁସି ହେଉଥିବାବେଳେ ତା'ର ସାଙ୍ଗମାନେ ଆନନ୍ଦରେ ନାଚୁଥିଲେ । କଂସକୁ ଯାଇ କେତେକ ଖବର ଦେଲେ—ତୁମର ଶତ୍ରୁକୁ ଅଘାସୁର ଗିଳିଦେଇଛି; କିନ୍ତୁ ଅସୁରର ମୃତ୍ୟୁ ଇଚ୍ଛା କରୁଥିବା ଦେବଗଣ ଆକାଶର ମେଘମାଳା ମଧ୍ୟରେ ଲୁଚି ରହି ହାହା ହାହା କରିବାକୁ ଲାଗିଲେ ।"

ଶ୍ରୀକୃଷ୍ଣଚନ୍ଦ୍ର ଗୋପାଳବାଳକ ଓ ବାଛୁରୀଙ୍କ କଥା ଭାବି ସେମାନଙ୍କୁ ଅଘାସୁର ମୁଖରୁ ଉଦ୍ଧାର କରିବା ବିଷୟ ଚିନ୍ତା କରୁଥିଲେ; କିନ୍ତୁ ଦେବତାମାନଙ୍କ ହାହାକାର ଶବ୍ଦ ଶୁଣି ସେ ଚିନ୍ତିତ ହୋଇ ପଡ଼ିଲେ । ଏହି ଲୀଳାକୁ ସେ କରୁଣାର୍ଦ୍ର କରିବା ପାଇଁ ଇଚ୍ଛା କରୁ ନ ଥିଲେ ବି ଲୀଳାର ଏକ ପ୍ରେରଣା ଶକ୍ତି ଅଛି । ସେହି ପ୍ରେରଣା ଶକ୍ତି ଅବସ୍ଥା ଅନୁସାରେ ପ୍ରବାହିତ କରେ । ସେଥିପାଇଁ ଶ୍ରୀକୃଷ୍ଣ ବାଳଭାବ ପରିହାର କରିବାକୁ ଯାଇ ଭାବିଲେ—ବାଳକ ସିନା ବୃନ୍ଦାବନରେ, ଅସୁରମାନଙ୍କଠାରେ ସେ ଷଡ଼ୈଶ୍ୱର୍ଯ୍ୟସମ୍ପନ୍ନ ଭଗବାନ । ବାଳକ ବନ୍ଧୁ ଓ ବାଛୁରୀଗୁଡ଼ିକ ବିଷାକ୍ତ ବାୟୁରେ ମୃତତୁଲ୍ୟ ହୋଇପଡ଼ିଲେଣି । ଏହି ଅସୁରର ଅନ୍ଧକାରମୟ ଉଦର ମଧ୍ୟରେ ମୋର ଐଶୀ ଶକ୍ତିକୁ କିଏ ବା ଦେଖିପାରିବ ? ପ୍ରଭୁର ଚରଣ ପାଖରେ ରହି ଭକ୍ତ କଷ୍ଟ ପାଇବ, ଏହା ବଡ଼ ଲଜ୍ଜାର ବିଷୟ । ଏହିପରି ଭାବି ଶ୍ରୀକୃଷ୍ଣ ବାଳକଭାବ ତ୍ୟାଗ କରି ମହିମା ପ୍ରଦର୍ଶନ କଲେ ଏବଂ ନିଜର କଳେବର ବୃଦ୍ଧି କରିବାକୁ ଲାଗିଲେ ।

ଅଘାସୁର ନିଜର ଶରୀରକୁ ଦୁଇକୋଶ ଲମ୍ବା କରି ଭାବିଥିଲ ବୃନ୍ଦାବନର ବାଳକ ଓ ବାଛୁରୀ ସମସ୍ତେ ତା' ପେଟ ଭିତରେ ରହିଯିବେ । ସେ ଜାଣି ନ ଥିଲ ବାଳକ କୃଷ୍ଣ ମଧ୍ୟ ଭିତ ପରି ନିଜର ଶରୀରକୁ ବଢ଼ାଇବେ । ଭଗବାନଙ୍କ ଶରୀର ବଢ଼ିବା ସଙ୍ଗେ ସଙ୍ଗେ ଅସୁରର କଣ୍ଠ ଅବରୁଦ୍ଧ ହୋଇଗଲ । ଧୀରେ ଧୀରେ ଶ୍ୱାସ ପ୍ରଶ୍ୱାସର ଗତି ବନ୍ଦ ହେଲ । ସେ ଆଖି କାଢ଼ି ବ୍ୟାକୁଳଭାବେ ଛଟପଟ ହେବାକୁ ଲାଗିଲ । ମୁଖ, ନାକ, ଆଖି ଓ କାନ କଣ୍ଠର ଉପରି ଭାଗରେ ଥାଏ ଏବଂ ସେହି ଦ୍ୱାର ଦେଇ ପ୍ରାଣ ବାହାରକୁ ଆସେ । କଣ୍ଠରେ ଶ୍ରୀକୃଷ୍ଣଙ୍କର ଜମବର୍ଦ୍ଧମାନ ଶରୀର ଥିବାରୁ ଅଘାସୁରର ଦଶମଦ୍ୱାର ବ୍ରହ୍ମରନ୍ଧ୍ର ଫାଟିଗଲ । ସେଇ ବାଟରେ ବାହାରକୁ ଆସି ତା'ର ଦିବ୍ୟଶରୀର ତେଜପୁଞ୍ଜ ହୋଇ ଆକାଶରେ ସ୍ଥିର ହୋଇ ରହିଗଲ ।

ଏହା ଶୁଣି ଶୌନକ ପଚାରିଲେ—"ମହାଶୟ ! ଆପଣ ଯେଉଁ ସାତୋଟି ଦ୍ୱାର କଥା କହିଲେ ତା' ଛଡ଼ା ମଳ ଓ ମୂତ୍ର ତ୍ୟାଗ କରିବାର ଆଉ ଦୁଇଟି ଦ୍ୱାର ଅଛି । ସେ ବାଟରେ କି ପ୍ରାଣ ଯାଇ ପାରନ୍ତା । ଅସୁରର ପ୍ରାଣ ସେବାଟେ ଗଲନାହିଁ କାହିଁକି ?"

ମହର୍ଷି ସୂତ କହିଲେ—"ମଳ ଓ ମୂତ୍ର ନିର୍ଗମନ ମାର୍ଗରେ ପାପୀମାନଙ୍କ ପ୍ରାଣ ବାହାରିଯାଏ । ପ୍ରାଣ ଯିବାବେଳେ ମଳଦ୍ୱାରରେ ମଳ ନିର୍ଗତ ହୁଏ ଏବଂ ମୂତ୍ରଦ୍ୱାରରେ ପ୍ରାଣ ଗଲେ ଅଧିକ ମୂତ୍ର ବା ରକ୍ତ ନିର୍ଗତ ହୁଏ ।"

ଶୌନକ ପୁଣି ପଚାରିଲେ—"ମହାଶୟ ! ଅଘାସୁର ଯେ ଏକ ପାପୀ ଥିଲା ସେଥିରେ କ'ଣ ସନ୍ଦେହ ଅଛି ? ବାଛୁରୀଟିଏ ଭୁଲ୍‌ବଶତଃ ମରିଗଲେ ସେଥିପାଇଁ ଲକ୍ଷେ ବର୍ଷ ପର୍ଯ୍ୟନ୍ତ ଘୋର ନରକ ଯାତନା ଭୋଗ କରିବାକୁ ପଡ଼େ । ଦୁଷ୍ଟ ଅଘାସୁର କେତେ ବାଛୁରୀଙ୍କୁ ଉଦରସ୍ଥ କରିଥିଲା ତା'ର ସଂଖ୍ୟା କହିହେବ ନାହିଁ । କେତେ ଯେ ଗୋପାଳ-ପିଲାଙ୍କୁ ଗିଳିଥିଲା ତା' ବି କହିବା ସମ୍ଭବ ନୁହେଁ । ଏହାଠାରୁ ବଳି ଆଉ ଅଧିକ ଗୁରୁତର ପାପ କ'ଣ ହୋଇପାରେ ? ତେଣୁ ଅଘାସୁର କ'ଣ ପାପୀ ନ ଥିଲା ?"

ମହର୍ଷି ସୂତ ହସି ହସି କହିଲେ— "ମହାଭାଗ ! ଯେବେ ସେ ପାପୀ ଥିଲା ସେତେବେଳେ ଥିଲା । ଏବେ ତ ସେ ଆଉ ପାପୀ ନୁହେଁ । ବଡ଼ ବଡ଼ ଯୋଗୀଙ୍କଠାରୁ ବି ସେ ଆହୁରି ଉପରେ । ମରିବାବେଳେ ଯଦି ପ୍ରଭୁଙ୍କର ଦୁଇ ଅକ୍ଷର ବିଶିଷ୍ଟ ନାମ ମନେ ପଡ଼ିଯାଏ ତେବେ ସେ ସଦ୍‌ଗତି ଲାଭ କରେ । ସେ ଦୃଷ୍ଟିରୁ ଅସୁରର କଣ୍ଠରେ ତ ସ୍ୱୟଂ ଭଗବାନ ବିରାଜମାନ କରିଥିଲେ । ଚିନ୍ମୟ ଭଗବାନଙ୍କୁ ପ୍ରତ୍ୟକ୍ଷ ଭାବେ ଦେଖିବା କେବଳ ଭାଗ୍ୟଶାଳୀ ପକ୍ଷରେ ସମ୍ଭବ । ଆମେ ତାଙ୍କର ପ୍ରତିମା ତିଆରି କରି ଓ ମନୋମୟୀ, ଭାବମୟୀ ମୂର୍ତ୍ତି କଳ୍ପନା କରି ଧ୍ୟାନ କରୁଛୁ । ଭଗବାନଙ୍କର ସେହି ମନୋମୟୀ ମୂର୍ତ୍ତିକୁ ଥରେମାତ୍ର ଦର୍ଶନ କଲେ ସମସ୍ତ ଅଶୁଭ ଦୂର ହେବା ସଙ୍ଗେ ସଙ୍ଗେ ବ୍ୟକ୍ତି ପରମପଦର ଅଧିକାର ଲାଭକରେ । ଯଦି ଭଗବାନଙ୍କ ମନୋମୟୀ ଅଥବା ଭବମୟୀ ମୂର୍ତ୍ତିର ଥରେ ମାତ୍ର ସାକ୍ଷାତରେ ଏତେ ସୁଫଳ ମିଳେ ତେବେ ସ୍ୱୟଂ ଭଗବାନ ଯାହାର କଣ୍ଠରେ ବିରାଜମାନ ତାକୁ ପାପୀ ବୋଲି କହିବାରେ ହିଁ ପାପ ହୁଏ । କୋଟି କୋଟି ପୁଣ୍ୟାତ୍ମାଙ୍କଠାରୁ ବଳି ତା'ର ସ୍ଥାନ ଆହୁରି ଊର୍ଦ୍ଧ୍ୱରେ ।"

ଆନନ୍ଦିତ ହୋଇ ଶୌନକ କହିଲେ—"ହଁ ମହାଶୟ ! ମୋର ଭୁଲ୍ ହୋଇ-ଯାଇଛି । ମୁନିଗଣ କୋଟି କୋଟି ଜନ୍ମରେ ଯତ୍ନ କରି ମଧ୍ୟ ଶେଷରେ ପ୍ରଭୁଙ୍କ ନାମ ସ୍ମରଣ କରି ପାରନ୍ତି ନାହିଁ । କୌଣସି ସ୍ତ୍ରୀ ବା ପୁରୁଷକୁ ଥରଟିଏ ଦେଖି ମଧ୍ୟ ତା'ର ମୂର୍ତ୍ତି ହୃଦୟରେ ଅଙ୍କିତ ହୋଇଯାଏ । ତା' ପ୍ରତି ଆକର୍ଷଣ ଜାତ ହେଲେ ତା'ର ମୂର୍ତ୍ତି ଆଖି ଆଗରେ ସବଦା ନାଚୁଥାଏ ; କିନ୍ତୁ ଭଗବାନଙ୍କ ଚିତ୍ରପଟର, ମନୋମୟୀ, ଭାବମୟୀ ମୂର୍ତ୍ତିକୁ ସାରାଜୀବନ ଆଖି ଆଗରେ ରଖି ଧ୍ୟାନ କଲେ ମଧ୍ୟ ତାହା ଧ୍ୟାନରେ ପରିଦୃଷ୍ଟ ହୁଏ ନାହିଁ । ସେହି ପରାତ୍ପର ପ୍ରଭୁ ଯାହା କଣ୍ଠଦେଶରେ ରହନ୍ତି ତା'ର ଅଧୋଗତି କପରି ହେବ ? ହଉ, ତା'ପରେ କ'ଣ ହେଲା ? ଅଘାସୁରର ଶରୀରରୁ ନିର୍ଗତ ଜ୍ୟୋତି ଆକାଶ

ମଣ୍ଡଳରେ ସ୍ଥିର ହୋଇ ରହିଲା କାହିଁକି ? ସର୍ବବ୍ୟାପୀ ବ୍ରହ୍ମରେ ତାହା ବିଲୀନ ହେଲା ନାହିଁ କାହିଁକି ?"

ମହର୍ଷି ସୂତ କହିଲେ—ମହାଶୟ ! ଜୀବ ମୃତ୍ୟୁପୂର୍ବରୁ ଯାହାକୁ ଧ୍ୟାନ କରେ ସେହି ରୂପରେ ବିଲୀନ ହୁଏ । ଆମେ ସ୍ତ୍ରୀ, ପିଲା ଇତ୍ୟାଦିଙ୍କ ଚିନ୍ତା କରୁଥିବାରୁ ପୁଣି ସେହି ରୂପରେ ଜନ୍ମ ହେଉଁ । ଯଦି ସାଧୁ ସନ୍ଥଙ୍କ ଧ୍ୟାନ କରନ୍ତେ ତେବେ ତାହାହିଁ ହୁଅନ୍ତେ ; ତେଣୁ ମୃତ୍ୟୁ ସମୟରେ ପଶୁ, ପକ୍ଷୀ, ମଣିଷ, ଦେବତା ଯାହାକୁ ଜୀବ ଧ୍ୟାନ କରେ ସେହି ରୂପ ଧାରଣ କରେ । ସେହିପରି ବ୍ରହ୍ମ ସ୍ୱରୂପ ଧ୍ୟାନ କଲେ ବ୍ରହ୍ମରୂପ ଲାଭହୁଏ । ଅଘାସୁର ବ୍ରହ୍ମବାଦୀ ନ ଥିଲା । ନିର୍ଗୁଣ ନିରାକାର ବ୍ରହ୍ମଙ୍କୁ ସେ ଧ୍ୟାନ କରୁ ନ ଥିଲା । ତେଣୁ ସେ ସେ ବ୍ରହ୍ମରେ ଲୀନ ହୋଇଥାନ୍ତା କିପରି ? ସେ ବୃନ୍ଦାବନଚନ୍ଦ୍ର ନନ୍ଦନନ୍ଦନ, ଶ୍ୟାମସୁନ୍ଦରଙ୍କୁ ଧ୍ୟାନ କରି ହିଁ ମୃତ୍ୟୁବରଣ କରିଥିଲା । ଶ୍ରୀକୃଷ୍ଣ ସେପର୍ଯ୍ୟନ୍ତ ଅଘାସୁରର କଣ୍ଠଦେଶରେ ଲୁଚି ରହିଥିଲେ । ଯେତେବେଳେ ସେ ବାହାରକୁ ଆସିବେ ସେତେବେଳେ ତାଙ୍କର ଅଙ୍ଗରେ ସେ ବିଲୀନ ହେବ । ସେଥିପାଇଁ ଅଘାସୁରର ଜୀବନଜ୍ୟୋତି ଆକାଶରେ ପ୍ରଭୁଙ୍କ ପ୍ରତୀକ୍ଷାରେ ସ୍ଥିର ହୋଇ ରହିଥିଲା ।"

ଅଘାସୁର ଶରୀରରୁ ତା'ର ସୂକ୍ଷ୍ମ ଶରୀର ଯେତେବେଳେ ପୃଥକ୍ ହୋଇଗଲା ସେତେବେଳେ ତା'ର ପାପମୟ ସ୍ଥୂଳଶରୀର ଶ୍ରୀକୃଷ୍ଣଙ୍କ ସ୍ପର୍ଶରେ ପବିତ୍ର ହୋଇଗଲା । ଭଗବାନ ଅଘାସୁରର ଉଦରରେ ଥିବା ମୃତତୁଲ୍ୟ ଗୋପାଳବାଳକ ଓ ବାଛୁରୀଙ୍କୁ ନିଜର ଅମୃତମୟୀ ଦୃଷ୍ଟିରେ ଚାହିଁବାମାତ୍ରେ ସମସ୍ତେ ପୁନର୍ଜୀବନ ଲାଭ କଲେ । ସେମାନଙ୍କୁ ସାଙ୍ଗରେ ଧରି ନନ୍ଦନନ୍ଦନ ଶ୍ୟାମସୁନ୍ଦର ଅଘାସୁର ମୁଖରୁ ବାହାରକୁ ଆସିଲେ । ଶ୍ୟାମସୁନ୍ଦର ବାହାରକୁ ଆସିବାମାତ୍ରେ ଅଘାସୁରର ଜ୍ୟୋତି ତାଙ୍କର ଦେହରେ ବିଲୀନ ହୋଇଗଲା । ଦେବତା, ଗନ୍ଧର୍ବ ଓ ଗୋପାଳ ବାଳକମାନେ ଏହା ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ଆକାଶରୁ ପୁଷ୍ପବୃଷ୍ଟି ହେଲା । ଅପ୍ସରାଗଣ ନୃତ୍ୟ କରିବାକୁ ଲାଗିଲେ । ଗନ୍ଧର୍ବଗଣ ଗୋବିନ୍ଦ ନାମ କୀର୍ତ୍ତନ କଲେ । ବିଦ୍ୟାଧରମାନେ ବିବିଧ ଶୈଳୀରେ ବାଦ୍ୟ ବଜାଇବାକୁ ଲାଗିଲେ । ବ୍ରାହ୍ମଣମାନେ ବେଦପାଠ କଲେ । ସମସ୍ତେ ଏହିପରି ନିଜ ନିଜ କାର୍ଯ୍ୟ ଓ ଆଚରଣ ଦ୍ୱାରା ଶ୍ରୀକୃଷ୍ଣଚନ୍ଦ୍ରଙ୍କୁ ବହୁଧା ସମ୍ମାନିତ କରିଥିଲେ ।

ଅଘାସୁରର ଅତ୍ୟାଚାରରେ ବ୍ୟସ୍ତ ବିବ୍ରତ ହୋଇଥିବା ମର୍ତ୍ତ୍ୟବାସୀ ଓ ସ୍ୱର୍ଗବାସୀ ଦେବ, ଗନ୍ଧର୍ବଗଣ ସହସା ତା'ର ସଦ୍‌ଗତି ଲାଭ କରିବାର ଦେଖି ସମସ୍ତେ ଅତ୍ୟନ୍ତ ଆନନ୍ଦିତ ହେବା ସଙ୍ଗେ ସଙ୍ଗେ ଉଚ୍ଚସ୍ୱରରେ ଜୟଜୟକାର ଶବ୍ଦ କରିବାକୁ ଲାଗିଲେ । ସେହି ଶବ୍ଦ ପିତାମହ ବ୍ରହ୍ମାଙ୍କ କାନରେ ପଡ଼ିବାରୁ ସେ ଭାବିଲେ ପୃଥିବୀରେ କେଉଁ ଉତ୍ସବ ଉପଲକ୍ଷେ ଏପରି ଆନନ୍ଦ କୋଳାହଳ ହେଉଛି । ତାଙ୍କର ଅତ୍ୟଧିକ ଆଗ୍ରହଜାତ ହେଲା ।

ସେ ଶୀଘ୍ର ବାହନ ହଂସକୁ ଉଡାଇ ତା' ଉପରେ ବସି ଅକ୍ଷିପିଛୁଳାକେ ଆସି ପହଞ୍ଚିଲେ । ସମସ୍ତ ଦେବତା, ଋଷି, ମୁନି, ଗନ୍ଧର୍ବ, ବିଦ୍ୟାଧର, ନାଗ, ଗୁହ୍ୟକ ତଥା ଅନ୍ୟାନ୍ୟ ଦେବ, ଉପଦେବମାନଙ୍କ ଉଚ୍ଚସ୍ୱର ଆନନ୍ଦ କୋଳାହଳରେ ସମ୍ମିଳିତ ହୋଇଥିବାର ଦେଖି ସେ ବିସ୍ମିତ ହୋଇପଡ଼ିଲେ । ଭଗବାନ ଶ୍ରୀକୃଷ୍ଣଙ୍କ କାନ୍ଧରେ ବାଡ଼ିଟିଏ ପକାଇ ଅଣ୍ଟାରେ ମୁରଲୀ ଖୋସି ବାଳକ ସାଙ୍ଗମାନଙ୍କ ହସି ଖେଳି ପ୍ରେମ ପୂର୍ବକ କଥାବାର୍ତ୍ତା କରୁଥିବାର ଦେଖି ବ୍ରହ୍ମା ସବୁକିଛି ଭୁଲିଗଲେ । ଯେ ଦେବତା ଓ ସୁନ୍ଦରୀ ଅପସରାମାନଙ୍କ ଆଡ଼କୁ ନ ଚାହିଁ ମୂର୍ଖ ଗୋପାଳ ବାଳକମାନଙ୍କ ସହିତ ଜଣେ ସାଧାରଣ ଗାଉଁଲି ବାଳକରୂପେ କଥାବାର୍ତ୍ତା କରୁଛି ସେ କିଏ ବୋଲି ପିତାମହ ବ୍ରହ୍ମା ଭାବିବାକୁ ଲାଗିଲେ ।

ଦେବଗଣ ଭଗବାନ ଶ୍ରୀକୃଷ୍ଣ ଓ ଲୋକ ପିତାମହ ବ୍ରହ୍ମାଙ୍କୁ ପ୍ରଣାମ ଜଣାଇ ନିଜ ନିଜ ସ୍ଥାନକୁ ଫେରିଗଲେ । କିନ୍ତୁ ବ୍ରହ୍ମା ଗୁପ୍ତଚରଙ୍କ ପରି ଗୋପନରେ ଆକାଶ ମଣ୍ଡଳରେ ରହି ଶ୍ରୀକୃଷ୍ଣଙ୍କ ଗତିବିଧି ଲକ୍ଷ୍ୟ କରିବାକୁ ଲାଗିଲେ । ଏହାର ମୁଖ୍ୟ ଉଦ୍ଦେଶ୍ୟ ହେଲା ଶ୍ରୀକୃଷ୍ଣଙ୍କର କେତେ ଐଶ୍ୱର୍ଯ୍ୟ ଅଛି ତାହାର ଗମ୍ଭୀରତା କଳନା କରିବା । ବ୍ରହ୍ମା ମନେ ମନେ ଭାବିଲେ—ମୁଁ ଚତୁର୍ଦ୍ଦଶ ଭୁବନର ସ୍ୱାମୀ । ସୁର ଅସୁର ସମସ୍ତେ ମୋତେ ପ୍ରଣାମ କରନ୍ତି । କିନ୍ତୁ ଏ ଗଉଡ଼ ପିଲା ମୋ' ଆଡ଼କୁ ଟିକିଏ ବି ଚାହିଁଲା ନାହିଁ । ଐଶ୍ୱର୍ଯ୍ୟ ବିନା କେହି ଏପରି ଅହଙ୍କାର କରିପାରିବ ନାହିଁ । ଏହିପରି ଭାବି ବ୍ରହ୍ମା ବ୍ରହ୍ମଲୋକକୁ ନ ଯାଇ ଶ୍ରୀକୃଷ୍ଣଙ୍କ କାର୍ଯ୍ୟାବଳୀ ଅନୁଧ୍ୟାନ କରିବା ନିମିତ୍ତ ଅଟକି ରହିଲେ ଏବଂ ଭଗବାନଙ୍କୁ ଚାହିଁରହିଲେ ।

ମହର୍ଷି ସୂତ କହିଲେ—"ମୁନିଗଣ ! ଭଗବାନ ଶ୍ରୀକୃଷ୍ଣ ପାଞ୍ଚ ବର୍ଷ ବୟସରେ ଏହି ଲୀଳା କରିଥିଲେ । ଶ୍ରୀକୃଷ୍ଣଙ୍କ ସାଙ୍ଗ ପିଲାମାନେ ତାଙ୍କଠାରୁ ବର୍ଷେ ଦୁଇବର୍ଷ ବଡ଼ ଥିଲେ । ସେମାନେ ନିଜ ନିଜ ଘରକୁ ଫେରିଯାଇ ଶ୍ରୀକୃଷ୍ଣଙ୍କର ଛଅ ବର୍ଷରେ ନିଜର ଆତ୍ମୀୟମାନଙ୍କୁ କହିଲେ—ଆଜି ଶ୍ରୀକୃଷ୍ଣ ଏକ ବଡ଼ ସାପକୁ ମାରିଦେଲେ । ଗ୍ରେଷ୍ଟ ପିଲାମାନେ ଅଜଗର ହୋଇଥିବା ଅଘାସୁରକୁ ଏକ ଗୁମ୍ଫା ବୋଲି କହୁଥିଲେ । ଲୁଚକାଳି ଖେଳ ଖେଳିବାବେଳେ ତା'ର ଭିତରେ ଲୁଚିଯାଉଥିଲେ ।"

ଏହା ଶୁଣିବା ପରେ ଶୌନକ ପଚାରିଲେ—"ମହାଶୟ ! ଆପଣ ଏକ ବଡ଼ ଅଦ୍ଭୁତ କଥା କହିଲେ । ଭଗବାନ୍ ପାଞ୍ଚ ବର୍ଷ ବୟସରେ ଅଘାସୁରକୁ ମାରିଥିଲେ ଏବଂ ଏକଥା ପିଲାମାନେ ବ୍ରଜକୁ ଯାଇ ଛଅ ବର୍ଷରେ କହିଲେ । ତେବେ ସେମାନେ ବର୍ଷେକାଳ କେଉଁଠି ଥିଲେ । ସେମାନେ ସେହିଦିନ ଫେରିବା ପରେ ସବୁକଥା କହିଲେ ନାହିଁ କାହିଁକି ? ପୁଣି ଷଷ୍ଠ ବର୍ଷରେ ଯାଇ ସେମାନେ ଘରେ କହିଲେ—ଆଜି ଶ୍ରୀକୃଷ୍ଣ ଏକ ବଡ଼ ସାପ ମାରିଲେ । ଏ ବିଷୟରେ ବଡ଼ ସନ୍ଦେହ ଆସୁଛି ମନରେ । ଦୟା କରି ଏହି ଶଙ୍କାର ସମାଧାନ କରନ୍ତୁ ।"

ଶୌନକଙ୍କ ପ୍ରଶ୍ନ ଶୁଣି ମହର୍ଷି ସୂତ କହିଲେ—"ମହାଭାଗ ! ଏହି ସନ୍ଦେହ ରାଜା ପରୀକ୍ଷିତଙ୍କ ମନରେ ଉଦୟ ହୋଇଥିଲା । ସେ ମୋର ଗୁରୁ ଭଗବାନ୍ ଶୁକଦେବଙ୍କୁ ଏହା ପଚାରିଥିଲେ । ରାଜାଙ୍କ ସନ୍ଦେହ ଦୂର କରିବା ପାଇଁ ଶୁକଦେବ ଯେଉଁ ଅଦ୍ଭୁତ କଥା ଶୁଣାଇଥିଲେ ତାହା ମୁଁ ଆପଣମାନଙ୍କୁ ଶୁଣାଇବି । ଆପଣମାନେ ଧୀରସ୍ଥିର ହୋଇ ତାହା ଶୁଣିବାକୁ ମୋର ଅନୁରୋଧ ।"

## ଛପ୍ପୟ

ଅଧ ଉଛାର ନହାର ଅପ୍ସର ସୁର ମୂନ ଆୟେ ।
ନୃତ୍ୟ ବାଦ୍ୟ ସଙ୍ଗୀତ ଶ୍ୟାମକୂଁ ମଧୁର ସୂନାୟେ ॥
ବେଦ ପାଠ ଦ୍ଵିଜ କରେ ଦେବ ଜୟ ଶବ୍ଦ ଉଚ୍ଚରେ ।
ବ୍ରହ୍ମଲୋକ ଋଷି ବୈଠି ବାଦ୍ୟ କୀ ବାତ ବଚ୍ଚରେ ॥
ହୋହିଁ କହାଁ ଚଲକେ ଲଖେ, ଆନନ୍ଦୋତ୍ସବ ଅବନମହଁ ।
ତୁରନ୍ତ ହଂସ ଚଢ଼ି ଚଲ ଦୟେ, ଆୟେ ବ୍ରଜ ମହଁ କୃଷ୍ଣ ଜହଁ ॥



# ମହାରାଜ ପରୀକ୍ଷିତଙ୍କ ସନ୍ଦେହ

ବ୍ରହ୍ମନ୍ କାଲାନ୍ତରକୃତଂ ତତ୍କାଲୀନଂ କଥଂ ଭବେତ୍ ।
ଯତ୍ କୌମାରେ ହରିକୃତଂ ଜଗୁଃ ପୌଗଣ୍ଡକେଽର୍ଭକାଃ ॥

(ଶ୍ରୀ ଭା ୧୦ ସ୍କ, ୧୨ ଅ, ୪୧ ଶ୍ଳୋକ)

## ଛପ୍ପୟ

ଯହ କୁମାର-ବୟ-ଚରିତ ଶିଶୁନ ପୌଗଣ୍ଡବୟସ ମହଁ ।
କହ୍ୟୋ ଆଇ ବ୍ରଜ ଶ୍ୟାମ ଆଜ ଅଘ ମାର୍ୟୋ ବନମହଁ ॥
ଶୁକତେଁ ବୋଲେ ଭୂପ ପରୀକ୍ଷିତ୍ ପ୍ରଭୁ ! ଲୁକ ଜାଓ ।
ଗୟୋ କହାଁ ଇକ ବର୍ଷ କୃପା କରି ଭେଦ ବତାଓ ॥
କର୍ମ ଦୃଗରେ ଛନ୍ନ କରୟୋ ଗ୍ରାଇ ଛନ କହି ସକହିଁ ନହିଁ ।
କୌତୂହଲ ମମ ହୃଦୟ ମେଁ, ସମାଧାନ ଗୁରୁବର ! କରହିଁ ॥

ଆମେ କହୁଁ ବର୍ଷେ ହେଲା, ଦିନେ ହେଲା । ବାସ୍ତବରେ ଦିନ କି ବର୍ଷ କିଛି ନାହିଁ । ଆମେ ନିଜର ସୁବିଧା ପାଇଁ ଏପରି କଳ୍ପନା କରିଛୁ । ସମସ୍ତ ହେଉଛି ନିତ୍ୟ । ଏହା କେଉଁଠାରୁ ଆରମ୍ଭ ହୋଇଛି ଓ କେଉଁ ପର୍ଯ୍ୟନ୍ତ ରହିବ ତାହା କେହି କହିପାରିବ ନାହିଁ । ଆମେ ସମସ୍ତଙ୍କୁ ଅନାଦି, ଅନନ୍ତ ବୋଲି କହି କାଳ କଟାଇ ନେଉଛୁ । ସମୁଦ୍ର କୂଳରେ ବସି ଆମେ ଲହରୀ ଗଣୁ ଆଉ କହୁଁ ସମୁଦ୍ରରେ ହଜାର ହଜାର ଲହରୀ ଉଠୁଛି । ଏହା ମଧ୍ୟ ଆମର କଳ୍ପନା ; କିନ୍ତୁ ସମୁଦ୍ରରେ କେବେଠାରୁ ଲହରୀ ସୃଷ୍ଟି ହୋଇଛି ଏବଂ କେତେକାଳ ଏ ଲହରୀ ଉଠୁଥିବ, ସେ ବିଷୟରେ ଆମେ ନିଜର ବୁଦ୍ଧି ଓ ସାମର୍ଥ୍ୟ ଅନୁସାରେ ସିଦ୍ଧାନ୍ତ ନେଇଛୁ । ଆମେ ଯାହାକୁ ଏକ ଘଣ୍ଟା କହୁଛୁ ସେହି ସମୟ ମଧ୍ୟରେ କୋଟି କୋଟି କ୍ଷୁଦ୍ର ଜୀବ ଶତବାର ମୃତ୍ୟୁ ବରଣ କରନ୍ତି । ସେମାନଙ୍କର କେତେ ଜନ୍ମ କଟିଯାଏ । ଯାହାକୁ ଆମେ ତିରିଶ ଦିନ ବିଶିଷ୍ଟ ଏକ ମାସ ବୋଲି କହୁଛୁ ତାହା ପିତରଙ୍କର ଏକ ଅହୋରାତ୍ର ହୁଏ ; ଯାହାକୁ ଆମେ ଅୟନ ବୋଲି କହୁ ତାହା ଦେବତାମାନଙ୍କର ଦିନଟିଏ ମାତ୍ର । ଯାହାକୁ ଏକ ଯୁଗ କୁହାଯାଏ ତାହା ବ୍ରହ୍ମାଙ୍କ ସମୟର ଏକ ଘଣ୍ଟା ବି ହୁଏ ନାହିଁ । ଯାହାକୁ ଆମେ ମନ୍ୱନ୍ତର କହୁ ବ୍ରହ୍ମାଙ୍କର ଗୋଟିଏ ଦିନରେ ସେହିପରି ଚଉଦ ମନ୍ୱନ୍ତର ଅତିବାହିତ ହୁଏ । ତେଣୁ କାଳର କୌଣସି ନିଶ୍ଚିତ ଗଣନା ପ୍ରକ୍ରିୟା ନାହିଁ । ଯେପରି ମାପ ଓଜନ ବିଭିନ୍ନ ଦେଶରେ ସୁବିଧା ଅନୁଯାୟୀ ଭିନ୍ନ ଭିନ୍ନ ପ୍ରକାର ପ୍ରଚଳିତ ଅଛି, ସେହିପରି ଭିନ୍ନ ଭିନ୍ନ ଶ୍ରେଣୀର ଜୀବଜଗତ ପାଇଁ ଭିନ୍ନ ପ୍ରକାର କାଳ ଗଣନା କରାଯାଇଥାଏ । ଶ୍ରୀକୃଷ୍ଣ ଏହି କାଳ ଗଣନାର ଊର୍ଦ୍ଧ୍ୱରେ । ସେ ହେଉଛନ୍ତି କାଳର ନିୟାମକ । ଦେଶ, କାଳର ଅବଧି ମଧ୍ୟରେ ସେ ସୀମାବଦ୍ଧ ନୁହନ୍ତି । ବ୍ରହ୍ମାଙ୍କର ମଧ୍ୟ କାଳ ଅଛି । କାଳ ହିଁ ତାଙ୍କର ସ୍ୱରୂପ । ତାଙ୍କର ଏକ ନିତ୍ୟ ଅଙ୍ଗ ଅଛି । ସେଥିପାଇଁ ତାଙ୍କ ଲୀଳାରେ ଭୂତ, ଭବିଷ୍ୟତ, ବର୍ତ୍ତମାନ ତଥା ଆଜି ଓ କାଲିର କୌଣସି ଅର୍ଥ ନାହିଁ । ସେ ଯେବେ ଯେଉଁ ଲୀଳା କଲେ ବି ତାହା ନିତ୍ୟ ଓ ଶାଶ୍ୱତ । ସେଥିରେ ଆଗ ପଛର ଭେଦଭାବନା ନାହିଁ । ଯେଉଁମାନଙ୍କର ଦୃଷ୍ଟି କାଳ କବଳିତ ହୋଇଯାଏ ଲୀଳା ଶ୍ରବଣ କରିବାରେ ସେମାନଙ୍କର ଅଧିକାର ନାହିଁ ।

ମହର୍ଷି ସୂତ କହିଲେ—"ମୁନିଗଣ ! ଭଗବାନ ଶୁକଦେବ ଯେତେବେଳେ ଅଘାସୁରର ଉଦ୍ଧାର କଥା କହିଲେ ଏବଂ ସେହି ପ୍ରସଙ୍ଗରେ ଅଜଗର ରୂପକ କାଳ ମୁଖରୁ ମୁକ୍ତ ହୋଇଥିବା ପିଲାମାନେ ଘରକୁ ଫେରିଯାଇ ବର୍ଷେ ପରେ—ଆଜି ଶ୍ରୀକୃଷ୍ଣ ଅଜଗରକୁ ମାରିଲେ ବୋଲି କହିଲେ ସେତେବେଳେ ଏହା ଶୁଣୁଥିବା ମହାରାଜ ପରୀକ୍ଷିତଙ୍କର ବଡ଼ ସନ୍ଦେହ ଜାତ ହେଲା । ସେ ସାଧାରଣ ଶ୍ରୋତା ନ ଥିଲେ ; ତେଣୁ ଯାହା ତାହା କହିଦେଲେ ଚଳିବ ନାହିଁ । ସେ ଥିଲେ ଜଣେ ଉତ୍ତମ ଶ୍ରୋତା । ସେ ଉତ୍ତମ ଶ୍ରୋତା ହେବା ସ୍ୱାଭାବିକ । ଯଦୁକୁଳତିଳକ ପରମାରାଧ୍ୟ ଭଗବାନ ବାସୁଦେବ ମାତୃଗର୍ଭରେ ପ୍ରବେଶ କରି ଯାହାଙ୍କୁ ଜୀବନ ଦାନ ଦେଇଥିଲେ ସେହି ରାଜା ପରୀକ୍ଷିତ ନିଜର ପ୍ରାଣଦାତା ରକ୍ଷାକର୍ତ୍ତା ପ୍ରଭୁଙ୍କର ପବିତ୍ର

ଚରିତ ବିଷୟରେ ଅନୁରାଗୀ ହେବା କିଛି ବିଚିତ୍ର ନୁହେଁ । ଏପରି ହେବା ଅବଶ୍ୟମ୍ଭାବୀ । ଏହା କୃତଜ୍ଞତାର ପ୍ରଥମ ନିଦର୍ଶନ । ପୁଣି ମହାରାଜ ଥିଲେ କୁଳୀନ, କୃତଜ୍ଞ ଓ ପରମ ଭଗବଦ୍ ଭକ୍ତ । ଭଗବାନଙ୍କ ଚରିତରେ ଶ୍ରଦ୍ଧା ପୂର୍ବକ ଶଙ୍କାପୋଷଣ କଲେ ରସ ମିଳେ । ଆମ୍ବକୁ ବାରମ୍ବାର ଚୂଷିଲେ ସେଥିରୁ ଯେପରି ଅଧିକରୁ ଅଧିକ ସ୍ୱାଦ ମିଳେ ସେହିପରି ଭଗବତ୍କଥାରେ ଶ୍ରଦ୍ଧାଳୁମାନଙ୍କର ପ୍ରଶ୍ନ ଅଧିକ ରସ ସୃଷ୍ଟି କରିଥାଏ । ସେହିଦୃଷ୍ଟିରୁ ଶ୍ରୋତା ନିଜର ସନ୍ଦେହକୁ ବକ୍ତା ଆଗରେ ଉପସ୍ଥାପନ କରେ । ଉତ୍ତରା ନନ୍ଦନ ମହାରାଜ ପରୀକ୍ଷିତ ରାଜ୍ୟ, କୁଳ, ପରିବାରଠାରୁ ଦୂରରେ ରହି ହରିଚର୍ଚ୍ଚାରେ ଆସକ୍ତ ହୋଇପଡ଼ିଥିଲେ ; ତେଣୁ ହରିଲୀଳାକୁ ଅଧିକ ରସାଳ କରିବା ପାଇଁ ସେ ବ୍ୟାସନନ୍ଦନ ଶୁକଦେବଙ୍କ ଆଗରେ ନିଜର ସନ୍ଦେହ ଉପସ୍ଥାପନ କରିବାକୁ ଯାଇ ପଚାରିଲେ—"ପ୍ରଭୋ ! ଅଘାସୁର ଉଦ୍ଧାର ଚରିତରେ ମୋର ଏକ ସନ୍ଦେହ ରହିଲା । ଆପଣ ଅନୁମତି ଦେଲେ ତାହା ପ୍ରକାଶ କରିବ ।"

ଅତ୍ୟନ୍ତ ଅନୁରାଗ ପ୍ରଦର୍ଶନ ପୂର୍ବକ ଭଗବାନ ଶୁକ କହିଲେ—"ରାଜନ୍ ! କି ପ୍ରକାର ସନ୍ଦେହ ହେଲା ? ଆପଣ ଆନନ୍ଦରେ ତାହା ପ୍ରକାଶ କରନ୍ତୁ, ମୁଁ ସାମର୍ଥ୍ୟ ଅନୁସାରେ ତାହାର ସମାଧାନ କରିବ ।"

ରାଜା ପଚାରିଲେ—"ବ୍ରହ୍ମନ୍ ! ଆପଣ କହିଲେ ପଞ୍ଚମ ବର୍ଷରେ ଘଟିଥିବା ଘଟଣାକୁ ପିଲାମାନେ ଷଷ୍ଠ ବର୍ଷ ଶେଷରେ 'ଆଜି ଶ୍ରୀକୃଷ୍ଣ ଅଜଗର ସାପକୁ ମାରିଲେ' ବୋଲି କହିଲେ । ଏ ବିଷୟରେ ମୋ' ମନରେ କେତେକ ପ୍ରଶ୍ନ ସୃଷ୍ଟି ହୋଇଛି । ପ୍ରଥମ ପ୍ରଶ୍ନ ହେଲା, ଯେଉଁଦିନ ଭଗବାନ୍ ଅଘାସୁରକୁ ଉଦ୍ଧାର କଲେ ସେହିଦିନ ସନ୍ଧ୍ୟାରେ ପିଲାମାନେ ନିଜ ନିଜ ଘରକୁ ଫେରିଯାଇଥିବେ । ସେଦିନ ପିଲାମାନେ ନିଜ ନିଜ ଘରେ ଘଟଣାଟି ନ କହି ବର୍ଷେ ପରେ କହିଲେ କାହିଁକି ? ଦ୍ୱିତୀୟ ପ୍ରଶ୍ନ ହେଲା । ବର୍ଷକ ପୂର୍ବର କାର୍ଯ୍ୟକୁ ଆଜି କଲେ ବୋଲି କହିବାର ତାତ୍ପର୍ଯ୍ୟ କ'ଣ ? ଏଥିରେ ନିଶ୍ଚୟ କିଛି ରହସ୍ୟ ଅଛି ।"

ଏହାଶୁଣି ଶୁକଦେବ କହିଲେ—"ରାଜନ୍ ! ପରାତ୍ପର ପ୍ରଭୁଙ୍କ ବିଷୟରେ ଏହା ଅଜ୍ଞାତ, ଏହା କାରଣ ଇତ୍ୟାଦି କେହି କହିପାରିବ ନାହିଁ । ଆପଣ ଭାବନ୍ତୁ, ଯାହାର ଅଙ୍ଗସ୍ପର୍ଶ ଲଭି କରି ଅଘାସୁର ପରି ମହାପାପୀ ଉଦ୍ଧାର ହୋଇଗଲା ଯାହା ସାଧାରଣ ଅସତ୍ପୁରୁଷଙ୍କପକ୍ଷରେ କେବଳ ଦୁର୍ଲଭ ନୁହେଁ ଅସମ୍ଭବ ମଧ୍ୟ । ସେହି ମହାପ୍ରଭୁଙ୍କ ମାୟା କିଏ ବୁଝିପାରିବ । ଭଗବାନ ବାସୁଦେବଙ୍କ ପକ୍ଷରେ କୌଣସି କଥା ବିଚିତ୍ର ନୁହେଁ । ତାଙ୍କ ଲୀଳା ସମ୍ବନ୍ଧରେ ଆମେ କହିବା ପାଇଁ ଅସମର୍ଥ ।"

ଶୁକଦେବଙ୍କ କଥା ଶୁଣି ମହାରାଜ ପରୀକ୍ଷିତ କହିଲେ—"ଭଗବନ୍ ! ଆପଣ ମୋତେ ଏଣୁତେଣୁ କହି ଭୁଲାଇଦେଲେ ଚଳିବ ନାହିଁ । ଏହି ଲୀଳାରେ ଯେଉଁ ରହସ୍ୟ ଅଛି ତାହା ଶୁଣିବା ପାଇଁ ଯଦି ମୁଁ ଯୋଗ୍ୟ, ତେବେ ସେଇକଥା ବୁଝାଇଦିଅନ୍ତୁ । ମୁଁ

ଜାଣେ ନାହିଁ, ମୁଁ ସବଙ୍କ ନୁହେଁ—ଏପରି ଆପଣ କହିପାରିବେ ନାହିଁ । ଆପଣ ମହାଯୋଗୀ । ଯୋଗୀଙ୍କ ପକ୍ଷରେ ଅସମ୍ଭବ ବୋଲି କଛି ନାହିଁ । ଅଘାସୁର ଚରିତରେ ଭଗବାନଙ୍କର କୌଣସି ଗୂଢ଼ ମାୟା ଅଛି ଏଥିରେ ସନ୍ଦେହ ନାହିଁ । ନୋହିଲେ ଏପରି ଘଟଣା ଘଟିବା ସମ୍ଭବ ନୁହେଁ । ଆପଣ ମୋତେ ଅନଧିକାରୀ ବୋଲି ଭାବି ଏ ପ୍ରଶ୍ନ ଏଡ଼ାଇ ଯାଆନ୍ତୁ ନାହିଁ । ଏହି ରହସ୍ୟ ଜାଣିବା ପାଇଁ ମୋର ମନ ବ୍ୟାକୁଳ ହେଉଛି ।"

ଶ୍ରୀଶୁକଦେବ ରାଜାଙ୍କର ବିନୀତ ନିବେଦନରେ ପ୍ରୀତ ହୋଇ କହିଲେ—"ରାଜନ୍ ! ଆପଣ ନିଜକୁ ଅନଧିକାରୀ ବୋଲି କାହିଁକି ମନେ କରୁଛନ୍ତି ? ଆପଣ ବଡ଼ ଭାଗ୍ୟଶାଳୀ । ସେଥିପାଇଁ ଅତି ଆଗ୍ରହରେ କୃଷ୍ଣଚରିତ ଶ୍ରବଣ କରୁଛ ।"

ଏହାଶୁଣି ମହାରାଜ ପରୀକ୍ଷିତ କହିଲେ—"ପ୍ରଭୋ ! ମୋର ନୀଚତା ବିଷୟରେ କୌଣସି ସନ୍ଦେହ ନାହିଁ । କ୍ଷତ୍ରିୟ ଶବ୍ଦର ଅର୍ଥ ହେଉଛି ଯେ ପ୍ରାଣୀମାନଙ୍କୁ ଦୁଃଖ କଷ୍ଟରୁ ରକ୍ଷାକରେ । ମୁଁ ଜାଣି ଶୁଣି ବ୍ରହ୍ମଜ୍ଞାନୀ ମହର୍ଷିଙ୍କୁ କଷ୍ଟ ଦେଇଛି । ତାଙ୍କ କଣ୍ଠରେ ମୃତ ସର୍ପର ମାଳା ଗଳାଇ ଦେଇଛି, ତେଣୁ କ୍ଷତ୍ରିୟମାନଙ୍କ ମଧ୍ୟରେ ମୁଁ ଅଧମ, ନୀଚ, କ୍ଷତ୍ରିୟ, ମୁଁ କ୍ଷତ୍ରିୟ ଯୋଗ୍ୟ ନୁହେଁ । ମୁଁ ଋଷି ମୁନିମାନଙ୍କଠାରେ ଅପରାଧ କରିଛି । ବ୍ରାହ୍ମଣର ଅଭିଶାପରେ ଅଭିଶପ୍ତ । ଏସବୁ ସତ୍ତ୍ୱେ ମୁଁ ନିଜକୁ ଭାଗ୍ୟବାନ ମନେ କରୁଛି । ଏ ସଂସାରରେ ମୋ' ଠାରୁ ସୌଭାଗ୍ୟଶାଳୀ ଆଉ କେହିନାହିଁ । କାରଣ ମୁଁ ଆପଣଙ୍କ ପରି ମହାପୁରୁଷଙ୍କ ମୁଖନିଃସୃତ କୃଷ୍ଣକଥା ରୂପକ ଅମୃତ ରସ ବାରମ୍ବାର ପାନ କରି ମଧ୍ୟ ମୋର ତୃପ୍ତି ଜାତ ହେଉନାହିଁ । ଆପଣ ଦୟାକରି ମୋତେ କୃଷ୍ଣକଥା ସାଗରରେ ବୁଡ଼ାଇ ଦିଅନ୍ତୁ । ମୋର ଶଙ୍କାରୂପକ ଅଜ୍ଞାନ ପାଦପକୁ ଆପଣ ଜ୍ଞାନ ରୂପକ କୁଠାରରେ ଛେଦନ କରନ୍ତୁ । ଏହା କହି ମହାରାଜ ପରୀକ୍ଷିତ ପ୍ରେମାବଶରେ କାନ୍ଦିବାକୁ ଲାଗିଲେ ।

ମହର୍ଷି ସୂତ ଶୌନକଙ୍କୁ କହିଲେ—"ହେ ଭକ୍ତଶ୍ରେଷ୍ଠ ଶୌନକ ! ମହାରାଜ ପରୀକ୍ଷିତ କୃଷ୍ଣଲୀଳା ସମ୍ବନ୍ଧରେ ଆଗ୍ରହର ସହିତ ଏହିପରି ପ୍ରଶ୍ନ ପଚାରିବାରୁ ଗୁରୁଦେବଙ୍କର ଏକ ବିଚିତ୍ର ଅବସ୍ଥା ସୃଷ୍ଟି ହେଲା । ସେହି ଅବସ୍ଥା ଏବେ ବି ମୋର ମନେ ପଡ଼ୁଛି ଓ ଦେହ ରୋମାଞ୍ଚିତ ହୋଇଉଠୁଛି । ମହାରାଜାଙ୍କ ପ୍ରଶ୍ନରେ କି ଯାଦୁ ଥିଲା କେଜାଣି ଗୁରୁଦେବଙ୍କର ପ୍ରସ୍ଫୁଟିତ କମଳତୁଲ୍ୟ ବିଶାଳ ନୟନରୁ ଅଶ୍ରୁଧାରା ପ୍ରବାହିତ ହେବାକୁ ଲାଗିଲା । ତାଙ୍କର ସାରାଦେହ ପୁଲକିତ ହେବାକୁ ଲାଗିଲା ଏବଂ ରୋମାବଳୀ ଠିଆହୋଇ ଗଲା । ହୃଦୟ ଦ୍ରବୀଭୂତ ହୋଇଗଲା । ଭଗବାନଙ୍କ ରସମୟୀ, ଭାବମୟୀ, ମାଧୁର୍ଯ୍ୟମୟୀ ଲୀଳା ସ୍ମରଣରେ ଗୁରୁଦେବଙ୍କ ସମସ୍ତ ଇନ୍ଦ୍ରିୟ ବୃତ୍ତିଶୂନ୍ୟ ହୋଇପଡ଼ିଲା । ସେ ସ୍ତବ୍ଧ ରହିବା ସଙ୍ଗେ ସଙ୍ଗେ ସମାଧିମଗ୍ନ ହୋଇପଡ଼ିଲେ । କିଛିକାଳ ପରେ ଦିବ୍ୟଲୀଳାଲୋକରୁ ଫେରି ଗୁରୁଦେବ ବାହ୍ୟଦୃଷ୍ଟି ଲାଭକଲେ । ଆଗରେ ମହାରାଜ ପରୀକ୍ଷିତ ପ୍ରେମାଶ୍ରୁ ମୋଚନ

କରୁଥିଲେ । ଭଗବାନ ଶୁକଦେବ ସମାଧିରୁ ନିବୃତ୍ତ ହୋଇ ଆଗରେ ରାଜାଙ୍କୁ ଦେଖି ଆନନ୍ଦିତ ହେଲେ । ରାଜାଙ୍କ ପ୍ରଶ୍ନକୁ ସ୍ୱାଗତ କରିବା ସଙ୍ଗେ ସଙ୍ଗେ ତା'ର ଉତ୍ତର ସ୍ୱରୂପ ରହସ୍ୟମୟ କଥା କହିବାକୁ ଆରମ୍ଭ କଲେ ।

### ଛପ୍ପୟ

ମୁନି ଭୂପତିକୋ ପ୍ରଶ୍ନ ହୃଦୟ ଶୁକକୋ ଉର ଆୟୋ ।
ଗଦ୍‌ଗଦ ବାନୀ ଭଇ ନୀର ନୟନନମହିଁ ଛାୟୋ ॥
କମ୍ପିତ ସେହକେ ସରସ ପୁଲକି ତନୁ ସ୍ୱେଦଯୁକ୍ତ ଜବ ।
ଭୟୋ ପ୍ରେମମହଂ ମଗ୍ନ ଇନ୍ଦ୍ରିୟାଁ ଶିଥିଲ ଭଇ ସବ ॥
ଉତ୍ତରେ ଲୀଳା ଲେଖିଦେଁ, କୃଷ୍ଣ କଥା ସଙ୍କଳ୍ପ କରି ।
ବାହ୍ୟ ଦୃଷ୍ଟି ଜବ କଛୁ ଭଇ, ବୋଲେ ପ୍ରଭୁ ଛବି ହୃଦୟ ଧରି ॥



## ପରୀକ୍ଷିତଙ୍କୁ ଶୁକଦେବଙ୍କ ପ୍ରଶଂସା

ସତାମୟଂ ସାରଭୃତାଂ ନିସର୍ଗୋ
ଯଦର୍ଥବାଣୀ ଶ୍ରୁତିଚେତସାମପି ।
ପ୍ରତିକ୍ଷଣଂ ନବ୍ୟବଦଚ୍ୟୁତସ୍ୟ ଯତ୍
ସ୍ତ୍ରିୟା ବିଟାନାମିବ ସାଧୁବାର୍ତ୍ତା ॥
(ଶ୍ରୀ ଭା ୧୦ ସ୍କ, ୧୩ ଅ, ୨ ଶ୍ଳୋକ)

### ଛପ୍ପୟ

ରାଜନ୍ କରି କରି ପ୍ରଶ୍ନ କଥାକୂଁ ନଇ ବନାଓ ।
ସୁନିକୁ ସତତ ହରିଚରିତ ତବହୁଁ ନହିଁ ନୃପତି ଅଘାଓ ॥
ମନ ମନମୋହନ ମାହିଁ ଲଗେ୍ୟା ବାନୀ ଗୁନ ଗାଵେ ।
ଶ୍ରବନ କଥା ରସ ମତ୍ତ ତନହୁଁ କଛୁ ନାହିଁ ସୁହାଵେ ॥
ଜାର ପୁରୁଷ ଜ୍ୟେ କାମିନୀ, କଥା ସୁନହିଁ ହିୟ ବଢ଼ତ ରସ ।
ବାର ବାର ସୁନି ତୃପ୍ତ ନହିଁ, ହୋଵେ ତୁମହୁ ରସିକ ଅସ ॥

ଏହି ଜୀବ ସୁଖ ଓ ଆନନ୍ଦ ପାଇଁ ବ୍ୟାକୁଳ ହୋଇଥାଏ । ପ୍ରେମରଙ୍କ ଏହି ପ୍ରାଣୀ ଆଶାପୂର୍ଣ୍ଣ ଦୃଷ୍ଟିରେ ସ୍ୱରଆଡ଼କୁ ଚାହିଁରହେ । ଜ୍ଞାତସାରରେ ହେଉ ବା ଅଜ୍ଞାତସାରରେ ହେଉ ଜୀବର ସମସ୍ତ ଚେଷ୍ଟା ଆନନ୍ଦଲାଭ ପାଇଁ ଅଭିପ୍ରେତ । ସଂସାରରେ ବିଷୟାନନ୍ଦ ଓ ବ୍ରହ୍ମାନନ୍ଦ ନାମରେ ଦୁଇପ୍ରକାର ଆନନ୍ଦ ଅଛି । ସଂସାର ବିଷୟରେ ଯଦି ଆନନ୍ଦ ନ ଥାନ୍ତା ତେବେ ସବୁ ପ୍ରାଣୀ ବିଷୟଲାଭ ପାଇଁ କାହିଁକି ଯତ୍ନ କରନ୍ତି ? କିନ୍ତୁ ଏ ସଂସାରରେ କି ସୁଖ ଅଛି ? ଏହି ଦେହରେ ପ୍ରତିଦିନ ନୂଆ ନୂଆ ବ୍ୟାଧି ସୃଷ୍ଟି ହେଉଛି । ଗୃହସ୍ଥର ନାନାପ୍ରକାର ଶତ ଶତ ଚିନ୍ତା ମୁଣ୍ଡ ଉପରେ ଲଦି ହୋଇ ରହିଛି । ଆଜି ପୁଅ ମରିଗଲା, କାଲି ଧନ ନଷ୍ଟ ହୋଇଗଲା, ସବୁକିଛି ଚୋରି ହୋଇଗଲା, ସ୍ତ୍ରୀ ରୁଗ୍ଣ ହେଲା, ଶତ୍ରୁମାନେ ଅପମାନିତ କଲେ, ରାଜଦଣ୍ଡ ହେଲା, ଦୁଷ୍ଟମାନେ ନୀଚତା ଆଚରଣ କଲେ—ଏହିପରି ଗୋଟିଏ କି ଦୁଇଟି ନୁହେଁ ଲକ୍ଷ ଲକ୍ଷ ଚିନ୍ତା ଅଛି । ତଥାପି ମଣିଷ ଗୃହସ୍ଥ ହେବାର ଚିନ୍ତା ଛାଡ଼ିପାରୁ ନାହିଁ । କାରଣ ସେଥିରେ ସେ ଆନନ୍ଦ ପାଉଛି । ଏହି ଆନନ୍ଦ ହେଉଛି ବିଷୟାନନ୍ଦ; କିନ୍ତୁ ଏହି ଆନନ୍ଦ ଅନିତ୍ୟ ଓ ଅଶାଶ୍ୱତ । କାରଣ ଏହି ଆନନ୍ଦର ମୂଳ ହେଉଛି ଅନିତ୍ୟ ।

ବ୍ରହ୍ମାନନ୍ଦ ନିତ୍ୟ । କାରଣ ବ୍ରହ୍ମ ନିତ୍ୟ, ସତ୍ୟ, ଅବିନାଶୀ, ଅଜ, ଅମର ଓ ଶାଶ୍ୱତ, ତେଣୁ ଏ ସମ୍ବନ୍ଧରେ ଯେଉଁ ସୁଖ ମିଳେ ତାହା ନିତ୍ୟ ହେବ, ଅବିନାଶୀ ଓ ଶାଶ୍ୱତ ହେବ । ନିରାକାର ବ୍ରହ୍ମ ଉପଲବ୍ଧିରେ ଅପୂର୍ବ ଆନନ୍ଦ ମିଳେ; କିନ୍ତୁ ସାକାର ବ୍ରହ୍ମଙ୍କ ଲୀଳାରେ ଓ ଚରିତ ଶ୍ରବଣରେ ଏବଂ ତାଙ୍କର ସେବାରେ ଯେଉଁ ସୁଖ ମିଳେ ତାହା ଅତୁଳନୀୟ । ଯାହାର ଚିତ୍ତ କୃଷ୍ଣ କଥା ଶ୍ରବଣରେ, କୃଷ୍ଣ ନାମ ଗୁଣ କୀର୍ତ୍ତନରେ ଲାଗିଯାଇଛି ସେ ବଡ଼ ଭାଗ୍ୟବାନ୍, ତା'ର ଚରଣ ଧୂଳିରେ ତିନି ଲୋକ ପବିତ୍ର ହୋଇଯାଏ ।

ମହର୍ଷି ସୂତ କହିଲେ—"ମୁନିଗଣ ! ମହାରାଜ ପରୀକ୍ଷିତ ଯେତେବେଳେ ନିଜର ସନ୍ଦେହ ପ୍ରକାଶ କଲେ ସେତେବେଳେ ମୋର ଗୁରୁ ଶୁକଦେବ ଭାବ ସମାଧିରେ ମଗ୍ନ ହୋଇଗଲେ । ବାହ୍ୟଜ୍ଞାନ ଫେରିବା ପରେ ସେ ମହାରାଜଙ୍କୁ ଭୂରି ଭୂରି ପ୍ରଶଂସା କରିବାକୁ ଲାଗିଲେ ।"

ଶ୍ରୀ ଶୁକଦେବ କହିଲେ—"ମହାରାଜ ! ହେ ଭଗବନ୍ତ ପ୍ରେମୀଙ୍କ ମଧ୍ୟରେ ନୃପଶ୍ରେଷ୍ଠ ! ତୁମେ ଉତ୍ତମ ପ୍ରଶ୍ନ କରିଛ । ହେ କୁରୁକୁଳତିଳକ ! ତୁମ ପରି ଶ୍ରୋତାଙ୍କୁ ପାଇ ମୁଁ କୃତାର୍ଥ ହୋଇଛି । ତୁମ ବ୍ୟତୀତ ଅନ୍ୟ କେହି ଏପରି ସାବଧାନତା ସହକାରେ କଥା ଶୁଣିବାର ମୁଁ ଜାଣେନାହିଁ । କଥା ମଝିରେ ତୁମେ ଏକ ଶବ୍ଦକୁ ନେଇ ସନ୍ଦେହ କଲ ଓ ପଚାରିଲ । ନୋହିଲେ ମୁଁ କଥା କହିଯାଇଥାନ୍ତି ଏବଂ ଏହି ରହସ୍ୟମୟ କଥା ରହିଯାଇଥାନ୍ତା ।"

କଥା ଚାଲିଥିବାବେଳେ ବୁଦ୍ଧିମାନ୍ ଶ୍ରୋତା ଯଦି ରହସ୍ୟଯୁକ୍ତ ପ୍ରଶ୍ନ କରେ ତେବେ କଥାରେ ନୂତନ ଜୀବନ ଖେଳିଯାଏ । ତୁମେ ମନ ଦେଇ ନନ୍ଦନନ୍ଦନଙ୍କ କଥା

ଶୁଣିବା ସଙ୍ଗେ ସଙ୍ଗେ ନୂଆ ନୂଆ ପ୍ରଶ୍ନ ପଚ୍ଚାରି କଥାର ଧାରାକୁ ସରସ ଓ ସୁନ୍ଦର କରୁଛ । ଆପଣ ଅଚ୍ୟୁତପ୍ରିୟ । ଭଗବାନ ଆପଣଙ୍କର କୁଳଦେବତା । ତାଙ୍କ କଥା ରସମୟୀ । ଆପଣ ରସଶେଖର । ଆପଣଙ୍କ ମନ ମନମୋହନଙ୍କ ରୂପମାଧୁରୀରେ ନିମଗ୍ନ ହୋଇଛି । ଯାହାର ବାକ୍ୟରେ ଭଗବାନଙ୍କ ନାମ ଓ ଗୁଣପ୍ରଖ୍ୟାପକ ପଦ ଥାଏ, କୃଷ୍ଣ କଥା ଶୁଣିବାରେ ଯାହାର କାନ ଅଭ୍ୟସ୍ତ ଏବଂ କୃଷ୍ଣକଥା ଶୁଣିବା ପାଇଁ ଯାହାର ସର୍ବଦା ଲାଳସା ଥାଏ, ସେହି ସାରଗ୍ରାହୀ ଭଗବଦ୍ ଭକ୍ତ ସାଧୁପୁରୁଷମାନଙ୍କର ସହଜ ସ୍ୱଭାବ ହୋଇଛି ସେମାନଙ୍କୁ ଭଗବତ୍କଥା ନିତ୍ୟ ନୂତନ ବୋଧହୁଏ । ଭଗବାନଙ୍କ ଚରିତକୁ ଅରେମାନ ଶୁଣି ଯେ କହେ—ଅରେ ତ ଶୁଣିଲେ, ବାରମ୍ବାର କ'ଣ ଶୁଣିବା । ଏହା ଶୁଣି ସାରିଛୁ । ତାହା ହେଲେ ବୁଝିବାକୁ ହେବ ସେ କିଛି ଶୁଣିନାହିଁ । ଭଗବଦ୍ଭକ୍ତ ଗୋଟିଏ କଥା ଯେତେଥର ଶୁଣିଲେ ବି ତୃପ୍ତ ହୁଏନାହିଁ । ଜାର ପୁରୁଷ ଯେପରି ସ୍ତ୍ରୀବିଷୟକ ଚର୍ଚ୍ଚାରେ ନୂଆ ନୂଆ ରସ ଅନୁଭବ କରେ ଭଗବଦ୍ଭକ୍ତ ସେହିପରି ଭାଗବତ କଥାରେ ନୂଆ ନୂଆ ରସ ଅନୁଭବ କରିଥାଏ ।

ଏହାଶୁଣି ଶୌନକ ପଚାରିଲେ—"ମହାଶୟ ! ପରମହଂସ ଚକ୍ରଚୂଡ଼ାମଣି, ବୀତରାଗ, ତ୍ୟାଗୀ, ବିରାଗୀ ଭଗବାନ ଶୁକଦେବ ଭାଗବତ କଥା ରସିକଙ୍କୁ ଜାରପୁରୁଷଙ୍କ ସହିତ କାହିଁକି ତୁଳନା କଲେ ? ଏପରି ଘୃଣାଜନକ ଉପମା ଦେବା ସାହିତ୍ୟରେ ସଦାଚାରରେ ଦୋଷାବହ ବୋଲି ମନେ କରାଯାଏ । ଅନ୍ୟ କୌଣସି ପ୍ରକାର ଉପମା ଦେଇପାରିଥାନ୍ତେ । ଅନୁରାଗ ସମ୍ବନ୍ଧୀୟ ଉପମାର ତ ଅଭାବ ନାହିଁ ।"

ଏହାଶୁଣି ଭଗବାନ ସୂତ କିଛି ସମୟ ଗମ୍ଭୀର ହୋଇଗଲେ ଏବଂ ମନେ ମନେ କଥାଟାକୁ ବିଚାର କରି କହିଲେ—"ମହାଭାଗ ! ଦୃଷ୍ଟାନ୍ତର ଏକ ଅଂଶମାତ୍ର ଗ୍ରହଣ କରାଯାଏ । ସମସ୍ତ କଥା ଉପମାର ବିଷୟୀଭୂତ ହୁଏନାହିଁ । ଏଠାରେ ଜାର ପୁରୁଷର ଅନୁରାଗ ଅଂଶ ହିଁ ଗ୍ରହଣୀୟ । ଜାରପୁରୁଷର ଅନ୍ୟ ସ୍ତ୍ରୀଠାରେ ଯେତେ ଅନୁରାଗ ଥାଏ ନିଜ ସ୍ତ୍ରୀଠାରେ ସେପରି ଥାଏ ନାହିଁ । କାରଣ ଯେଉଁଠାରେ ଅଧିକାର ଥାଏ ସେଠାରେ ଉତ୍କଣ୍ଠା ନ ଥାଏ । ଯେଉଁ ବସ୍ତୁ ଉପଲବ୍ଧ ଥାଏ, ପାଖରେ ଥାଏ ସେଥିରେ ତନ୍ମୟତା ଆସେ ନାହିଁ । ସେହିପରି ମିଳନରେ ଯେତିକି ପ୍ରତିବନ୍ଧକ ସୃଷ୍ଟି ହୁଏ ସେତିକି ଅନୁରାଗ ପ୍ରବଳ ହୁଏ । ଜାରପୁରୁଷର ପ୍ରିୟା ସହିତ କଥାବାର୍ତ୍ତା କରିବାରେ ନିତ୍ୟ ନୂତନ ଅନୁରାଗ ବଢ଼େ ଏବଂ ଅତୃପ୍ତି ଅଧିକରୁ ଅଧିକ ପ୍ରକାଶ ପାଏ । ଗୋଟିଏ କଥାକୁ ବାରମ୍ବାର ଶୁଣି, ପ୍ରତିଦିନ ଶୁଣି ମଧ୍ୟ ସେ ପ୍ରଥମଥର ନୂଆ ଶୁଣିଲା ପରି ମନେକରେ । ଏକପ୍ରକାର ମୂର୍ତ୍ତିକୁ ନିରନ୍ତର ଚନ୍ତାକରି ମଧ୍ୟ ତା'ର ସନ୍ତୋଷ ଆସେନାହିଁ । ସଂସାରରେ ଏପରି ଦ୍ୱିତୀୟ ଉଦାହରଣ ନାହିଁ । ଯଦି ଅନ୍ୟ ଉଦାହରଣ ଥାଆନ୍ତା ତେବେ ଭଗବାନ ଶୁକଦେବ ଏପରି ଲୋକ ନିନ୍ଦିତ ଉଦାହରଣ ଉପସ୍ଥାପନ କରିଥାନ୍ତେ ନାହିଁ । ଏହି ଢଙ୍ଗ ଯଦି ପ୍ରଭୁଙ୍କଠାରେ

ହୁଏ ତେବେ ମୁକ୍ତି ମିଳିଯାଏ । ସେଥିପାଇଁ ବୈଷ୍ଣବ ଶାସ୍ତ୍ରଗୁଡ଼ିକରେ ପରକୀୟା ଭାବକୁ ସର୍ବୋତ୍କୃଷ୍ଟ ସ୍ଥାନ ଦିଆଯାଇଛି । ଭାବରେ ଭଲମନ୍ଦ କିଛି ନାହିଁ । ଭାବନାକୁ ସଂସାରରେ ଲଗାଇଲେ ସବୁ ମନ୍ଦ ହୁଏ ଏବଂ ଭଗବାନଙ୍କଠାରେ ଲଗାଇଲେ ସବୁ ଭଲ ହୁଏ । କାମଭାବ ସଂସାରରେ ଏକ ମନ୍ଦ ବସ୍ତୁ ଏବଂ ସେହି କାମ ଧର୍ମର ବିରୋଧୀ ନ ହେଲେ ଭଗବାନଙ୍କ ରୂପ ପାଲଟିଯାଏ । ସେହି କାମଭାବକୁ ଭଗବାନଙ୍କଠାରେ ଲଗାଇଲେ ସଂସାରବନ୍ଧନରୁ ସହଜରେ ମୁକ୍ତି ମିଳେ । ସେହିପରି ଈର୍ଷା କରିବା ଅତି ଖରାପ । ଶତ୍ରୁତା କରିବା ଅତି ଖରାପ । ଈର୍ଷା, ଦ୍ୱେଷ ବୃତ୍ତିରେ ମୃତ୍ୟୁ ବରଣ କଲେ ପ୍ରେତ ହେବାକୁ ପଡ଼େ; କିନ୍ତୁ ଭଗବାନଙ୍କ ପ୍ରତି ସେହି ଈର୍ଷା ଓ ଦ୍ୱେଷଦ୍ୱାରା ମୁକ୍ତିଲାଭ ହୁଏ । ଶିଶୁପାଳ ପ୍ରଭୃତି ଏହାର ଉଦାହରଣରୂପେ ଗ୍ରହଣୀୟ ।

ସଂସାରରେ ଭୟାତ୍ତୁ ବ୍ୟକ୍ତିର ପତନ ଘଟେ; କିନ୍ତୁ ଭଗବାନଙ୍କ ପ୍ରତି ମନରେ ଭୟ ରହିଲେ ସର୍ବଦା କଲ୍ୟାଣ ସାଧିତ ହୋଇଥାଏ । ମହାରାଜ କଂସ ଭଗବାନଙ୍କୁ ଭୟ କରି ପରମପଦର ଅଧିକାରୀ ହେଲେ । ସ୍ନେହ ଜୀବଜଗତ୍ ପ୍ରତି ପୋଷଣ କଲେ ପୁଣି ଜନ୍ମ ହେବାକୁ ପଡ଼େ; କିନ୍ତୁ ଭଗବାନଙ୍କ ପ୍ରତି ସ୍ନେହଭାବ ରହିଲେ ମୋକ୍ଷର ଦ୍ୱାର ଉନ୍ମୋଚିତ ହୋଇଯାଏ । ଧନଶାଳୀ ଓ କାମୁକମାନଙ୍କ ପ୍ରତି ଭକ୍ତି ପ୍ରଦର୍ଶନ କଲେ କାମନାର କିଛି ଅଂଶ ପୂର୍ଣ୍ଣ ହୁଏ ଏବଂ ଅଧଃପତନର ମାର୍ଗ ପ୍ରଶସ୍ତ ହୋଇଯାଏ; କିନ୍ତୁ ଭଗବାନଙ୍କଠାରେ ପୋଷିତ ସେହି ଭକ୍ତିରୁ ପରମ ଆନନ୍ଦ ମିଳେ ; ତେଣୁ ଭଗବାନଙ୍କୁ ଯେ କୌଣସି ଭାବରେ ଭଜନ କଲେ ବି କଲ୍ୟାଣ ତା'ର ପରିଣାମ । ପ୍ରଭୁଙ୍କୁ ଯେଉଁ ଭାବରେ ଭଜନ କରାଯାଏ ସେହି ଭାବ, ସେହି ରୂପରେ ସେ ଦର୍ଶନ ଦିଅନ୍ତି , ତେଣୁ ଭଗବାନଙ୍କ ସମ୍ବନ୍ଧରେ ସବୁ ଉପମା ଶ୍ରେଷ୍ଠ ବୋଲି ବିଚାରିତ । କାରଣ ଭଗବାନ ହେଉଛନ୍ତି ଶ୍ରେଷ୍ଠତମ ।

ଶୌନକ କହିଲେ—"ହଁ, ଆପଣ ଯାହା କହିଲେ ତାହା ସତ । ପୁରୁଷର ଅନୁରାଗ ଅତି ଉତ୍କଟ ହୁଏ । ହଁ, ତା'ପରେ କ'ଣ ହେଲା କୁହନ୍ତୁ ।"

ମହର୍ଷି ସୂତ କହିଲେ—"ମହାଶୟ ! ମୋର ଗୁରୁଦେବ ପ୍ରଥମେ ରାଜାଙ୍କ ପ୍ରଶ୍ନକୁ ଓ ପରେ ରାଜାଙ୍କ କଥା ଶୁଣିବାର ଆଗ୍ରହକୁ ବହୁତ ପ୍ରଶଂସା କରି ପ୍ରଶ୍ନର ଉତ୍ତର ଦେବା ଆରମ୍ଭ କଲେ ।"

ଶ୍ରୀ ଶୁକଦେବ କହିଲେ—ରାଜନ୍ ! ଆପଣ ଭଲ ପ୍ରଶ୍ନଟିଏ ପଚାରିଛନ୍ତି । ମୁଁ ତା'ର ଉତ୍ତର ଦେଉଛି । ଆପଣ ସାବଧାନ ହୋଇ ଶୁଣନ୍ତୁ । କଥାଟା ବଡ଼ ରହସ୍ୟ ପୂର୍ଣ୍ଣ । ସାଧାରଣଙ୍କ ଆଗରେ ତାହା କୁହାଯାଏ ନାହିଁ । ତେବେ ଆପଣଙ୍କ ଆଗରେ କହିବି ।"

ମହାରାଜ ପରୀକ୍ଷିତ ହାତଯୋଡ଼ି କହିଲେ—"ଭଗବାନ ! ଯଦି ସମସ୍ତଙ୍କ ଆଗରେ ଏହି କଥା କହିହେବ ନାହିଁ, ତେବେ ମୋ' ପରି ଅନଧିକାରୀ କ୍ଷତ୍ରିୟ ଆଗରେ ତାହା କହିବା ପାଇଁ ସ୍ଥିର କଲେ କିପରି ?"

ଏହା ଶୁଣି ହସି ହସି ଭଗବାନ ଶୁକଦେବ କହିଲେ—"ରାଜନ୍ ! ତୁମେ ହିଁ ଏହି ଗୂଢ଼ରହସ୍ୟ ଶୁଣିବା ପାଇଁ ପ୍ରକୃତ ଅଧିକାରୀ । ତୁମେ ମୋର ଶିଷ୍ୟ । ଗୁରୁଜନମାନେ ନିଜର ପ୍ରିୟ ଅନୁଗତ ଶିଷ୍ୟଙ୍କୁ ସର୍ବାଧିକ ଗୋପନୀୟ ତତ୍ତ୍ୱଉପଦେଶ ଦେଇଥାନ୍ତି । ସେଥିପାଇଁ ପରମ ପବିତ୍ର ପ୍ରେମ ପ୍ରସଙ୍ଗଟି ମୁଁ ଆପଣଙ୍କୁ ଶୁଣାଉଛି ।"

ମହର୍ଷି ସୂତ କହିଲେ—"ମୁନିଗଣ ! ଏହା କହି ଭଗବାନ ଶୁକଦେବ ରାଜା ପରୀକ୍ଷିତଙ୍କ ସନ୍ଦେହ ମୋଚନ ପାଇଁ ପରବର୍ତ୍ତୀ ଚରିତର ବର୍ଣ୍ଣନା ଆରମ୍ଭ କରିଥିଲେ ।

### ଛପ୍ପୟ

ରାଜନ୍ ଅବ ହମ ଗୁହ୍ୟ ଚରିତ ଅତି ତାହି ସୁନାଓଁ ।
ଭକ୍ତ ଶିଷ୍ୟ ଗୁରୁ ପାଇ ରହସହୁ ନାହିଁ ଛିପାଓଁ ।।
କରି ଅଘକୋ ଉଦ୍ଧାର ତୁରତ ହରି ବାହାର ଆୟେ ।
ବର୍ଣ୍ଣିତ ଗୋପନ ନରଖି ବିହସି ପ୍ରଭୁ ବଚନ ସୁନାୟେ ।।
ଯହ ଅଜଗର ଅଘ ଅସୁର ହୈ, ସମୁଝି ଘୁସେ ଗିରି ଗୁହା ତୁମ ।
ଚଲୋ ଭୟୋ ସୋ ଭୟୋ ଅବ, ବନଭୋଜନ ମିଲି କରହିଁ ହମ ।।

●

## ବଣଭୋଜି

ଅଥ ଭୋକ୍ତବ୍ୟମସ୍ମାଭିର୍ଦିବା ରୂଢ଼ଂ କ୍ଷୁଧାର୍ଦ୍ଦିତାଃ ।
ବତ୍ସାଃ ସମୀପେଽପଃ ପୀତ୍ୱା ଚରନ୍ତୁ ଶନକୈସ୍ତୃଣମ୍ ।।

(ଶ୍ରୀ ଭା ୧୦ସ୍କ, ୧୩ଅ, ୬ଶ୍ଳୋକ)

### ଛପ୍ପୟ

ଯହ ଯମୁନାକୋ ପୁଳିନ ବାଲୁକା କୋମଲ କୈସୀ ।
କୈସୀ ସୁନ୍ଦର ଘାସ ଛଟାହୁ ଅନୁପମ ତୈସୀ ।।
ଖିଲେ ସରନି ମହିଁ କମଲ ତରୁନପେ ପକ୍ଷୀ ଫୁଦକେଁ ।
ଲଗୀ ଜଇ ଭୂଖ ଉଦରମହିଁ ମୂସେ କୁଦକେଁ ।।
ହମ ସବ ପାଓଁ ଛାକକୈଁ, ପୀ ପାନୀ ବଛର ଚରେଁ ।
ବୈଠୋ ଗୋଲାକାର ସବ, ପ୍ରୀତିଭୋଜ ବନମହିଁ କରେଁ ।।

ଭଗବାନ ତଥା ଭଗବଦ୍ ଭକ୍ତଙ୍କ ଚରିତ ଠିକ୍ ସାଧାରଣ ଲୋକଙ୍କପରି ହୋଇଥାଏ । ଖାଇବା, ପିଇବା, ଖେଳିବା ଓ ପରସ୍ପର ମଧ୍ୟରେ ମିଳାମିଶା କରିବା କେଉଁଥିରେ କିଛି ପାର୍ଥକ୍ୟ ନ ଥାଏ; କିନ୍ତୁ ପାର୍ଥ୍ୟକ୍ୟ ହେଉଛି ଏତିକି ଯେ ସାଧାରଣ ଲୋକଙ୍କ କାର୍ଯ୍ୟ ମାୟା-ମୋହ, କ୍ରୋଧ ଦ୍ୱେଷରେ ପୂର୍ଣ୍ଣ ଥିବାବେଳେ ଭଗବାନ ତଥା ଭକ୍ତଙ୍କ କାର୍ଯ୍ୟ ପ୍ରେମପୂର୍ଣ୍ଣ ଓ ସ୍ନେହସିକ୍ତ ହୋଇଥାଏ । ସେମାନେ ଯାହା କରନ୍ତି ପ୍ରେମପାଇଁ କରନ୍ତି, ପ୍ରେମ ବ୍ୟବହାର କରନ୍ତି ଏବଂ ସମସ୍ତ କାର୍ଯ୍ୟରେ ପ୍ରେମର ପୁଟ ଲଗାଇ ଦିଅନ୍ତି । ପ୍ରେମ ସ୍ପର୍ଶରେ ଆସି ବିଷ ବି ଅମୃତ ପାଲଟିଯାଏ । ପ୍ରେମର ସାକାର ମୂର୍ତ୍ତି ଶ୍ରୀନନ୍ଦନନ୍ଦନ ଶ୍ରୀକୃଷ୍ଣ ଯେଉଁ କାର୍ଯ୍ୟ ନିଜେ କରନ୍ତି ସେ ସମ୍ବନ୍ଧରେ ଅଧିକ କ'ଣ କହିବାର ଅଛି ? ଯେଉଁମାନଙ୍କ ସହିତ ଶ୍ୟାମସୁନ୍ଦର ସର୍ବଦା ସୁନ୍ଦର ସୁନ୍ଦର କ୍ରୀଡ଼ା କରୁଥିଲେ ସେହି ବ୍ରଜବାସୀମାନଙ୍କ ସୌଭାଗ୍ୟ ବିଷୟରେ କ'ଣ ବା କହିହେବ ? ସେମାନଙ୍କୁ ଆମେ ପରମଧନ୍ୟବାଦାର୍ହ ବୋଲି ମନେକରୁ । ଯେଉଁମାନଙ୍କର ଏହି ଲୀଳା ଶ୍ରବଣରେ ଅଭିରୁଚି ଅଛି ସେମାନେ ବି ଧନ୍ୟ ।

ମହର୍ଷି ସୂତ କହିଲେ—"ମୁନିଗଣ ! ମହାରାଜା ପରୀକ୍ଷିତ ଅଘାସୁର ଉଦ୍ଧାର କଥାରେ ଯେଉଁ ଶଙ୍କା ଉତ୍ଥାପନ କରିଥିଲେ ଏବଂ ଗୁରୁଦେବ ସେହି ଶଙ୍କାର ଯେପରି ସମାଧାନ କରିଥିଲେ ତାହା ମୁଁ କହୁଛି । ଅଘାସୁର ଗର୍ଭଭିତରୁ ଗୋପାଳ ବାଳକମାନେ ବାଛୁରି ଓ ଶ୍ରୀକୃଷ୍ଣଙ୍କ ସହିତ ବାହାରକୁ ଆସିଲେ । ପିଲାମାନେ କହିଲେ—"ଭାଇ କହ୍ନେଇ ! ଏତେ ବଡ଼ ଗୁମ୍ଫା କିପରି ହେଲା ?"

ଭଗବାନ୍ ହସି ହସି କହିଲେ—"ଅରେ ଏ କ'ଣ ପ୍ରକୃତରେ ଗୁମ୍ଫା ? ଏହା ଏକ ଏକ ଅସୁର ଥିଲା । ସେ ମହାସର୍ପ ଅଜଗର ରୂପରେ ପଡ଼ିଥିଲା । ତୁମେ ସମସ୍ତେ ତାକୁ ପର୍ବତ ଗୁମ୍ଫା ବୋଲି ଭାବି ତା' ଭିତରକୁ ଚାଲିଗଲ । ତା'ର ଗଳାକୁ ମୁଁ ଚପି ଦେଲି । ତା'ର ଆଖି ବାହାରିପଡ଼ିଲା ଓ ସେ ମରିଗଲା ।"

ସମସ୍ତେ କହିଲେ—"ଭାଇ କହ୍ନେଇ ! ତୁ ଏକ ବଡ଼ ବୀର । ତୁ ଏ ଅଜଗରକୁ ମାରି ବଡ଼ ଅଦ୍ଭୁତ କାମ କରିଛୁ । ତୁ ଧନ୍ୟ, ତୋର କାର୍ଯ୍ୟ ମଧ୍ୟ ଧନ୍ୟବାଦାର୍ହ । ତୁ ଏକ ଦେବତା ପରି ମନେ ହେଉଛୁ ।"

ଭଗବାନ୍ କହିଲେ—"ହଉ, ଥାଉ ଥାଉ । ମୋତେ ପ୍ରଶଂସା କରି ଲାଭ ନାହିଁ । ତା'ର ମରିବାର ଥିଲା ମଲା । ଏବେ କିଛି ଖାଇବା କ'ଣ, ଦେଖ ଭୋକରେ ସମସ୍ତଙ୍କ ମୁହଁ ଶୁଖିଯାଇଛି । ସମସ୍ତଙ୍କ ପେଟ ପିଠିରେ ଲାଗିଗଲାଣି । ମୋ' ପେଟ ଖାଁ ଖାଁ କରୁଛି । କିଛି ନ ଖାଇଲେ ତ ଚଳିବ ନାହିଁ । ଗୋପାଳ ବାଳକମାନେ ପଚାରିଲେ—କ'ଣ ଖାଇବା, କେଉଁଠୁ ଖାଦ୍ୟପଦାର୍ଥ ଆଣିବା ?"

ଶ୍ରୀକୃଷ୍ଣ କହିଲେ—"ଅରେ ପଚାରୁଛ କ'ଣ ? ବୃନ୍ଦାବନର ଭୂମି ହେଉଛି ପରମ ପବିତ୍ର । ଏହା ଚୌରାଶି କୋଶ ବିସ୍ତୃତ । ଚୌରାଶି କୋଶ ଭିତରେ ଯେ କୌଣସି ସ୍ଥାନରେ

ବସି ଘରୁ ଆଣିଥିବା ଖେଚିଡ଼ି ଭାତ ଖାଇବା । ଏ ସ୍ଥାନର ପ୍ରତ୍ୟେକ ଧୂଳିକଣା ପବିତ୍ର । ଆଗରେ ଦେଖ, ଯମୁନାନଦୀର କୂଳ କେଡ଼େ ସୁନ୍ଦର ଦେଖାଯାଉଛି । ଏଠାର ବାଲୁକା କେତେ କୋମଳ । ଏହି ରଜତସ୍ୱଚ୍ଛ ବାଲୁକା ସ୍ପର୍ଶରେ ଦେହ ରୋମାଞ୍ଚିତ ହୋଇଉଠେ । ଏଠାରେ ବହୁତ ଗଛ ଅଛି । ଗଛ ଉପରେ ଚଢ଼ି ବଂଶୀ ବଜାଇବା । ଗୋଟି ଡାବୁଲ ଖେଳିବା ପାଇଁ ପ୍ରଶସ୍ତ ପଡ଼ିଆ ଅଛି । ବଲ୍ ବି ଖେଳିହେବ । ଖେଳିବାର ସବୁ ଜିନିଷ ଏଠାରେ ମିଳିବ । ତେଣୁ ଏ ସ୍ଥାନଟି ବଣଭୋଜି ପାଇଁ ଓ ଖେଳିବା ସର୍ବଥା ଉପଯୁକ୍ତ । ଆଖପାଖରେ ଗ୍ରେଷ୍ଟ ବଡ଼ ପୋଖରୀ ବି ଅଛି । ସେଥିରେ ନାନାରଙ୍ଗର ପଦ୍ମଫୁଲ ଫୁଟିଛି । କମଳର ସୁଖଦ ସୁବାସରେ ଆକର୍ଷିତ ହୋଇ ଭ୍ରମରଗଣ କଳଗୁଞ୍ଜନ କରି ଉଡ଼ି ବୁଲୁଛନ୍ତି । ବୃକ୍ଷଗୁଡ଼ିକରେ ନାନାଜାତିର ପକ୍ଷୀ ବସି କଳରବ କରୁଛନ୍ତି । ପକ୍ଷୀମାନଙ୍କ କାକଳୀ ଧ୍ୱନିରେ ଚତୁର୍ଦ୍ଦିଗ ମୁଖରିତ ହୋଇଉଠୁଛି । ବୃକ୍ଷ ବାହୁଲ୍ୟ ହେତୁ ସ୍ଥାନଟି ରମଣୀୟ ଓ ଶ୍ରୁଷ୍ମାଶୀତଳ ହୋଇଛି । ଏଇଠି ବଣଭୋଜି କରିବାକୁ ମୋର ଇଚ୍ଛା । ସ୍ଥାନଟି ଏକାନ୍ତ, ସୁନ୍ଦର, ସୁଗନ୍ଧ ଯୁକ୍ତ, ସରସ, ସୁଖଦ, ସ୍ୱଚ୍ଛ ଓ ସମସ୍ତ ପ୍ରକାର ସୁବିଧାଜନକ । ଆମେ ସମସ୍ତେ ଏଠି ବସି ଖାଇବା । ଆଗରେ କେଡ଼େ କୋମଳ ଘାସ ହୋଇଛି । ବାଛୁରୀଗୁଡ଼ିକ ଯମୁନା ଜଳ ପିଇ ଘାସ ଖାଆନ୍ତୁ । ସେମାନେ ଚରି ଚରି ଦୂରକୁ ଯିବା ପୂର୍ବରୁ ଆମର ଖାଇବା ଶେଷ ହୋଇ ଯାଇଥିବ । ଦୌଡ଼ି କରି ଯାଇ ସେମାନଙ୍କୁ ଫେରାଇ ଆଣିବା । ତୁମମାନଙ୍କର ମତ କ'ଣ କୁହ ।"

ଶ୍ରୀକୃଷ୍ଣଙ୍କ କଥା ଶୁଣି ସମସ୍ତେ ଏକ ସ୍ୱରରେ କହିଲେ—"ଭଲ କଥା । ତାହା ହିଁ ହେଉ । କହ୍ନେଇ ଭାଇ ! ଆମକୁ ପଚାରି ମତ ନେବାର କୌଣସି ଆବଶ୍ୟକତା ନାହିଁ । ତୁ ଯାହା କହିବୁ ଓ କରିବୁ ସେଥିରେ ଆମେ ସମସ୍ତେ ଏକମତ । ଏବେ ଆଉ ଡେରି କରି ଲାଭ କ'ଣ ? ଭୋକରେ ଅନ୍ତଃବୁଜୁଳା ବାହାରି ଆସିବାକୁ ବସିଲାଣି ।"

ମହର୍ଷି ସୂତ କହିଲେ—"ମୁନିଗଣ ! ସମସ୍ତେ ଏକମତ ହେବାର ଜାଣି ଶ୍ୟାମସୁନ୍ଦର ଗୋପାଳ ବାଳକଙ୍କ ସହିତ ବାଛୁରୀଙ୍କୁ ନେଇ ଯମୁନାରେ ଜଳ ପିଆଇଲେ । ଅଘାସୁର ପେଟରେ ପଶିଥିବାରୁ ଦେହରେ ସ୍ଥାନେ ସ୍ଥାନେ ରକ୍ତ ଲାଗିଥିଲା । ତେଣୁ ସମସ୍ତେ ସ୍ନାନ କଲେ ଓ ବାଛୁରୀଙ୍କୁ ଧୋଇଧାଇ ଦେଲେ । ଆଗରେ ଥିବା କଅଁଳ ଘାସ ପାଖରେ ବାଛୁରୀଙ୍କୁ ଛାଡ଼ି ଦେଲେ । ବାଛୁରୀଗୁଡ଼ିକ ଆନନ୍ଦରେ ଚରିବାକୁ ଲାଗିଲେ । ପିଲାମାନେ ସମସ୍ତେ ଧାଡ଼ି ବାନ୍ଧି ବସିଗଲେ । ଶ୍ରୀକୃଷ୍ଣ କହିଲେ—ସମସ୍ତେ ଏପରି ବସିଯାଅ ମୁଁ ଯେପରି ସମସ୍ତଙ୍କ ମୁହଁ ଦେଖିପାରିବି । ଆନନ୍ଦରେ ପିଲାମାନେ ଶ୍ରୀକୃଷ୍ଣଙ୍କୁ ଘେରି ବସିଗଲେ । ଶ୍ରୀକୃଷ୍ଣ କହିଲେ—"ନା, ସେପରି ନୁହେ । ସମସ୍ତେ ଅର୍ଦ୍ଧଚନ୍ଦ୍ରାକାର ହୋଇ ବସ । ଯେଉଁମାନେ ଶ୍ରେଷ୍ଟପିଲା ସେମାନେ ଆଗରେ ବସନ୍ତୁ ।"

ମହର୍ଷି ସୂତ କହିବାକୁ ଲାଗିଲେ—"ମୁନିଗଣ ! ବଡ଼ ହେବା ଦ୍ୱାରା ଲୋକ ଭଗବାନଙ୍କଠାରୁ ଦୂରେଇ ଯାଏ । ଯାହା ମନରେ ବଡ଼ପଣିଆ ଯାହିଁ ଯେତେ ଅଧିକ ଅଭିମାନ ରହିବ ସେ ଭଗବାନଙ୍କଠାରୁ ସେତିକି ଅଧିକ ଦୂରକୁ ଖସିଯିବ । ଯେ ନିଜକୁ ତୃଣଠାରୁ ବି ଶ୍ରେଷ୍ଠ ମନେ କରିବ, ସେ ଭଗବାନଙ୍କର ସେତିକି ନିକଟବର୍ତ୍ତୀ ହେବ । ଅର୍ଦ୍ଧଚନ୍ଦ୍ରାକାର ହୋଇ ବସିବାରେ ସମସ୍ତେ ଭଗବାନଙ୍କ ମୁଖ କମଳ ଦର୍ଶନ କଲେ । ପରସ୍ପର ଲାଗି ଲାଗି ବସିବା ଯୋଗୁଁ ଶ୍ରୀକୃଷ୍ଣଙ୍କ ଅଙ୍ଗସ୍ପର୍ଶ ମଧ୍ୟ ଲାଭ କଲେ । ସମସ୍ତେ ଯେ ଯାହାର ଛିକା ଆଣିଲେ ! ପତ୍ର ପକାଇ ସେ ଯାହା ସ୍ଥାନରେ ବସିଗଲେ । କିଏ ସୂର୍ଯ୍ୟମୁଖୀ ଫୁଲର ପତ୍ର ଆଣିଛି ତ କିଏ ପଦ୍ମ ପତ୍ର । କିଏ ବରପତ୍ର ଆଣିଛି ତ କିଏ ମହୁଲ, ସପ୍ତପର୍ଣ୍ଣୀ ବା ଶାଳପତ୍ର ଆଣି ବସିଲେ । ସେହିପରି ଆଉ କେତେକ ବେଲ ଖୋଳପା, ତରଭୁଜ ଖୋଳପା, କଦଳୀ ପତ୍ର ଆଣି ବସିଗଲେ । କେତେକ ନିଜ ନିଜ ଛିକା ଖୋଲି କହିଲେ ଏହା ହିଁ ଆମର ପତ୍ର । କିଏ ଭୂର୍ଜପତ୍ର ଆଣିଛି ତ କେତେକ ପତଳା ପଥର ଆଣି ଧୋଇ ପତ୍ର ରୂପେ ପକାଇ ବସିଲେ ଏବଂ ପତ୍ର ଉପରେ ଖାଦ୍ୟ ପଦାର୍ଥ ବାଢ଼ି ଦେଇ ଖାଇବାକୁ ଲାଗିଲେ ।"

ମହର୍ଷି ସୂତ କହିଲେ—"ମୁନିଗଣ ! ଗୋପଜନ ପରସ୍ପରେ ପ୍ରେମର ପ୍ରଶଂସା କହିବାକୁ ଲାଗିଲେ । ହସ, ଖୁସି, ଥଟ୍ଟା ତାମସା ଚାଲିଲା । ସେ ସବୁ ବସ୍ତୁତଃ ବର୍ଣ୍ଣନା କରିବାର ସାମର୍ଥ୍ୟ ମୋର ନାହିଁ । କେବଳ ବନଭୋଜନ ବିଷୟରେ ସାମାନ୍ୟ ସୂଚନା ଆପଣମାନଙ୍କୁ ଦେଉଛି ।"

## ଛପ୍ପୟ

ଗୋପ ନଟବରଙ୍କ ବଚନ ବାଲ କେତେ ସୁନ୍ଦରମତେ ।
ଛୋଟବଡ ଛୋଟେ ପ୍ରଅନ ବଡ଼େ ପୂଜ କେତେ କ୍ରମତେ ॥
କମଳକର୍ଣ୍ଣିକା ଅସ ପାସ ବୈଠେ ମାନୋ ଦଲ ।
ଅବଚେ ପଉଲ କରୀ ପତ୍ର ବକ୍‌କଲ କୋମଲ ଫଲ ॥
ପରଲ ପରସୀ ପ୍ରେମତେ, ପ୍ରିୟ ପଦାର୍ଥ ପାବନ ଲଗେ ।
ହୁଁସତ ହଁସାବତ ଗ୍ୱାଲ୍ ସବ, ପ୍ରେମ ସରସତା ମହଁ ପଗେ ॥

# ବଣଭୋଜିର ଏକ ଚିତ୍ର

ବିଭ୍ରଦ୍ ବେଣୁଂ ଜଠରପଟୟୋଃ ଶୃଙ୍ଗବେତ୍ରେ ଚ କକ୍ଷେ ।
ବାମେ ପାଣୌ ମସୃଣକବଲଂ ଯତ୍ଫଳାନ୍ୟଙ୍ଗୁଳୀଷୁ ॥
ତିଷ୍ଠନ୍ ମଧ୍ୟେ ସ୍ୱପରିସୁହୃଦୋ ହାସୟନ୍ନର୍ମଭିଃ ସ୍ୱୈଃ ।
ସ୍ୱର୍ଗେ ଲୋକେ ମିଷତି ବୁଭୁଜେ ଯଜ୍ଞଭୁଗ୍ ବାଳକେଳିଃ ॥

(ଶ୍ରୀ ଭା ୧୦ ସ୍କ, ୧୩ ଅ, ୧୧ ଶ୍ଳୋକ)

## ଛପ୍ପୟ

ନଟବର ଗୋପନ ସହିତ କରତ ଭୋଜନ ବର ବନମହିଁ ।
ମୁରଲୀ ପଟମହିଁ ଖୁସୀ ବେଂତ ଆରୁ ସିଂଗ ବଗଲମହିଁ ॥
ମାଖନ ଦଧି ମଧୁ ଘୃତ ହାଥମହିଁ, ଗ୍ରାସ ସଲୋନୋଁ ।
ହଁସତ ହଁସାବତ ସତତ, ସଖନକୁଁ ସୁଖ ଅତି ଦୀନୋଁ ॥
ବିଧି ବିଧାନତେଁ ମଖନମହିଁ, ସୁର ଗହହିଁ ଜୋ ନେମତେଁ ।
ତେ ଗ୍ୱାଲନ ସଙ୍ଗ ବୈଠିକେଁ, ଜୂଠୋ ଖାୱେଁ ପ୍ରେମତେଁ ॥

ବିଧିନିଷେଧର ସାମ୍ରାଜ୍ୟ ଯେଉଁଠି ଅଛି, ସେଠାରେ ଶ୍ରେଷ୍ଠ ବଡ଼, ଉଚ୍ଚ ନୀଚ ଭେଦ ବିଚାର ଓ ବ୍ୟବହାର ରହିଛି । କିଏ କିଏ ବସିବେ, କିଏ କେଉଁଠି ସ୍ଥାନ ପାଇବ ; କିନ୍ତୁ ପ୍ରେମର ସାମ୍ରାଜ୍ୟରେ ସମସ୍ତେ ସମାନ । ସମସ୍ତେ ଏକ ପଙ୍‌କ୍ତିରେ ବସନ୍ତି । ଯଜ୍ଞାଦି କର୍ମ ବିଧିର ଅଧୀନ । ବିଧିହୀନ ଯଜ୍ଞ ନିଷ୍ଫଳ ହୁଏ, ସେଥିପାଇଁ ଦୁଃଖ ନାହିଁ । ମାତ୍ର ବିଧିହୀନ ଯଜ୍ଞକର୍ତ୍ତା ଶୀଘ୍ର ବିନାଶ ଲାଭ କରେ । ଯେଉଁ ଯଜ୍ଞ ବିଷ୍ଣୁଙ୍କ ପ୍ରୀତି ଉଦ୍ଦେଶ୍ୟରେ କରାଯାଏ ସେଥିରେ ଭଗବାନ ବିଷ୍ଣୁଙ୍କୁ ବିଶୁଦ୍ଧ ସ୍ୱର ମନ୍ତ୍ରଦ୍ୱାରା ବିଧିବିଧାନ ପୂର୍ବକ ଆବାହନ କରାଯାଏ । ଯଦି ମନ୍ତ୍ରପାଠ ସମୟରେ ସ୍ୱର, ମାତ୍ରା ବା ବର୍ଣ୍ଣର ଉଚ୍ଚାରଣରେ ତ୍ରୁଟି ରହିଯାଏ, ତେବେ ଭଗବାନ ସେଠାକୁ ଆସନ୍ତି ନାହିଁ । ଯଜ୍ଞରେ ଅଶୁଦ୍ଧି ରହିଗଲେ, ନିୟମଲୋପ ହେଲେ, ବିଧିବିଧାନ ଆଗପଛ ହୋଇଗଲେ ଭଗବାନ ବିରାଜିତ ହୁଅନ୍ତି ନାହିଁ । ଯେଉଁ ଭଗବାନ ଷଡ୍‌ବର୍ଗୀ ସେ ପ୍ରେମର ସାମ୍ରାଜ୍ୟରେ ସ୍ୱତଃ ଆସି ପହଞ୍ଚିଯାଆନ୍ତି । ଗାଁ ଗହଳର

ମୂର୍ଖ ଗୋପାଳଙ୍କ ସାଙ୍ଗରେ ବସି ସେମାନଙ୍କର ଉଚ୍ଛିଷ୍ଟ ଖାଉଥିବା ଭଗବାନଙ୍କ ଲୀଳା ସମ୍ବନ୍ଧରେ କଏ କ'ଣ କହିପାରିବ ?

ମହର୍ଷି ସୂତ କହିଲେ—"ମୁନିଗଣ ! ସବୁ ବାଳକଙ୍କ ଆଗରେ ପଣ ପଡ଼ିଗଲା । ଗପ ଆରମ୍ଭ ହେଲା । ହସ ଖୁସି ଚାଲିଲା । ସରସତାର ଧାରା ପ୍ରବାହିତ ହେଲା । ଆନନ୍ଦର ସ୍ରୋତ ଉଚ୍ଛୁଳିବାକୁ ଲାଗିଲା । ସେତେବେଳେ ଭଗବାନଙ୍କର ଶୋଭା ଥିଲା ଅବର୍ଣ୍ଣନୀୟ । ଭଗବାନ ଗୋପବେଶରେ ଥିଲେ ଓ ସେହି ଅନୁସାରେ ଲୀଳା କରୁଥିଲେ । ଗୋପବାଳକମାନେ ଯେପରି ବେଶ ହୁଅନ୍ତି, ଖେଳନ୍ତି, ଯେଉଁ ଯେଉଁ ଚେଷ୍ଟା କରନ୍ତି ଶ୍ରୀହରି ସେ ସବୁର ଅନୁକରଣ କରୁଥିଲେ । ତାଙ୍କ ପୀତାମ୍ବର ଫେଣ୍ଟାରେ ସମସ୍ତଙ୍କ ଚିତ୍ତକୁ ବିମୋହିତ କରୁଥିବା ମୁରଲୀ ଖୋସାହୋଇଥିଲା । ଗୋଟିଏ କାଖରେ ଶିଙ୍ଗା ଓ ଅନ୍ୟ କାଖରେ ବେତ ଗେଞ୍ଜା ହୋଇ ରହିଥିଲା । ଡାହାଣ ହାତରେ ଥିଲା ଖାଦ୍ୟ । ଶ୍ରୀକୃଷ୍ଣଙ୍କ ପାଟି ଥିଲା ବଡ଼ । ତେଣୁ ସେ ବଡ଼ ବଡ଼ ଗୁଣ୍ଡା ଖାଉଥିଲେ । ତାଙ୍କ ହାତରେ ଯେତେ ଦହି, ମାଖନ, ଘିଅ, ମିଠା ରହୁଥିଲା ସେତକ ଗୋଲାକର ପାଟିରେ ପକାଇ ଦେଉଥିଲେ । ମିଠା ଖାଇ ଖାଇ ସ୍ୱାଦ ବଦଳେଇବା ପାଇଁ ମଝିରେ ମଝିରେ ଆମ୍ବ, ଲେମ୍ବୁ, ତେନ୍ତୁଳି, ଲଙ୍କା, ଅଦା ଆଦିର ଆଚାର ପାଟିରେ ମାରି ପୁଣି ପାଟିରେ ପାଟିଏ ଖାଦ୍ୟ ପୁରାଇ ଦେଉଥିଲେ । ମଝିରେ କେହି ହସ କଥା କହିଲେ ସମସ୍ତେ ହସନ୍ତି, ସେ କିନ୍ତୁ ଆଉ ଏକ ଗୁଣ୍ଡା ପାଟିରେ ପୁରାଇଥାନ୍ତି । ସମସ୍ତେ ନିଜ ନିଜର ଖାଦ୍ୟ ପଦାର୍ଥର ସ୍ୱାଦ ଦେଖାଉଥିଲେ । ଜଣେ ଏକ ଲଡ଼ୁ ଅଧା ଖାଇ କହୁଥିଲା—କହ୍ନେଇ ! ଦେଖ ଆମ ଲଡ଼ୁ କେଡ଼େ ସୁନ୍ଦର ।"

ଭଗବାନ କହନ୍ତି—"ଦେଖେଇଲୁ କମିତ ହୋଇଛି ?"

ପିଲାଟି ଶ୍ରୀକୃଷ୍ଣଙ୍କ ହାତରେ ଅଧାଖିଆ ଲଡ଼ୁ ରଖିଦେଲେ ସେ ଚଟ୍‌କରି ତାକୁ ପାଟିରେ ପକାଇ ଦେଇ କହନ୍ତି—"ଭାଇ ! ବହୁତ ମିଠା ହୋଇଛି ।" ସେହିପରି କାହାର ପୁରି, କାହାର ଲଡ଼ୁ, କାହାର ମିଠେଇ ତ କାହାର ଜଳବ ଖାଇ ଖୁସିରେ ଶ୍ରୀକୃଷ୍ଣ କାହାର ନିନ୍ଦା ତ କାହାର ପ୍ରଶଂସା କରନ୍ତି, କାହାକୁ ଥଟ୍ଟା କରନ୍ତି । କହ୍ନେଇର କଥା ଶୁଣି ସମସ୍ତେ ହସି ହସି ଗଡ଼ିଯାଆନ୍ତି । ଭଗବାନ ନିଜ ଖାଦ୍ୟରୁ କିଛି ସମସ୍ତଙ୍କୁ ବାଣ୍ଟୁଥିଲେ । ମଧୁମଙ୍ଗଳ ଭାଗରେ ଲଡ଼ୁ ପଡ଼ିଲା ନାହିଁ । ସେ କହିଲା—"ଆରେ ଭାଇ ! ଉପରୁ ବିଜୁଳି ମାରିବ ଯଦି ?"

ଭଗବାନ ହସି ହସି କହିଲେ—"ବିଜୁଳି ମାଇଲେ ତୁ କ'ଣ ବଞ୍ଚି ରହିବୁ ।" ମଧୁମଙ୍ଗଳ କହିଲା—"ହଁ ବଞ୍ଚିଯିବି । ଦେଖୁନୁ ଲଡ଼ୁରୁ କିପରି ବଞ୍ଚିତ ହେଲି । ଏହା ଶୁଣି ଭଗବାନଙ୍କ ସହିତ ସମସ୍ତେ ହସି ଉଠିଲେ ।" ଭଗବାନ କହିଲେ—"ଦିଅ ଭାଇ ! ତାକୁ ଦୁଇଗୁଣ ଦିଅ ।" ମଧୁମଙ୍ଗଳ କହିଲା—"ଦୁଇଗୁଣ ନୁହେଁ ଚାରିଗୁଣ । ଏକରେ ମୁଁ

ତୋ’ ଠାରୁ ବଡ଼, ସେଥିପାଇଁ ଦୁଇଗୁଣ । ଦ୍ୱିତୀୟରେ ମୁଁ ବ୍ରାହ୍ମଣ । ବ୍ରାହ୍ମଣମାନଙ୍କୁ ମିଠା ବହୁତ ଭଲଲାଗେ । ଏହା ଶୁଣି ଭଗବାନ ଗ୍ୱରୋଟି ଲଡ଼ୁ ମଧୁମଙ୍ଗଳଙ୍କୁ ଦେଲେ ।”

ପିଲାଟିଏ ବଡ଼ ଘରର ଥିଲା । ସେ ଘରୁ ଆଣିଥିଲା ଛତୁ ଓ ଲୁଣ । ଭଗବାନ ତା’ର ସବୁ ଛତୁ ନେଇଆସିଲେ ଆଉ କହିଲେ—“ଆରେ, ଏତେ ମଧୁର ଜିନିଷ ତୁ ଏକା ଏକା ଖାଉଛୁ । ସମସ୍ତେ ବାଣ୍ଟିକରି ଖାଇବା ।” ଏହା କହି ଭଗବାନ ସମସ୍ତଙ୍କୁ ଛତୁ ଦେଲେ ଏବଂ ତା’ ପତରରେ ଲଡ଼ୁ, ମୋହନଭୋଗ, ରାବିଡ଼ି, ଖିରି, ମାଲପୁଆ ଆଦି ଦେଲେ । ଭଗବାନ କହିଲେ—“ସମସ୍ତେ ଛତୁକୁ ପାଟିରେ ପକାଅ । ଶୁଖିଲା ଛତୁ ଗିଳିବା କଷ୍ଟ ।” ମଧୁମଙ୍ଗଳ ଉଠିପଡ଼ି ଏକ ବାଡ଼ି ଖୋଳି ଛତୁକୁ ତଣ୍ଟି ଭିତରକୁ ପୂରାଇବାର ଅଭିନୟ କଲା; କିନ୍ତୁ ଛତୁ ସବୁ ଏକାଳ ସେକାଳ ହୋଇ ବାହାରି ଆସିଲା ଓ ପବନରେ ଉଡ଼ିଗଲା । ତା’ର ଏପରି ଅବସ୍ଥା ଦେଖି ସମସ୍ତେ ହସିବାକୁ ଲାଗିଲେ ଏବଂ ସମସ୍ତଙ୍କ ପାଟିରୁ ଛତୁ ଫର୍‌ଫାର କରି ବାହାରିବାକୁ ଲାଗିଲା । ସମସ୍ତେ ଦୌଡ଼ି ଦୌଡ଼ି ଯମୁନା କୂଳକୁ ଯାଇ ପାଣି ପିଇଲେ । ଏହାପରେ ହସଖୁସି ହୋଇ ସମସ୍ତେ ଭୋଜନ କଲେ ।”

ପିଲାମାନେ ଭୋଜନରେ ଏପରି ତନ୍ମୟ ହୋଇପଡ଼ିଥିଲେ ଯେ ଘର ଦ୍ୱାର, କୁଟୁମ୍ବ ପରିବାର କାହାରି ଚାଙ୍କର ମନେ ରହିଲା ନାହିଁ । ବଣକୁ ବାଛୁରି ଚରାଇବାକୁ ଆସିଥିବା କଥା ସେମାନେ ପୁରାପୁରି ଭୁଲିଗଲେ । ଶ୍ରୀକୃଷ୍ଣଙ୍କ ସହିତ ମିଶି ବାଳକମାନେ ବଣଭୋଜିର ମଉଜ ମାରୁଥିବାବେଳେ ବାଛୁରୀଗୁଡ଼ିକ ନୂଆ ନୂଆ କଅଁଳ ଘାସ ଖାଇ ଖାଇ ଦୂରକୁ ଚାଲିଗଲେ ।

ଶ୍ରୀକୃଷ୍ଣ ପିଲାମାନଙ୍କ ସହିତ ମିଶି ଖେଳୁଥିବାବେଳେ ବ୍ରହ୍ମା ଆକାଶରେ ଥାଇ ସବୁ ଦେଖୁଥିଲେ । ଭଗବାନଙ୍କ ମାଧୁର୍ଯ୍ୟମୟୀ ଲୀଳା ଦର୍ଶନରେ ସେ ମୋହିତ ହୋଇପଡ଼ିଲେ । ବ୍ରହ୍ମା ଭାବିବାକୁ ଲାଗିଲେ—“ଏ କି ପ୍ରକାର ବ୍ରହ୍ମ । ଗୋପାଳ ବାଳକମାନଙ୍କର ଅଇଁଠା ଖାଇ, ଗ୍ରାମ୍ୟବାଳକ ପରି ଅସଭ୍ୟ କଥାବାର୍ତ୍ତା କରିବା ସଙ୍ଗେ ସଙ୍ଗେ ନିଜେ ହସି ହସି ଯେ ସମସ୍ତଙ୍କୁ ହସାଉଛି ସେ, କି ପ୍ରକାର ବ୍ରହ୍ମ ? ଏଥିରେ କି ଐଶ୍ୱର୍ଯ୍ୟ ଅଛି ଯେ ତା’ର ପରୀକ୍ଷା ନେବା ଉଚିତ ?”

ମହର୍ଷି ସୂତ କହିଲେ—“ମୁନିଗଣ ! ଭଗବାନଙ୍କ ଭୁବନମୋହିନୀ ମାୟା କିଏ ବୁଝିପାରିବ ? ଯେଉଁ ବ୍ରହ୍ମା ସମସ୍ତ ଜଗତକୁ ସୃଷ୍ଟି କରିଛନ୍ତି, ଯେ ସମସ୍ତଙ୍କର ପିତାମହ, ତ୍ରିଦେବ ମଧ୍ୟରେ ଯେ ଅନ୍ୟତମ, ବେଦଗର୍ଭ, ଭଗବାନଙ୍କ ନାଭିକମଳରୁ ଯାହାଙ୍କର ଜନ୍ମ ସେ ମଧ୍ୟ ଭଗବାନଙ୍କ ମାୟାଚକ୍ରରେ ପଡ଼ିଗଲେ । ଭଗବାନଙ୍କ ମାଧୁର୍ଯ୍ୟମୟୀ ଲୀଳା ଦେଖି ସେ ମଧ୍ୟ ମୋହିତ ହୋଇପଡ଼ିଲେ; ତେଣୁ ଆମପରି ପ୍ରାକୃତ ପୁରୁଷ ମାୟାରେ ପଡ଼ି ଯେଉଁ ବ୍ୟବହାର ପ୍ରଦର୍ଶନ କରୁଛୁ ସେଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ବ୍ରହ୍ମା ଭାବିବାକୁ

ଲାଗିଲେ—ଏହାଙ୍କର କିଛି ନା କିଛି ପରୀକ୍ଷା ନେବା ଉଚିତ ହେବ । ଏହା ଭାବି ବ୍ରହ୍ମା ଯେତେ ବାଛୁରି ଚରୁଥିଲେ ସମସ୍ତଙ୍କୁ ନିଜ ପ୍ରଭାବରେ ଅଚେତ କରି ବ୍ରହ୍ମଲୋକକୁ ନେଇଗଲେ ।"

ଜଣେକ ବାଳକ ବାଛୁରିଙ୍କ ଅଡ଼କୁ ଚାହିଁ ଗୋଟିଏ ହେଲେ ବାଛୁରି ଦେଖିବାକୁ ନ ପାଇ ଆଶ୍ଚର୍ଯ୍ୟ ହୋଇଗଲା । ବାଛୁରିଙ୍କ ବେକରେ ବନ୍ଧା ଥିବା ଘଣ୍ଟିର ଶବ୍ଦ ମଧ୍ୟ ଶୁଣାଯାଉ ନ ଥିଲା । ଏହା ଦେଖି ସେ ବଡ଼ ଚକିତ ହୋଇପଡ଼ିଲା ଏବଂ ଅନ୍ୟ ପିଲାଙ୍କୁ କହିଲା—"ଭାଇମାନେ ! ତୁମେ ସବୁ ଏଠାରେ ମଉଜ କରୁଛ, ଆଉ ସେଆଡ଼େ ଗୋଟିଏ ହେଲେ ବି ବାଛୁରି ଦେଖାଯାଉ ନାହାନ୍ତି ।"

ଏହା ଶୁଣି ସମସ୍ତେ ଚକିତ ହୋଇପଡ଼ିଲେ । ଏ ପର୍ଯ୍ୟନ୍ତ ପିଲାମାନେ ଭଗବାନଙ୍କ-ଠାରେ ମନୋନିବେଶ କରି ଭୋଜନ କରୁଥିଲେ । ଯେତେବେଳେ ବାଛୁରି ସବୁ ଅଦୃଶ୍ୟ ହୋଇଯାଇଛନ୍ତି ବୋଲି ଜାଣିଲେ, ସମସ୍ତେ ବ୍ୟସ୍ତ ଓ ଉଦ୍‌ବିଗ୍ନ ହୋଇପଡ଼ିଲେ । ଭୋଜିର ଆନନ୍ଦ କଟିଗଲା । କ୍ଷଣକ ପୂର୍ବରୁ ଯାହାର ମୁହଁ ପ୍ରସ୍ଫୁଟିତ କମଳ ପରି ହସ ହସ ଦେଖାଯାଉଥିଲା ସେଥିରେ ଚିନ୍ତା ଓ ବିଷାଦର ରେଖା ଅଙ୍କିତ ହୋଇଗଲା । ଶ୍ରୀକୃଷ୍ଣ ଭାବିଲେ—ଆନନ୍ଦ ଜୁଆରରେ ଅଯଥା ଭଟ୍ଟା ପଡ଼ିଗଲା । କେଡ଼େ ମଉଜ ଚାଲିଥିଲା, ମଝିରେ ବାଛୁରିଙ୍କ ଚିନ୍ତା ସବୁ ଆନନ୍ଦକୁ ଚୂର୍ମାର କରିଦେଲା । ଯଦି ପିଲାମାନେ ଏଠାରୁ ଉଠି ବାଛୁରି ଖୋଜିବାକୁ ଚାଲିଯିବେ ତେବେ ଏ ମଉଜ ଆଉ ଜମିବ ନାହିଁ । ଏହାପରେ ଭାବି ଭଗବାନ ସମସ୍ତଙ୍କୁ ସାନ୍ତ୍ୱନା ଦେବାକୁ ଯାଇ କହିଲେ—"ଦେଖ, ଭାଇମାନେ ! କେହି ନିଜ ଜାଗାରୁ ଉଠିବ ନାହିଁ । ଏଣୁ ବନଭୋଜି ମଉଜ ଅଧାରେ ଜମିବ ନାହିଁ । ତେଣୁ ତୁମେ ସମସ୍ତେ ଏଇଠି ବସି ରୁହ, ମୁଁ ଏକା ଯାଉଛି । ସବୁ ବାଛୁରିଙ୍କୁ ସଙ୍ଗେ ସଙ୍ଗେ ମୁଁ ଫେରାଇ ଆଣୁଛି । ତୁମେ ସବୁ ନିଶ୍ଚିନ୍ତରେ ବସି ଖାଉଥାଅ । ଖାଇବା ବନ୍ଦ କରିବାର ଆବଶ୍ୟକତା ନାହିଁ ।"

ସମସ୍ତେ ଏକ ସ୍ୱରରେ କହିଲେ—"ଭାଇ କହ୍ନେଇ ! ତୁ ନ ରହିଲେ ଭୋଜନ ଆଦୌ ଭଲ ଲାଗିବ ନାହିଁ । ତୁ ବାଛୁରୀଙ୍କୁ ଫେରାଇ ଆଣିବା ପର୍ଯ୍ୟନ୍ତ ଆମେ ଏଇଠି ବସି ରହିବୁ । ତୁ ଫେରି ନ ଆସିବାଯାଏ ଆମେ ଗୁଣ୍ଡାଏ ବି ପାଟିରେ ଦେବୁ ନାହିଁ । ଆମେ ତୋତେ ଅପେକ୍ଷା କରି ରହିବୁ ।"

ଶ୍ରୀକୃଷ୍ଣଙ୍କ ହାତରେ ବଡ଼ ଗୁଣ୍ଡାଏ ଖାଦ୍ୟ ଥିଲା । ସେହି ଖାଦ୍ୟକୁ ହାତରେ ଧରି ସେ କହିଲେ—"ଅରେ ଦେଖ, ମୁଁ ଏଇ ସଙ୍ଗେ ସଙ୍ଗେ ଯାଇ ବାଛୁରୀଙ୍କୁ ନେଇ ଆସୁଛି । ଏହା କହି ଶ୍ରୀକୃଷ୍ଣ ବାହାରିଗଲେ । କିନ୍ତୁ ବହୁତ ଦୂର ଯାଇ ମଧ୍ୟ ବାଛୁରୀଙ୍କୁ ଦେଖିଲେ ନାହିଁ କି ଘାସକୁ ମଧ୍ୟ ବାଛୁରୀଙ୍କ ପାଦ ଚିହ୍ନ ଦେଖିବାକୁ ପାଇଲେ ନାହିଁ । ବାଛୁରିଚୋରଙ୍କ ଗୋବର୍ଦ୍ଧନ

ପର୍ବତ ଉପରକୁ ଚଢ଼ିଗଲେ କି—ଏହା ଭାବି ଶ୍ରୀକୃଷ୍ଣ ପର୍ବତ ଉପରକୁ ଯାଇ ଦେଖିଲେ ସେଠାରେ ବି ବାଛୁରୀ ନାହାନ୍ତି । ପର୍ବତ ଗୁହା ଭିତରକୁ ପଶିଗଲେ କି—ଏହା ଭାବି ଗୁହାରେ ଯାଇ ବି ଦେଖିଲେ କେଉଁଠି ଗୋଟିଏ ହେଲେ ବାଛୁରୀ ନାହିଁ । ପେଟ ପୂରା ଖାଇଥିବାରୁ ବୃନ୍ଦାବନର ଘଞ୍ଚ କୁଞ୍ଜରେ ଲୁଚି ବାଛୁରୀଗୁଡ଼ିକ ଘାସ ଖାଉଛନ୍ତି କି—ଏହା ଭାବି ସବୁ କୁଞ୍ଜ ଖୋଜିଲେ । ସବୁ ସମ୍ଭାବ୍ୟ ସ୍ଥାନ ଖୋଜି ସାରିବା ପରେ ବାସୁଦେବ ଚିନ୍ତିତ ହୋଇପଡ଼ିଲେ । ଆମେ ଯେଉଁଠି ଖାଉଥିଲୁ ବାଛୁରୀଗୁଡ଼ିକ ସେଠିକୁ ଫେରିଯାଇଥିବେ ବୋଲି ଭାବି ଶ୍ରୀକୃଷ୍ଣ ଫେରିଆସିଲେ । ସେଠାକୁ ଫେରିଆସି ଦେଖିଲେ ବାଛୁରୀ ତ ନାହାନ୍ତି ଅଧିକନ୍ତୁ ତାଙ୍କର ଗୋଟିଏ ସାଙ୍ଗ ପିଲା ବି ସେଠାରେ କେହି ନାହିଁ । ଏହା ଦେଖି ଭଗବାନ ଅତ୍ୟନ୍ତ ବିସ୍ମିତ ହୋଇପଡ଼ିଲେ ।"

ଶୌନକ ପଚାରିଲେ—"ମହାଶୟ ! ବାଳକମାନେ କୁଆଡ଼େ ଗଲେ ?"

ମହର୍ଷି ସୂତ ହସି ହସି କହିଲେ—"ମହାତ୍ମନ ! ବାଛୁରୀ ସବୁ ଯେଉଁଠିକି ଯାଇଥିଲେ ପିଲାମାନେ ବି ସେଇଠିକି ଯାଇଥିଲେ । ବାଛୁରୀଙ୍କ ପଛରେ ତ ପିଲାମାନେ ରହନ୍ତି । ସେଥିପାଇଁ ସେମାନଙ୍କୁ ଗୋପାଳ କୁହାଯାଏ ।"

ଶୌନକ ପଚାରିଲେ—"ବାଳକମାନେ ତାଙ୍କ ବାଛୁରୀ କେଉଁଠି ଅଛି ଜାଣିଲେ କିପରି ?"

ମହର୍ଷି ସୂତ କହିଲେ—"ଗାଈଜଗା ପିଲାମାନେ ଜାଣି କ'ଣ ଯାଇଥିଲେ ? ବାଛୁରୀଙ୍କୁ ମୋହିତ କରି ଯେପରି ବ୍ରହ୍ମା ବ୍ରହ୍ମଲୋକକୁ ନେଇ ଯାଇଥିଲେ ସେହିପରି ଶ୍ରୀକୃଷ୍ଣ ପିଲାମାନଙ୍କୁ ଛାଡ଼ି ବାଛୁରୀ ଖୋଜିବାକୁ ଚାଲିଯିବା ପରେ ତାଙ୍କୁ ଅଧିକ ବିସ୍ମିତ କରିବା ପାଇଁ ଗୋପାଳ ବାଳକମାନଙ୍କୁ ମାୟାବଳରେ ମୋହିତ କରି ନେଇଗଲେ ।"

ଭଗବାନ ବାଳକମାନଙ୍କୁ ନ ଦେଖି ସେମାନଙ୍କୁ ଖୋଜିବା ପାଇଁ ବାହାରିଲେ । ବହୁତ ବୁଲାବୁଲି କରିବା ପରେ ଯେତେବେଳେ ବାଳକ ଆଉ ବାଛୁରୀଙ୍କୁ ପାଇଲେ ନାହିଁ, ସେତେବେଳେ ସେ ଧ୍ୟାନକରି ସବୁକଥା ଜାଣିଗଲେ । ଐଶ୍ୱର୍ଯ୍ୟ ଦେଖିବା ଉଦ୍ଦେଶ୍ୟରେ ବ୍ରହ୍ମା ଏପରି କରିଛନ୍ତି ବୋଲି ଜାଣି ଭଗବାନ ଶ୍ରୀକୃଷ୍ଣ ନିଜର ଐଶ୍ୱର୍ଯ୍ୟ ପ୍ରକଟ କରିବା ପାଇଁ ସ୍ଥିର କଲେ ।"

ମହର୍ଷି ସୂତ କହିଲେ—"ମୁନିଗଣ ! ମାଧୁର୍ଯ୍ୟ ଆଗରେ ଐଶ୍ୱର୍ଯ୍ୟ ଚର୍ଚ୍ଚା ଶୁଣିବାକୁ ସେ ଇଚ୍ଛା କରନ୍ତି ନାହିଁ, ସେହି ଗୋପାଳବାଳକ ରୂପଧାରୀ ଶ୍ୟାମସୁନ୍ଦରଙ୍କୁ ପରୀକ୍ଷା କରିବା ବ୍ରହ୍ମାଙ୍କ ପକ୍ଷରେ ମୋହ ବ୍ୟତୀତ ଅନ୍ୟ କିଛି ନୁହେଁ । ବ୍ରହ୍ମାଙ୍କର ଏହି ମୋହ ମଧ୍ୟ ସ୍ୱାଭାବିକ ନ ଥିଲା । ପ୍ରଭୁଙ୍କ ଇଚ୍ଛାରେ ହିଁ ବ୍ରହ୍ମାଙ୍କର ଏପରି ମୋହ ଜାତ ହୋଇଥିଲା । ଏହାପରେ ଯାହା ଘଟିଲା ତାହା କହୁଛି, ଆପଣମାନେ ମନଦେଇ ଶୁଣନ୍ତୁ ।"

### ଛପ୍ପୟ

ବିଧିନେ ଲୀଳା ଲଖୀ ମୋହ ଅତି ମନମହଁ ଛାୟୋ ।
କରୁଁ ପରୀକ୍ଷା ହେତ ଶଠ ଚତୁରାନନ ଆୟୋ ॥
ବଚ୍ଛର ଲୟୋ ଚୁରାଇ ଛୁପାୟୋ ନିଜପୁର ଜାକେଁ ।
ପୁନି ବାଲକ ଲୈ ଗୟୋ ଖେଲତେ ଥଲପୈ ଆକେଁ ॥
ସୋଚେ—ଅବ କା କରତୁ ହୈ, କିହି ଜସୁମତିକୋ ଛୋହରା ।
ବଚ୍ଛରନକୁ ଢୂଁଢତ ଫିରେଁ, ଇତ ହରି ଗିର ଗୁହ କନ୍ଦରା ॥



## କୃଷ୍ଣମୟ ଜଗତ

ତତଃ କୃଷ୍ଣୋ ମୁଦଂ କର୍ତ୍ତୁଂ ତନ୍ମାତୃଣାଂ ଚ କସ୍ୟ ଚ ।
ଉଭୟାୟିତମାତ୍ମାନଂ ଚକ୍ରେ ବିଶ୍ୱକୃଦୀଶ୍ୱରଃ ॥
(ଶ୍ରୀ ଭା ୧୦ ସ୍କ, ୧୩ ଅ, ୧୮ ଶ୍ଳୋକ)

### ଛପ୍ପୟ

ପୁନି ନହିଁ ନିରଖେ ବାଲ ଖଲ ବିଧିକୃତ ସବ ଜାନେୟା ।
କୃଷ୍ଣ କୃପିତ ନହିଁ ଭୟୋ ମୋହ ମାୟା କୋ ମାନେୟା ॥
ହୋୱୈଁ ନହିଁ ବିଧି ଗ୍ୱାଲ-ବାଲ ବଚ୍ଛରନି ଜନନିନି ଦୁଃଖ ।
ବାଳକ ବଚ୍ଛର ବନେ କୃଷ୍ଣ ସବକୁଁ ଦେୱୈଁ ସୁଖ ।
ଶୋଭା ଶୀଳ ସ୍ୱଭାବ ସ୍ୱର, ନାମ ରୂପ ବସ୍ତ୍ର ବେଶ ସବ ॥
ଜୈସେ ଜିତନେ ସବ ହତେ, ଓତନେ ତସେ ହରି ବନେ ତବ ॥

ଗୋମୁଖ ଗହ୍ୱରରୁ ଯେଉଁ ଜଳଧାରା ବାହାରିଛି ତାହା କେବେ ନା କେବେ ଯାଇ ସମୁଦ୍ରରେ ପହଞ୍ଚିବ । ବହୁ ଜଳଧାରା ସିଧା ଯାଇ ଗଙ୍ଗା ସାଗରରେ ମିଶିଥାଏ । କେତେକ ଜଳଧାରା କାଳଦ୍ୱାରା ଶସ୍ୟକ୍ଷେତ୍ରକୁ ବୁଲିଯାଏ ଏବଂ ଅନ୍ୟ କେତେକ ବଡ଼ ବଡ଼ ଗର୍ତ୍ତରେ ପଡ଼ି ସଢ଼େ । ବିଭିନ୍ନ ସ୍ଥାନରୁ ପ୍ରବାହିତ ହୋଇ ଜଳଧାରା ସେହି ଗୋଟିଏ ସ୍ଥାନକୁ ଯାଏ,

ତାହା ହିଁ ତା'ର ବିଶ୍ରାମ ସ୍ଥାନ, ତାହା ହିଁ ତା'ର ଧାମ ଓ ତାହା ହିଁ ତା'ର ପ୍ରାପ୍ୟ ସ୍ଥାନ । ଯେଉଁ ଜୀବ ଭଗବାନଙ୍କଠାରୁ ଅଲଗା ହୋଇ ବିଶ୍ୱବ୍ରହ୍ମାଣ୍ଡରେ ଘୂରି ବୁଲୁଛି ସେ କେବେ ନା କେବେ ଯାଇ ସେହି ଭଗବାନଙ୍କଠାରେ ମିଳିତ ହେବ । ଜୀବ ଯେଉଁଠି ଅଛି, ଯେପରି ଅଛି ଏବଂ ଯେତେ ଯୋନିରେ ଜନ୍ମଗ୍ରହଣ କରୁ ପଛକେ ସମସ୍ତେ ଆଜି ନା କାଲି ଏ ସଂସାରରୁ ମୁକ୍ତ ହେବେ, ଏଥିରେ ସନ୍ଦେହ ନାହିଁ ।

ଭଗବାନ ନିଜ ମାୟାରେ ସମସ୍ତଙ୍କୁ ନଚାଉଛନ୍ତି । ବ୍ରହ୍ମାଙ୍କଠାରୁ ଆରମ୍ଭ କରି ପିମ୍ପୁଡ଼ି ପର୍ଯ୍ୟନ୍ତ ସମସ୍ତେ ତାଙ୍କର ଇଙ୍ଗିତରେ ନାଚୁଛନ୍ତି । ପ୍ରଭୁ ସେମାନଙ୍କ ସହିତ ଖେଳନ୍ତି । ସାଧାରଣ ଜୀବଗଣ ଗୁଣମୟୀ ଜନମୋହିନୀ ମାୟାଚକ୍ରରେ ପଡ଼ି କର୍ମ କରନ୍ତି ଏବଂ ଭଗବଦ୍ ଭକ୍ତଗଣ ଭକ୍ତମୋହିନୀ ମାୟାରେ ମୋହିତ ହୋଇ ପ୍ରଭୁଙ୍କ ସହିତ ଖେଳନ୍ତି । ଜୀବ ଯେତେବେଳେ ଭଗବାନଙ୍କ ମର୍ମକୁ ଜାଣିଯାଏ, ସେତେବେଳେ ଭଗବାନ ହସନ୍ତି ଓ ଉପେକ୍ଷା କରନ୍ତି ; କିନ୍ତୁ ଭଗବାନଙ୍କୁ ମଧ୍ୟ ବଶୀଭୂତ କରିବା ପାଇଁ ଏକ ଅତନ୍ତ୍ୟ ମାୟା ଅଛି, ଯେଉଁଠି ଭଗବାନ ବି ହାରି ମାନନ୍ତି । ଅନ୍ୟର ପ୍ରାର୍ଥନା ଶୁଣି ଭଗବାନ ଅଟକି ଯାଆନ୍ତି, କିଛି ଉତ୍ତର ଦେଇପାରନ୍ତି ନାହିଁ । ଫଳେ ଯେତେବେଳେ ମଗ୍ନ ହୋଇଯାଆନ୍ତି ସେତେବେଳେ ଭଗବାନ ସବୁକଥା ଭୁଲିଯାଆନ୍ତି । ସେ ଫଳେ କହନ୍ତି—"ଭଗବତୀ, ମୁଁ ତୁମର ଋଣୀ । ତୁମର ଋଣ କେବେହେଲେ ମୁଁ ପରିଶୋଧ କରିପାରିବି ନାହିଁ ।"

ଜୀବ ଯେଉଁଠି ଯେଉଁ କାରଣରୁ ଆକର୍ଷିତ ହୁଏ ତାହା ଦେହ ସମ୍ବନ୍ଧରୁ ନୁହେଁ, ଭଗବାନଙ୍କ ବିଭୂତି ସମ୍ବନ୍ଧରୁ ଆକର୍ଷିତ ହୋଇଥାଏ । ଭଗବାନ ଆତ୍ମାରୂପରେ ସର୍ବତ୍ର ସମାନରୂପେ ପରିବ୍ୟାପ୍ତ; କିନ୍ତୁ ଯେଉଁଠି ଯେଉଁ ରୂପରେ ଯେତିକି ଅଭିବ୍ୟକ୍ତ ପ୍ରକାଶ ପାଇବ, ସେଠାରେ ଆକର୍ଷଣ ସେତିକି ଅଧିକ ହେବ । ଅନ୍ତଃକରଣ ଯେତିକି ସ୍ୱଚ୍ଛ ହେବ ଆତ୍ମା ସେଥିରେ ସେତିକି ଅଧିକ ପ୍ରକାଶିତ ହେବ । ସୂର୍ଯ୍ୟ ମହାନ୍ ରୂପରେ ସମସ୍ତଙ୍କୁ ଆଲୋକ ପ୍ରଦାନ କରୁଛନ୍ତି; କିନ୍ତୁ କୌଣସି ଓ ପାଷାଣରେ ସେତେ ଅଧିକ ପ୍ରକାଶ ନ ଥାଏ । ତେଣୁ ପଥର ଓ ଲୁହାର ଉପରି ପାଖରେ ପ୍ରକାଶ ଦେଖଯାଏ ନାହିଁ । କାଚରେ ସ୍ୱଚ୍ଛତା ଅଧିକ ଥିବାରୁ ପ୍ରକାଶ ଅଧିକ ଚକ୍‌ମକ୍ କରେ । ଏହି ବିଶ୍ୱ ବିଷ୍ଣୁମୟ । ବିଷ୍ଣୁ ଜଗନ୍ମୟ । ଏହି ରହସ୍ୟକୁ ଶ୍ରୀକୃଷ୍ଣାବତାରରେ ଭଗବାନ ନିଜ ଲୋକଙ୍କୁ ପ୍ରତ୍ୟକ୍ଷ ଭାବରେ ଦେଖାଇ ଦେଇଥିଲେ ।

ମହର୍ଷି ସୂତ କହିଲେ—"ମୁନିଗଣ ! ବ୍ରହ୍ମା ଯେତେବେଳେ ଭଗବାନ ଶ୍ରୀକୃଷ୍ଣଙ୍କୁ ପରୀକ୍ଷା କରିବା ପାଇଁ ତାଙ୍କର ସାଙ୍ଗ ସାଥୀଙ୍କ ସହିତ ବାଛୁରୀଗୁଡ଼ିକୁ ହରଣ କରି ନେଲେ ସେତେବେଳେ ଭଗବାନ ଭାବିଲେ—ଏବେ କ'ଣ କରିବି ? ଯଦି ସନ୍ଧ୍ୟାବେଳକୁ ବାଛୁରୀଙ୍କ ସହିତ ଗୋପାଳ ବାଳକମାନେ ଘରକୁ ନ ଫେରିବେ, ତେବେ ଗାଈ ଓ ପିଲାଙ୍କ ମା' ମାନେ ଅତ୍ୟନ୍ତ ମନ ଦୁଃଖ କରିବେ । ବ୍ରଜବାସୀମାନେ ଛଟପଟ ହୋଇ ଜୀବନ ଦେଇଦେବେ ।

ସମସ୍ତେ ଭାବଁବେ—ଏହ କୃଷ୍ଣ ହିଁ ସେମାନଙ୍କୁ କେଉଁଠି ଲୁଚ୍ଛଇ ଦେଇ ଆସିଛୁ । ଏହା ଭାବ ଶ୍ରୀକୃଷ୍ଣ ନଜେ ବାଲକ ଓ ବାଛୁରୀ ରୂପ ଧାରଣ କଲେ ।''

ଏହାଶୁଣି ଶୌନକ ପଚ୍ଚରଲେ—''ମହାଶସ୍ୱ ! ଭଗବାନ ନଜେ ବାଲକ ଓ ବାଛୁରୀ ରୂପ କାହିଁକ ଧାରଣ କଲେ ? ସେ ସବଂ ସମର୍ଥ । ଯାହା ଇଚ୍ଛା ତାହା ସେ କର ପାରଥାନ୍ତେ । ସବଂଜ୍ଞ ସେ ଯାଇପାରଥାନ୍ତେ । ତେଣୁ ମାସ୍ୱାବଳରେ ବ୍ରହ୍ମା ପିଲ୍ଲ ଓ ବାଛୁରୀଙ୍କୁ ଯେଉଁଠି ଲୁଚ୍ଛଇ ରଖିଥିଲେ ସେଠାକୁ ଯାଇ ଶ୍ରୀକୃଷ୍ଣ ସମସ୍ତଙ୍କୁ ଉଦ୍ଧାର କର ଆଣିଲେ ନାହିଁ କାହିଁକ ?''

ମହର୍ଷି ସୂତ କହଲେ—''ମହାଭାଗ ! ଭଗବାନଙ୍କ ପକ୍ଷରେ କୌଣସି କଥା ଅସମ୍ଭବ ନୁହେଁ । ତେଣୁ ସେଠାକୁ ଯାଇ ପିଲ୍ଲ ଓ ବାଛୁରୀଙ୍କୁ ଆଣିବାର ବ ଆବଶ୍ୟକତା ନ ଥିଲ୍ଲ । ସେ ଇଚ୍ଛା କରବାମାତ୍ରେ ସମସ୍ତଙ୍କୁ ଫେରାଇଆଣି ପାରଥାନ୍ତେ ; କନ୍ତୁ ତାହାର ବ୍ରହ୍ମାଙ୍କର ମୋହ ଦୂର ହୋଇ ନ ଥାନ୍ତା । ସେ ଭଗବାନ ଶ୍ରୀକୃଷ୍ଣଙ୍କ ଦବ୍ୟ ମସ୍ୱାଗତ ପରମୈଶ୍ୱର୍ଯ୍ୟ ଦର୍ଶନରୁ ବଞ୍ଚିତ ହୋଇଥାନ୍ତେ । ପୁଣି ଗାଈ ଓ ବ୍ରଜବାସୀଙ୍କୁ ଏବଂ ସ୍ନେହମସ୍ୱୀ ଗୋପାଙ୍ଗନାମାନଙ୍କୁ ବାତ୍ସଲ୍ୟ ସୁଖ ଦେବାର ଅଭିପ୍ରାସ୍ୱ ଥିଲ୍ଲ ।''

ବୃଦ୍ଧା ଗୋପାଙ୍ଗନାମାନେ ଭାବୁଥିଲେ—''କୃଷ୍ଣ କେବଳ ମା' ଯଶୋଦାଙ୍କ କ୍ଷୀର ପାନ କରୁଛନ୍ତ । ହନେ ହେଲେ ଆମେ ତାଙ୍କୁ ସ୍ତନ୍ୟପାନ କରାଇବାର ସୁଖ ଅନୁଭବ କର ପାରଲୁ ନାହିଁ ; ତେଣୁ ବାଳକ ରୂପରେ ସେମାନଙ୍କ ମନୋକାମନା ପୂର୍ଣ୍ଣ କରବାକୁ ଶ୍ରୀକୃଷ୍ଣଙ୍କର ଇଚ୍ଛା ଥିଲ୍ଲ । ନଜେ ଯାଇ ଯଦ ବାଛୁରୀ ଓ ପିଲ୍ଲମାନଙ୍କୁ ନେଇ ଆସିଥାନ୍ତେ ତେବେ ଖେଳ ଠିକ୍ ଭାବରେ ଜମି ନ ଥାନ୍ତା । ଶ୍ରୀକୃଷ୍ଣ ଥିଲେ ଶାସକମାନଙ୍କର କଟ୍ଟୁ ଶାସକ । ସେହ ଶାସନରେ ପ୍ରେମ, ସ୍ନେହ ଓ କରୁଣାର ପ୍ରବାହ ନାହିଁ ; କନ୍ତୁ ଭଗବାନ୍ କୃଷ୍ଣ ତ ରୁକ୍ଷ ନ ଥିଲେ । ସେ ଥିଲେ ରସର ମୂର୍ତ୍ତିମାନ୍ ସ୍ୱରୂପ । ଯେ ସରସ ତା'ର ଲୀଳା ମଧ୍ୟ ସରସ ଓ ଉଲ୍ଲ୍ସମସ୍ୱ ।''

ଏହାଶୁଣି ଶୌନକ ପଚ୍ଚରଲେ—''ଆଚ୍ଛା, ପୁଣି କ'ଣ ହେଲ୍ଲ ? ଭଗବାନ୍ କପର ସବୁରୂପ ଧାରଣ କଲେ ?''

ମହର୍ଷି ସୂତ କହଲେ—''ମହାଶସ୍ୱ ! ପରମାତ୍ମା ଶ୍ରୀକୃଷ୍ଣଙ୍କ ପକ୍ଷରେ କ'ଣ କପର ପ୍ରଶ୍ନର ଅବକାଶ ନାହିଁ । ସେ ସବଂଜ୍ଞ, ସବଂଶକ୍ତ, ସର୍ବଘଟନସ୍ୱାମକ । ଯେତେ ଗୋପାଳ-ବାଳକ ଥିଲେ ସେତକ ରୂପ ଧାରଣ କଲେ । ବାଛୁରୀ ଓ ବାଳକମାନଙ୍କର ଯେପର ଆକାର, ରଙ୍ଗ, ରୂପ ଥିଲ୍ଲ ସେହପର ରୂପରେ ପ୍ରକାଶିତ ହେଲେ । ସେଥିରେ ଟିକଏ ହେଲେ ବ ପାର୍ଥକ୍ୟ ରହଲ ନାହିଁ । ଯେ କଳା ଥିଲ୍ଲ, ଭଗବାନ୍ କଳା ହେଲେ, ଯେ ଗୋରା ଥିଲ୍ଲ ସେଠାରେ ଗୋରା ହେଲେ, ଯେ ଶ୍ରେଷ୍ଠ ଥିଲ୍ଲ, ସେଠାରେ ଶ୍ରେଷ୍ଠ ହେଲେ,

ଯେ ମୋଟା ଥିଲ, ସେଠାରେ ମୋଟା ହେଲେ । ଏହିପରି ଯାହାର ଯେପରି ହାତ, ଗୋଡ଼, ମୁହଁ, ନାକ, କାନ, ଆଖି, ବାଳ ଥିଲା ଭଗବାନ ଠିକ୍ ସେହିପରି ହେଲେ । ଯାହାର ଯେପରି ବଂଶୀ ଥିଲା, ଶିଙ୍ଗା, ବସ୍ତ୍ର, ଆଭୂଷଣ, ଶିକା ପ୍ରଭୃତି ଥିଲା ଠିକ୍ ସେହିପରି ରୂପ ଧାରଣ କଲେ । ଯାହାର ଯେପରି ସ୍ୱଭାବ, ଗୁଣ, ନାମ, ରୂପ, ଅବସ୍ଥା, ଆଚାର, ବ୍ୟବହାର ଥିଲା ଭଗବାନ ଯଥାଯଥଭାବେ ସେହିପରି ଭାବରେ ଅବସ୍ଥାନ କଲେ । ଆଉ କେତେ କ'ଣ କହିବ, ଭଗବାନ 'ସର୍ବଂ ବିଷ୍ଣୁମୟଂ ଜଗତ୍' ଏହି କଥାକୁ ମୂର୍ତ୍ତିମାନ୍ କରି ଦେଖାଇ ଦେଲେ ।

ଅନେକ ସବୁ ସ୍ୱରୂପରେ ଶ୍ରୀକୃଷ୍ଣ ବିରାଜମାନ । ଯେପରି ଚନ୍ଦରେ ପିଆଣ ଖେଳନା ସଜୀବ ହୋଇ ବ୍ୟବହାର କରୁଛି ସେହିପରି ଶ୍ରୀକୃଷ୍ଣ ନିଜେ ବାଛୁରି ହେଲେ, ବାଛୁରି ଚରାଇବାବାଲା ହେଲେ, ବଂଶୀ ହେଲେ ଓ ବଂଶୀ ବଜାଇବାବାଲା ହେଲେ । ନିଜେ ବାଡ଼ି ହେଲେ ଓ ବାଡ଼ି ଧରିବାବାଲା ହେଲେ ଏବଂ ସନ୍ଧ୍ୟାବେଳକୁ ବୃନ୍ଦାବନ ପ୍ରତ୍ୟାଗମନ କଲେ । ବାଛୁରି ଓ ଗୋପାଳବାଳକ ରୂପରେ ସେ ଯାହାର ଘରକୁ ଗଲେ । ସବୁଦିନ ପରି ଶ୍ରୀକୃଷ୍ଣଙ୍କୁ ଦେଖିବାପାଇଁ ଓ ନିଜ ନିଜର ପିଲାମାନଙ୍କୁ ସ୍ୱାଗତ କରିବା ପାଇଁ ମା'ମାନେ ବଂଶୀ ଧ୍ୱନି ଶୁଣିବାମାତ୍ରେ ବାଟକୁ ଚାଲି ଆସିଲେ । ସାକ୍ଷାତ୍ ପରଂବ୍ରହ୍ମ ପରମେଶ୍ୱର ପ୍ରଭୁଙ୍କୁ ନିଜର ପିଲା ବୋଲି ମନେକରି ସ୍ନେହରେ ଆଲିଙ୍ଗନ କଲେ । ସ୍ନେହପୂର୍ଣ୍ଣ ଆଲିଙ୍ଗନ ହେତୁ ମା' ମାନଙ୍କ ସ୍ତନରୁ ସ୍ୱତଃ କ୍ଷୀର ଝରିଯାଇଥିଲା । ପିଲାମାନେ ପାଞ୍ଚବର୍ଷର ହୋଇଯାଇଥିଲେ ମଧ୍ୟ ମା' ମାନେ ସ୍ନେହାଧିକ୍ୟ ହେତୁ ସେମାନଙ୍କୁ କ୍ଷୀରପାନ କରାଉଥିଲେ ।

ଗୋପାଙ୍ଗନାମାନେ ପ୍ରତିଦିନ ନିଜର ପିଲାମାନଙ୍କୁ ଆଲିଙ୍ଗନ କରୁଥିଲେ ମଧ୍ୟ ଆଜିର ଆଲିଙ୍ଗନରେ ସେମାନେ ଅନିର୍ବଚନୀୟ ଆନନ୍ଦ ଅନୁଭବ କଲେ । କାରଣ, ସାକ୍ଷାତ୍ ଆନନ୍ଦଘନ ସ୍ୱରୂପ ପ୍ରେମମୟ ପରଂବ୍ରହ୍ମଙ୍କୁ ସେମାନେ ହୃଦୟରେ ଜାବୁଡ଼ି ଧରିଥିଲେ । ମା' ମାନେ ଯଥାସମୟ ପିଲାମାନଙ୍କୁ ଖଆଇ ପିଆଇ କାହାଣୀ କହି ଶୁଆଇଲେ । ସକାଳେ ଉଠି ପିଲାମାନେ ବାଛୁରିଙ୍କୁ ନେଇ ପୁଣି ବଣକୁ ଚାଲିଗଲେ । ସନ୍ଧ୍ୟାବେଳକୁ ଫେରି ଆସିଲେ । ପୂର୍ବପରି ସବୁ କାର୍ଯ୍ୟ ଯଥାସମୟ ଅନୁଷ୍ଠିତ ହେବାକୁ ଲାଗିଲା । ଗାଈ ଓ ଗୋପାଳୁଣୀମାନେ ବାଛୁରି ଓ ବାଳକମାନେ ନିଜର ପିଲା କି ନୁହେଁ ସେ ବିଷୟରେ କୌଣସି ସନ୍ଦେହ କରିପାରିଲେ ନାହିଁ । ଭଗବାନ ଗୋପାଳବାଳକ ରୂପରେ ସମସ୍ତ ସାମୟିକ କ୍ରୀଡ଼ାଦ୍ୱାରା ମା' ମାନଙ୍କୁ ଖୁସି କରାଇଲେ । ମା' ମାନେ ପୂର୍ବପରି ପିଲାଙ୍କୁ ହଳଦୀ ଲଗାଇବା, ଗାଧୋଇଦେବା, ଖୁଆଇବା, ଶୁଆଇବା ଆଦି କାର୍ଯ୍ୟ ଯଥାସମୟ କରିବାକୁ ଲାଗିଲେ । ଗୋପାଳୁଣୀମାନଙ୍କ ପରି ଗାଈଗୁଡ଼ିକ ମଧ୍ୟ ନିଜର ବାଛୁରିକୁ ସ୍ନେହ କରିବା ସଙ୍ଗେ ସଙ୍ଗେ କ୍ଷୀର ପିଆଇଲେ ; କିନ୍ତୁ ଗୋଟିଏ କଥା ଅଲଗା ମନେ ହେଉଥିଲା । ତାହା ହେଲା ଗାଈ ଓ ଗୋପାଳୁଣୀମାନେ ପୂର୍ବ ଅପେକ୍ଷା ଅଧିକ ସ୍ନେହମୟୀ ଓ ପ୍ରେମମୟୀ ହୋଇ

ପଡ଼ୁଥିଲେ । କେହି କିଛି ଜାଣି ପାରିଲେ ନାହିଁ । ପ୍ରଥମତଃ ଗୋପୀମାନଙ୍କର ନିଜ ପୁଅ ଅପେକ୍ଷା ଯଶୋଦାନନ୍ଦନ ଶ୍ରୀକୃଷ୍ଣଙ୍କଠାରେ ଅଧିକ ସ୍ନେହ ଥିଲା । ସେହି ସ୍ନେହ ବର୍ତ୍ତମାନ ପୁତ୍ର ରୂପଧାରୀ ଶ୍ରୀକୃଷ୍ଣଙ୍କଠାରେ ଅଧିକ ପ୍ରକଟିତ ହେଲା । ଏହିପରି ଭାବରେ ଏକ ବର୍ଷ କାଳ ଅତିବାହିତ ହୋଇଗଲା ।

ମହର୍ଷି ସୂତ କହିଲେ—"ମୁନିଗଣ ! ଭଗବାନ୍ ଶ୍ରୀକୃଷ୍ଣ ନିଜେ ବାଛୁରୀ ଓ ଗୋପାଳ ରୂପ ଧରି ବୃନ୍ଦାବନ ବିପିନ ଓ ଯମୁନା କୂଳରେ ବର୍ଷେ କାଳ ସ୍ୱଚ୍ଛନ୍ଦ ବିହାର କଲେ ଏବଂ ନାନାପ୍ରକାର କ୍ରୀଡ଼ାରେ ମଗ୍ନ ହୋଇ ରହିଲେ ।"

ଶୌନକ ପଚାରିଲେ—"ମହାଶୟ ! ଭଗବାନ୍ ଶ୍ରୀକୃଷ୍ଣଙ୍କର ଏହି ରହସ୍ୟ ଶେଷରେ ଉଦ୍‌ଘାଟିତ ହେଲା ନା ନାହିଁ ?"

ମହର୍ଷି ସୂତ କହିଲେ—ମହାଭାଗ ! ଉଦ୍‌ଘାଟିତ ହେବ ନାହିଁ କାହିଁକି ? ଯେଉଁ କାରଣରୁ ରହସ୍ୟ ଉନ୍ମୋଚିତ ହେଲା ଏବଂ ବର୍ଷେ ପରେ କିପରି ତାହା ବଳଦେବଙ୍କଦ୍ୱାରା ଉଦ୍‌ଘାଟିତ ହେଲା, ସେ କଥା ମୁଁ କହୁଛି ଶୁଣନ୍ତୁ ।"

**ଛପ୍‌ପୟ**

ବନକେଁ ପାଳକ ଗ୍ୱାଲ ପାଲ୍ୟ ବଛରା ହରି ବନକେଁ ।
ବୃନ୍ଦାବନ କୀ ଓର ଚଲେ ପ୍ରଭୁ ବନତେଁ ଚରକେଁ ॥
ବଛରା ବାଲକ ମାତୁ ଭଠୀଁ, ହୃଷ୍ଟତେ ଲପଟାଓୈଁ ।
ଚୂମେ ଗୃତେଁ ବଦନ ପ୍ୟାରତେ ଅଙ୍କ ବଠାଓୈଁ ॥
ଅସନ, ବସନ, ଉବଟନ, ଶୟନ, କରଓ୍ୱାଓୈଁ ସୁତ ସମୁଝକେଁ ।
ବାଲ ବନେ ବନ ଜାହିଁ ହରି, ବଛରନ ଲଓୈଁ ଘେରକେଁ ॥



# ବଳଦେବଙ୍କଦ୍ୱାରା ରହସ୍ୟ ଉଦ୍‌ଘାଟନ

ନୈତେ ସୁରେଶା ଋଷୟୋ ନ ଚୈତେ
ତ୍ୱମେବ ଭାସୀଶ ଭିଦାଶ୍ରୟେଽପି ।
ସର୍ବଂ ପୃଥକ୍ ତ୍ୱଂ ନିଗମାତ୍କଥଂ ବଦେ—
ତ୍ୟୁକ୍ତେନ ବୃତ୍ତଂ ପ୍ରଭୁଣା ବଲୋଽବୈତ୍ ॥

(ଶ୍ରୀ ଭା ୧୦ସ୍କ. ୧୩ଅ,. ୩୯ଶ୍ଳୋକ)

## ଛପ୍ପୟ

କୈଁସୀ ପହୁଲେ ପ୍ରୀତ କୃଷ୍ଣପେ ମାଁ ଯଶୁମତୀକୋ ।
ତୈଁସୀ ବ୍ରଜମହଁ ଭଇ ସୁତନପେ ସବ ଗୋପିନୀକୋ ।।
ବାଢ଼ୈଁ ଛନ୍ନ-ଛନ୍ନ ପ୍ରେମ ବୋଇ ସବ ମରମ ନ ଜାନେ ।
ଉମଡ଼େ ଅତ ଅନୁରାଗ ବ୍ରହ୍ମକୂଁ ସବ ସୁତ ମାନେଁ ।।
ବରଷ ମାଁହ କଛୁ ଦନ ବଚେ, ସମୁଝେ ଶ୍ରୀ ବଳରାମ ତବ ।
କୃଷ୍ଣ ! କହା ମାୟା ରଚୀ, ଶ୍ୟାମ ବତାୟୋ ବୃତ୍ତ ସବ ।।

କସ୍ତୁରୀ ଓ ପ୍ରେମର ସୁଗନ୍ଧ ଯେତେ ଲୁଚାଇଲେ ମଧ୍ୟ ତାହା କେବେହେଲେ ଲୁଚି ରହେ ନାହିଁ । ପ୍ରେମକୁ ଯେତେ ଲୁଚାଇଲେ ବି ତାହା ସେତିକି ବଢ଼େ । ଜୀବ ପୂର୍ଣ୍ଣ ପ୍ରେମାସ୍ପଦ ଇଚ୍ଛା କରେ ; କିନ୍ତୁ ସଂସାରରେ ତାକୁ ଅଧେରୁ ଅଧିକ ମିଳେ ନାହିଁ । ଜୀବ ସର୍ବଦା ନିତ୍ୟ ପ୍ରେମ ଆଶା କରେ, ମାତ୍ର ସେ ପାଏ ଅନିତ୍ୟ ପ୍ରେମ, ଯାହା ନଶ୍ୱର ଓ କ୍ଷଣସ୍ଥାୟୀ । ପ୍ରାଣୀ ନିଃସ୍ୱାର୍ଥ ପ୍ରେମ ପାଇଁ ଛଟପଟ ହୁଏ ; କିନ୍ତୁ ସଂସାରରେ ସର୍ବନ୍ନ ସ୍ୱାର୍ଥର ହିଁ ସାମ୍ରାଜ୍ୟ । ସ୍ୱାର୍ଥରହିତ, କପଟତାଶୂନ୍ୟ ପ୍ରେମ ସଂସାରରେ ଦୁର୍ଲଭ । କେଣୁ ସଂସାର ସମ୍ବନ୍ଧୀୟ ପ୍ରେମକୁ ପୂର୍ଣ୍ଣ ପ୍ରେମ କହିବା ସମ୍ଭବ ନୁହେଁ । ଜ୍ଞାନତଃ ହେଉ ବା ଅଜ୍ଞାନତାବଶତଃ ହେଉ କୌଣସିମତେ ଜୀବ ଯଦି ଭଗବାନଙ୍କ କୋଳକୁ ଯାଇପାରେ ଓ ଭଗବାନଙ୍କ ଆଲିଙ୍ଗନ କରିବାର ସୁଯୋଗ ପାଏ ତେବେ ସେ କୃତକୃତ୍ୟ ହୋଇଯାଏ । ବ୍ରହ୍ମ ସଂସ୍ପର୍ଶରେ ନ ଆସିବାଯାଏ ଜୀବର ତୃଷ୍ଣା ଶାନ୍ତ ହୁଏ ନାହିଁ । ବ୍ରହ୍ମ ସଂସ୍ପର୍ଶରେ କି ପ୍ରକାର ସୁଖ ମିଳେ , ତାହା ପ୍ରକାଶ କରିବା ସମ୍ଭବ ନୁହେଁ । ଏହା ପୁରାପୁରି ଅନୁଭବଗମ୍ୟ ବିଷୟ ।

ମହର୍ଷି ସୂତ କହିଲେ—"ମୁନିଗଣ ! ବର୍ଷେ ପର୍ଯ୍ୟନ୍ତ ଭଗବାନ୍ ବ୍ରଜପୁରରେ ବାଳକ ଓ ବାଛୁରୀ ରୂପ ଧରି ବିହାର କଲେ । ମା' ମାନେ ପ୍ରତି ମୁହୂର୍ତ୍ତରେ ଅନୁଭବ କରୁଥିଲେ, କିପରି ଆମର ପୁଅମାନଙ୍କ ପ୍ରତି ଥିବା ସ୍ନେହ ଅନୁରାଗ ଧୀରେ ଧୀରେ ଅଧିକରୁ ଅଧିକ ହେଉଛି ? କିନ୍ତୁ ସ୍ୱପ୍ନରେ ସୁଦ୍ଧା ସେମାନେ ଭାବିପାରୁ ନ ଥିଲେ ଯେ ସେମାନେ ତାଙ୍କର ପୁତ୍ର ନୁହନ୍ତି ବୋଲି । ଏହି ସମୟରେ ଏକ ବିଚିତ୍ର ଘଟଣା ଘଟିଲା । ଜ୍ୟୋତିର୍ବିଦ୍‌ମାନେ ଘୋଷଣା କଲେ—"ଆଗାମୀ ପାଞ୍ଚବର୍ଷ ମଧ୍ୟରେ ବିବାହ ଲଗ୍ନ ନାହିଁ । ଯାହାର ପୁତ୍ର କନ୍ୟାଙ୍କର ବିବାହ କରିବାର ଅଛି ତାହା ଏବର୍ଷ କରିନେବାକୁ ହେବ । ଘରକୁ ବୋହୂ କିପରି ଶୀଘ୍ର ଆସିବ, ଏହିକଥା ମା' ମାନେ ସର୍ବଦା ଭାବୁଥାନ୍ତି । ସେମାନେ ଭାବିଲେ—ପାଞ୍ଚବର୍ଷ କାଳ କିଏ ଅପେକ୍ଷା କରିବ । ବଞ୍ଚିବା ମରିବା ତା'ର

ଠିକଣା ନାହିଁ । ଏବେ ପିଲାମାନଙ୍କର ବୟସ ଛ'ରୁ ଦଶବର୍ଷ ମଧ୍ୟରେ ହୋଇଥିଲେ ମଧ୍ୟ କିଛି ଯାଏଆସେ ନାହିଁ । ବିବାହ ହୋଇଯାଉ । ପୁନର୍ବିବାହ ତିନି ବର୍ଷ ବା ପାଞ୍ଚବର୍ଷ ପରେ ହେବ । ବର୍ତ୍ତମାନ ବୋହୂର ମୁହଁ ତ ଦେଖିହେବ । ଏହିପରି ବିଗୁର କରି ଗୋପାଳମାନେ ନିଜ ପୁଅ ଝିଅଙ୍କର ବିବାହ କରିଦେଲେ । ସମଗ୍ର ବ୍ରଜରେ ପାଞ୍ଚ ବର୍ଷରୁ ଉପର କୌଣସି ପୁଅ ଝିଅ କୁମାର ବା କୁମାରୀ ହୋଇ ରହିଲେ ନାହିଁ । ସବୁ କନ୍ୟାଙ୍କୁ ଶ୍ୟାମସୁନ୍ଦର ଗୋପାଳ ବାଳକ ରୂପରେ ବିବାହ କଲେ । ବ୍ରଜରେ ଯେତେ ନବବିବାହିତା ଥିଲେ ସମସ୍ତେ ନନ୍ଦନନ୍ଦନଙ୍କୁ ବିବାହ କରିଥିଲେ; କିନ୍ତୁ ସମସ୍ତ କନ୍ୟା ପନ୍ଦର ବର୍ଷୀୟ କିଶୋରଙ୍କୁ ବିବାହ କରିଛନ୍ତି ବୋଲି ଅନୁଭବ କରିଥିଲେ । କାରଣ ଶ୍ୟାମସୁନ୍ଦର କୌଣସି ଏକ ଅବସ୍ଥାରେ ଆବଦ୍ଧ ନୁହନ୍ତି । ବାତ୍ସଲ୍ୟ ଭାବର ଉପାସକଙ୍କ ପାଖରେ ସେ ସର୍ବଦା ପାଞ୍ଚବର୍ଷର ବାଳକରୂପେ ରହନ୍ତି ଏବଂ ମାଧୁର୍ଯ୍ୟ ଭାବର ଉପାସକମାନଙ୍କ ପାଖରେ ସର୍ବଦା କିଶୋରାବସ୍ଥାପନ୍ନ ହୋଇ ଦର୍ଶନ ଦିଅନ୍ତି । ବ୍ରଜବାସିନୀ କନ୍ୟାଗଣ ନିଜ ନିଜର ପତି ରୂପରେ ପରାତ୍ପର ପ୍ରଭୁଙ୍କ ସାକ୍ଷାତ୍ ଲାଭ କରିଥିଲେ । ସମସ୍ତେ କିଶୋରାବସ୍ଥାପନ୍ନ ପତିଙ୍କୁ ଦେଖି ଆନନ୍ଦିତ ହୋଇଥିଲେ ଏବଂ ସେହି ଅବସ୍ଥାରେ ଉପନୀତ ହୋଇଛନ୍ତି ବୋଲି ଅନୁଭବ କରିଥିଲେ ।

ନନ୍ଦଙ୍କ ମନ୍ଦିରରେ ହିଁ ପ୍ରେମର ପ୍ରବାହ ବହୁଥିଲା । ବର୍ତ୍ତମାନ ତାହା ପ୍ରତି ଘରେ ଘରେ ପ୍ରବାହିତ ହେବାକୁ ଲାଗିଲା । ସଖୀମାନେ କୃଷ୍ଣ ଦର୍ଶନ ପାଇଁ ପୂର୍ବରୁ ଯେପରି ବ୍ୟସ୍ତ ହେଉ ନ ଥିଲେ ଏବେ ବାଳକମାନଙ୍କୁ ଦେଖି ଆତ୍ମବିସ୍ମୃତ ହୋଇଗଲେ । ଅନବରତ ଗ୍ୱହିଁ ରହିଲେ ମଧ୍ୟ ସେମାନଙ୍କର ତୃପ୍ତି ଆସୁ ନ ଥିଲା । ସେମାନେ ସବୁବେଳେ ସେହି ମୁହଁକୁ ଗ୍ୱହିଁ ରହିବା ପାଇଁ ଇଚ୍ଛା କରୁଥିଲେ । ବର୍ଷେ କାଳ ବ୍ରଜପୁରର ଘରେ ଘରେ ପ୍ରେମର ଅବାରିତ ପ୍ରବାହ ନିରନ୍ତର ଅବ୍ୟାହତ ଗତିରେ ପ୍ରବାହିତ ହେବାକୁ ଲାଗିଲା ।

ବର୍ଷେ ପୂରିବାକୁ ପାଞ୍ଚ ଛଅ ଦିନ ବାକି ଥାଏ । ଦିନେ ପୂର୍ବ ପରି ବଳଦେବ ମଧ୍ୟ ବଣକୁ ବାଛୁରି ଚରାଇବାକୁ ଯାଇଥିଲେ । ଅଘାସୁର ଯେଉଁଦିନ ମୃତ୍ୟୁବରଣ କରିଥିଲା ଓ ବଣଭୋଜି ହୋଇଥିଲା ସେଦିନ ବଳରାମ ବଣକୁ ଯାଇ ନ ଥିଲେ ; ତେଣୁ ସେ ଘଟିଯାଇଥିବା ଘଟଣା ବିଷୟରେ କିଛି ଜାଣି ନ ଥିଲେ । ବ୍ରଜପୁରରେ କିମିତି ବର୍ଷେ ହେଲା ପ୍ରେମର ଧାରା ପ୍ରବାହିତ ହେଉଛି ତାହା ବଳରାମ ଲକ୍ଷ୍ୟ କରିଥିଲେ । ସମସ୍ତେ ମନ୍ତ୍ରମୁଗ୍ଧ ହେଲାପରି ନିଜର ପିଲାମାନଙ୍କୁ ଅଧିକରୁ ଅଧିକ ସ୍ନେହ କରୁଥିଲେ ଏବଂ ସ୍ନେହ, ପ୍ରେମ କମ୍ ହେବା ପରିବର୍ତ୍ତେ ପ୍ରତିକ୍ଷଣ ବଢ଼ୁଥିଲା । ବଳଦେବ ଈଶ୍ୱର ହୋଇଥିଲେ ମଧ୍ୟ ଏହି ରହସ୍ୟ ବୁଝିପାରି ନ ଥିଲେ ; କିନ୍ତୁ ଏସବୁ ଆଶ୍ଚର୍ଯ୍ୟଜନକ ଅବସ୍ଥା ଅନୁଭବ କରି ସେ ଆଉ ସ୍ଥିର ହୋଇ ରହିପାରିଲେ ନାହିଁ । ସେ ଦିବ୍ୟଦୃଷ୍ଟିରେ ଯେତେବେଳେ ଅବସ୍ଥା ଲକ୍ଷ୍ୟ କଲେ ସେତେବେଳେ ସେ ବିସ୍ମିତ ହୋଇଗଲେ । ସେ ଦେଖିଲେ ବାଳକ ଶ୍ରୀକୃଷ୍ଣ ହିଁ ବିହାର

କରୁଛନ୍ତି । ହଁ, ଏଥର ପୂର୍ବବର୍ଷ ଆଉ ଏକ ଘଟଣା ଘଟିଥିଲା । ବୟସ୍କ ଗୋପାଳମାନେ ଗାଈ ନେଇ ଗୋବର୍ଦ୍ଧନ ପାହାଡ଼ରେ ଚରାଉଥିଲେ ଏବଂ ଶ୍ରୀକୃଷ୍ଣଙ୍କ ସହିତ ବଳରାମ ପାହାଡ଼ର ପାଦଦେଶରେ ବାଛୁରୀ ଚରାଉଥିଲେ । ଏହି ବାଛୁରୀଗୁଡ଼ିକ ଦେଢ଼ବର୍ଷ ଓ ଦୁଇବର୍ଷର ହୋଇସାରିଥିଲେ । ଗାଈଗୁଡ଼ିକ ଏ ମଧ୍ୟରେ ଆଉ ଗୋଟିଏ ଗୋଟିଏ ଛୁଆ ଜନ୍ମ କରିଥିଲେ । ନୂଆ ଛୁଆ ଜନ୍ମ ହେଲେ ବଡ଼ ଛୁଆ ପ୍ରତି ଗାଈର ସ୍ନେହ କମିଯାଏ । ସବୁ ସ୍ନେହ ଅଜାଡ଼ି ହୋଇଯାଏ ଶ୍ରେଷ୍ଠ ଛୁଆ ଉପରେ ; କିନ୍ତୁ ବଡ଼ ବାଛୁରୀଗୁଡ଼ିକ ଥିଲେ ସାକ୍ଷାତ୍ ବ୍ରହ୍ମ ; ତେଣୁ ଗାଈଙ୍କର ଶ୍ରେଷ୍ଠ ବାଛୁରୀ ଅପେକ୍ଷା ବଡ଼ ବାଛୁରୀ ପ୍ରତି ଅଧିକ ଅନୁରାଗ ଥିଲା । ପାହାଡ଼ ଉପରେ ଚରୁଥିବା ଗାଈମାନେ ପାଦଦେଶରେ ଚରୁଥିବା ବଡ଼ ବାଛୁରୀଙ୍କୁ ଦେଖି ରହିପାରିଲେ ନାହିଁ । ସ୍ନେହ ଓ ପ୍ରେମରେ ଅନ୍ଧ ହୋଇ ଗାଈଗୁଡ଼ିକ ହୁଙ୍କାର କରି ପାହାଡ଼ ତଳକୁ ଦୌଡ଼ିଲେ । ଗୋପାଳମାନେ ଶତ ଚେଷ୍ଟା କରି ମଧ୍ୟ ଗାଈଙ୍କୁ ଅଟକେଇ ରଖିପାରିଲେ ନାହିଁ । ହୃଦୟରେ ପ୍ରେମର ତୀବ୍ର ପ୍ରବାହ ପ୍ରବାହିତ ହେଲେ ତାକୁ କିଏ ଅବରୋଧ କରିପାରିବ । ଏହି ପ୍ରେମ ସମସ୍ତ ବନ୍ଧନକୁ ଛିନ୍ନଭିନ୍ନ କରିଦିଏ । ଗୋପାଳମାନେ ବାଡ଼ି ଧରି ଗାଈଙ୍କ ଆଗରେ ଠିଆ ହୋଇଗଲେ ; କିନ୍ତୁ ଗାଈଗୁଡ଼ିକ ଦୁର୍ଗମ ରାସ୍ତାକୁ ଖାତିର ନ କରି ଡିଆଁମାରି ନିଜ ବାଛୁରୀ ପାଖରେ ଆସି ପହଞ୍ଚିଲେ ଓ ଦୁଧ ପିଆଇଲେ । ନୂଆ ଶ୍ରେଷ୍ଠ ବାଛୁରୀକୁ ଛାଡ଼ି ଗାଈଗୁଡ଼ିକ ବଡ଼ ବାଛୁରୀକୁ ଦୁଧ ପିଆଇବା ଓ ସ୍ନେହରେ ସେମାନଙ୍କ ଦେହକୁ ଚାଟିବା ଏକ ଆଶ୍ଚର୍ଯ୍ୟର ବିଷୟ । ଗାଈଗୁଡ଼ିକ ବାଛୁରୀଙ୍କୁ ଚାଟିବାର ଭାବ ଲକ୍ଷ୍ୟ କରି ବଳରାମ ବିସ୍ମିତ ହୋଇପଡ଼ିଲେ ।

ବୟସ୍କ ଗୋପାଳମାନେ ଗୋବର୍ଦ୍ଧନ ପର୍ବତର ଉପର ଭାଗରେ ଥିଲେ । ଗାଈଗୁଡ଼ିକ ଏପରି ଦ୍ରୁତବେଗରେ ଡିଆଁମାରି ତଳକୁ ଚାଲିଆସିଲେ ଯେ ସେମାନେ ଭଲକରି ଗାଈଙ୍କୁ ଦେଖିପାରିଲେ ନାହିଁ । ସେମାନେ ନିଜର ଅସାମର୍ଥ୍ୟ କଥା ଭାବି ମନେ ମନେ ଲଜ୍ଜିତ ହେଲେ । ଚେଷ୍ଟା କରି ମଧ୍ୟ ଗାଈଙ୍କୁ ରୋକିପାରି ନ ଥିବାରୁ ସେମାନଙ୍କ ମନରେ କ୍ରୋଧ ଆସୁଥିଲା ଏବଂ ନିଜ ନିଜର ପିଲାଙ୍କ ଉପରେ ମଧ୍ୟ ସେମାନେ ରାଗିଯାଉଥିଲେ, କାରଣ, ପିଲାମାନେ ବାଛୁରୀଙ୍କୁ ଗାଈଙ୍କ ପାଖକୁ ନେଇଆସିଥିଲେ । ଦୂରରେ ଚରାଇଥିଲେ ଏପରି ଅବସ୍ଥା ଘଟି ନ ଥାନ୍ତା । ଗାଈଗୁଡ଼ିକ ପୁନର ସମସ୍ତ ଦୁଧ ବାଛୁରୀଙ୍କୁ ପିଆଇ ଦେଇଥିବେ । ଏହିପରି ଭାବି ଲଜ୍ଜିତ ଓ କ୍ରୋଧାନ୍ୱିତ ହୋଇ ଗୋପାଳମାନେ ବହୁ କଷ୍ଟରେ ଦୁର୍ଗମ ପଥ ଅତିକ୍ରମ କରି ଗାଈଙ୍କ ପାଖରେ ଆସି ପହଞ୍ଚିଲେ । ଗୋପାଳ ବାଳକ ରୂପଧାରୀ ଶ୍ରୀକୃଷ୍ଣ ଏହିସବୁ ଲୀଳା ଦେଖି ହସୁଥିଲେ ; କିନ୍ତୁ ଗୋପାଳମାନେ ଆସି ଗାଈ ଓ ବାଛୁରୀଙ୍କୁ ଦେଖିବାମାତ୍ରେ ସମସ୍ତ କ୍ରୋଧ ଓ ଲଜ୍ଜା ଦୂର ହୋଇଗଲା । ହୃଦୟ ଦ୍ରବୀଭୂତ ହୋଇ ପ୍ରବାହିତ ହେବାକୁ ଲାଗିଲା । ଅନ୍ତଃକରଣରେ ପ୍ରେମର ଲହରୀ ଉଠିଲା । ପ୍ରେମ ଯେଉଁଠି ଥାଏ ସେଠାରେ କ୍ରୋଧର ସ୍ଥାନ ନାହିଁ । କ୍ରୋଧ ଜାତ ହୁଏ କାମରୁ ; ତେଣୁ ଗୋପାଳମାନେ

ନିଜ ପିଲାଙ୍କୁ ଦେଖି ସବୁ କିଛି ଭୁଲିଗଲେ । ପିଲାମାନଙ୍କୁ ଗାଢ଼ ଆଲିଙ୍ଗନ କରି ସେମାନଙ୍କ ମୁଖରେ ଚୁମ୍ବନ ଦେଲେ । ବାଳକମାନଙ୍କୁ ଆଲିଙ୍ଗନ ପାଶରେ ଆବଦ୍ଧ କରି ବୟସ୍କ ଗୋପାଳମାନେ ବ୍ରହ୍ମାନନ୍ଦ ସୁଖ ଅନୁଭବ କଲେ । ବଡ଼ କଷ୍ଟରେ ବାଳକମାନଙ୍କୁ ଆଲିଙ୍ଗନରୁ ମୁକ୍ତ କରି ସେମାନଙ୍କୁ ଗୃହିଁ ଗୃହିଁ ଓ ସେମାନଙ୍କ ରୂପକୁ ସ୍ମରଣ କରି ଗାଈଙ୍କୁ ନେଇ ଫେରିଲେ ।

ଏହି ଘଟଣା ବଳରାମଙ୍କ ହୃଦୟରେ ଗଭୀର ପ୍ରଭାବ ପକାଇଥିଲା । ଗୋପାଳମାନେ ଚାଲିଯିବା ପରେ ଆଉ ଦୁଇଜଣ ମାତ୍ର ରହିଲେ । ସେ ହେଲେ ବଳରାମ ଓ ବାଳକ ତଥା ବାଛୁରି ରୂପଧାରୀ ଶ୍ରୀକୃଷ୍ଣ । ବଳଦେବଙ୍କର ବାତ୍ସଲ୍ୟ ଭାବ ଦୂର ହୋଇଗଲା ଏବଂ ଦାସ୍ୟ ଭାବ ତାଙ୍କ ହୃଦୟରେ ସଞ୍ଚାରିତ ହେଲା । ସେ ମଧ୍ୟ ମାୟା ବଳରେ ଗୋପବାଳକ ହୋଇଥିବା ପରାତ୍ପର ପ୍ରଭୁଙ୍କୁ ନିଜର ସ୍ୱାମୀ ବୋଲି ଅନୁଭବ କଲେ । ସେ ଗାଈ ଓ ଗୋପାଳ ବାଳକମାନଙ୍କ ପ୍ରେମାଧିକ୍ୟର କାରଣକୁ କୌଣସି ପ୍ରକାର ବୁଝି ନ ଥିଲେ । ସେ ଚକିତ ହୋଇ ଭାବିଲେ—ଏ କିପରି ଅଦ୍ଭୁତ କଥା ? ବ୍ରଜବାସୀଙ୍କର ନିଜ ପିଲା ପ୍ରତି ଦିନକୁ ଦିନ ସ୍ନେହ ଓ ପ୍ରେମ ବଢ଼ୁଛି କାହିଁକି ? ଗାଈଗୁଡ଼ିକ ମଧ୍ୟ ବ୍ୟବହାରରେ ପ୍ରେମର ପରାକାଷ୍ଠା ପ୍ରଦର୍ଶନ କରୁଛନ୍ତି । ଏ କି ପ୍ରକାର ମାୟା ବା ଇନ୍ଦ୍ରଜାଲ ? ବ୍ରଜପୁରରେ ଏହି ମାୟା କିପରି ବିସ୍ତାର ଲାଭ କଲା ? ଏହା ମାନବୀ ମାୟା ନା ଦୈବୀ ନା ରାକ୍ଷସୀ ମାୟା । ଆଉ ସବୁ କଥା ଦୂରରେ ଥାଉ, ମୋର ବି ଗୋପାଳବାଳକ ଓ ବାଛୁରିଗୁଡ଼ିକ ପ୍ରତି ଦିନକୁ ଦିନ ଦୁଇଗୁଣ ଚାରିଗୁଣ କରି ସ୍ନେହ ବଢ଼ୁଛି । ସମ୍ଭବତଃ କୌଣସି ଦୈବୀ ବା ରାକ୍ଷସୀ ମାୟା ବ୍ରଜବାସୀଙ୍କୁ ବଶୀଭୂତ କରି ନେଇଛି । ମୋ' ଆଗରେ ତ ଅନ୍ୟ କୌଣସି ମାୟା ରହିପାରେ ନାହିଁ ; ତେଣୁ ଏହା ଦୈବୀ, ରାକ୍ଷସୀ ବା ମାନୁଷୀ ମାୟା ନୁହେଁ ବୋଲି ମନେ ହେଉଛି । ଏହା ହେଉଛି ମୋର ସ୍ୱାମୀ ସଚ୍ଚିଦାନନ୍ଦନ ପରାତ୍ପର ପ୍ରଭୁ ସର୍ବାନ୍ତର୍ଯ୍ୟାମୀ ଶ୍ରୀହରିଙ୍କ ମାୟା । ମୋତେ ମଧ୍ୟ ସେ ମୋହିତ କରି ଦେଇଛନ୍ତି ।

ବଳଦେବ ଏହିପରି ଭାବ ଦିବ୍ୟ ଦୃଷ୍ଟିରେ ଦେଖିବାରୁ ସମସ୍ତ ବାଳକ ଓ ବାଛୁରି ବିଷ୍ଣୁ ରୂପରେ ପ୍ରତୀତ ହେଲେ । ଏହା ଦେଖି ବଳରାମ ବିସ୍ମିତ ହୋଇ ପଚାରିଲେ— "ଭଗବନ୍ ! ଏହି ବାଛୁରି ଓ ବାଳକମାନେ ଯଥାର୍ଥ ବାଳକ ଓ ବାଛୁରି ବୋଲି ମୋର ମନେ ହେଉ ନାହିଁ । ଏହା କୌଣସି ଦେବତା, ଋଷି ବା ଅସୁରର ଆବେଶ ମଧ୍ୟ ନୁହେଁ । ଏହି ଭିନ୍ନ ଭିନ୍ନ ନାମ ଓ ରୂପରେ ମୋତେ କେବଳ ଆପଣ ହିଁ ଦେଖାଯାଉଛନ୍ତି । ଏହାର କାରଣ ଯଦି ମୁଁ ଶୁଣିବା ପାଇଁ ଯୋଗ୍ୟ ତେବେ ଦୟା କରି ଏ ରହସ୍ୟ ମୋତେ ବୁଝାଇ ଦିଅନ୍ତୁ । ସ୍ପଷ୍ଟ ଭାବରେ କହନ୍ତୁ ଏପ୍ରକାର ନାନାଭାବ କେଉଁ କାରଣରୁ ଓ କେବେ ପ୍ରକାଶ ପାଇଲା ?"

ବଡ଼ଭାଇ ବଳଦେବଙ୍କ କଥା ଶୁଣି ଶ୍ରୀକୃଷ୍ଣ ଉଚ୍ଚସ୍ୱରରେ ହସି ଉଠିଲେ ଏବଂ ସେହିପରି ହସି ହସି କହିଲେ—"ଭାଇ ! ଦିନକର କଥା ସେଦିନ ତୁମେ ବଣକୁ ଆସି ନ ଥିଲ । ସେଦିନ ଅଘାସୁର ଏକ ବଡ଼ ଅଜଗର ସାପ ହୋଇ ଆମ ସମସ୍ତଙ୍କୁ ଗିଳିଦେଲା । ମୁଁ ତାର ଗଳା ଚପିଦେବାରୁ ସେ ମରଗଲା । ସେ ମୁକ୍ତ ହୋଇଗଲା । ତା'ପରେ ଆମେ ସମସ୍ତେ ଏକାଠି ବସି ଭୋଜନ କଲୁ । ଏହି ସମୟରେ ହଂସ ଉପରେ ବସି ଚତୁର୍ମୁଖ ବ୍ରହ୍ମା ଆସି ସେଠାରେ ପହଞ୍ଚିଲେ । ମୁଁ ତାଙ୍କ ଆଡ଼କୁ ଚାହିଁଲି ନାହିଁ । ମୋର ବ୍ୟବହାରରେ ସନ୍ତୁଷ୍ଟ ନ ହୋଇ ସେ ବାଛୁରୀଗୁଡ଼ିକ ନେଇଗଲେ । ମୁଁ ବାଛୁରୀ ଖୋଜିବାକୁ ଯାଇଥିବାବେଳେ ସେ ପିଲାଗୁଡ଼ିକୁ ମଧ୍ୟ ନେଇଗଲେ । ମୁଁ ମନେ ମନେ ଭାବିଲି— ବ୍ରହ୍ମା ସମସ୍ତଙ୍କୁ ନେଇଯାଆନ୍ତୁ । ସେଥିରେ ଚିନ୍ତା କରିବାର କିଛି ନାହିଁ । ଆମର ଏଠାରେ କ'ଣ ଅଭାବ ଅଛି ଯେ ? ଏହା ଭାବି ମୁଁ ବାଳକ ଓ ବାଛୁରୀ ରୂପ ଧାରଣ କଲି । କ'ଣ କିଛି ଖରାପ କାମ କଲି କି ଭାଇ ?"

ମହର୍ଷି ସୂତ କହିଲେ—"ମୁନିଗଣ ! ଭଗବାନଙ୍କ ମୁଖରୁ ବ୍ରହ୍ମାଙ୍କ ମୋହ କଥା ଶୁଣି ସଙ୍କର୍ଷଣ ବହୁଧା ବିସ୍ମିତ ହେଲେ ଏବଂ ଭଗବାନଙ୍କ ମାୟାକୁ ପୁନଃ ପୁନଃ ପ୍ରଣାମ କଲେ । ସେ ମନେ ମନେ ଶ୍ରୀକୃଷ୍ଣଙ୍କୁ ପ୍ରଣାମ କଲେ ଏବଂ ପ୍ରତ୍ୟକ୍ଷ ଭାବେ ତାଙ୍କୁ ଗାଢ଼ ଆଲିଙ୍ଗନ ପାଶରେ ଆବଦ୍ଧ କଲେ ।"

ଶୌନକ ଉତ୍ସୁକ ହୋଇ ପଚାରିଲେ—"ମହାଶୟ ! ଏସବୁ ତ ହେଲା । କିନ୍ତୁ ବ୍ରହ୍ମାଙ୍କ ମୋହ ଦୂର ହେଲା କି ନାହିଁ ?"

ମହର୍ଷି ସୂତ କହିଲେ—"ମହାଭାଗ ! ହଁ ବ୍ରହ୍ମାଙ୍କ ମୋହ ଦୂର ହେଲା । ମୁଁ ସେ ପ୍ରସଙ୍ଗ ବର୍ଣ୍ଣନା କରୁଛି, ଆପଣମାନେ ମନଦେଇ ଶୁଣନ୍ତୁ ।"

## ଛପ୍‌ପୟ

ଭୈୟା ! ଚଢ଼ି ଅଜ ହଂସ ଚତୁର ମୁଖବାର ଆୟୋ ।
ଦେଖେୟା ମେରେ ଖେଲମାଲ ସାରେ ଘବରାୟୋ ॥
ଲୈକେ ବଛର ଗ୍ୱାଲ-ବାଲ ଚେତୁରତେ ସବଗେୟା ।
ଜାନି ତହୁଁ କଙ୍ଗାଲ ନ ମୈଁ ଫିର ପୀଛେ ଲଗେୟା ॥
ମେ ବଛର ବାଳକ ବନେୟା, ମେରେ ପ୍ରେମ ସ୍ୱରୂପ ହୈ ।
କରେଁ ପ୍ରେମ ମୋତେଁ ସକଲ, ଭବ ତୋ ଅନ୍ଧୋ କୂପ ହୈ ॥

●

# ଭଗବାନଙ୍କର ମହିମା

ଇତୀରେଶେଽତର୍କ୍ୟେ ନିଜମହିମନି ସ୍ୱପ୍ରମିତିକେ
ପରତ୍ରାଜାତୋଽତନ୍ନିରସନମୁଖବ୍ରହ୍ମକମିତୌ ।
ଅନୀଶେଽପି ଦ୍ରଷ୍ଟୁଂ କିମିଦମିତି ବା ମୁହ୍ୟତି ସତି
ଚଚ୍ଛାଦାଜୋ ଜ୍ଞାତ୍ୱା ସପଦି ପରମୋଽଜାଜବନିକାମ୍ ।।

(ଶ୍ରୀ ଭା ୧୦ ସ୍କ, ୧୩ ଅ, ୫୭ ଶ୍ଲୋକ)

### ଛପ୍ପୟ

ସମୁଝି ରହସ ଜନ କୃଷ୍ଣ ଚରନମହିଁ ପ୍ରୀତି ଦୃଢ଼ାଇ ।
ଇତ ଅଜ ଆୟେ ଲୌଟି ବୁଦ୍ଧି ତିନକୀ ଚକରାଇ ।।
ଜୈସେ ଜେ ତେସେ ସବ ଲଖେ ଗ୍ୱାଲ ବଛର ଘବରାୟେ ।
ଦୌର ଗୟେ ତହଁ ଲଖେ ଲୌଟି ପୁନି ବନମହଁ ଆୟେ ।।
ବଛରା ବାଲକ ବାଁସୁରୀ, କେତି କରଖି ସବ ରୂପ ହରି ।
କରଖେ ଇତ ଉତ ବକଳ ବନ, ତୁରତ ହଁସ ତେଁ ଅଜ ଉତରି ।।

ନିଜକୁ ବଡ଼ ମନେକରି କେହି କେବେ ଭଗବାନଙ୍କ ମହିମା ଅନୁଭବ କରିପାରିବ ନାହିଁ । କାରଣ ତାଙ୍କର ମହିମା ଏତେ ବେଶୀ ଓ ବଡ଼ ଯେ ତାଙ୍କ ଆଗରେ ଆଉ କେହି ବଡ଼ ହୋଇପାରିବ ନାହିଁ ; ତେଣୁ ଯେ କେହି ହେଉ ପଛକେ ତାକୁ ଭଗବାନଙ୍କ ମହିମାରେ ମିଶିଯିବାକୁ ପଡ଼ିବ ନୋହିଲେ ତାଙ୍କ ଚରଣ ତଳେ ଆତ୍ମସମର୍ପଣ କରିବାକୁ ପଡ଼ିବ । ଏହା ବ୍ୟତୀତ ତାଙ୍କୁ ପାଇବା ପାଇଁ ଅନ୍ୟ କୌଣସି ଉପାୟ ନାହିଁ । ଯେ ଆତ୍ମସମର୍ପଣ ନ କରି ଅହଙ୍କାର ବଶତଃ ନିଜକୁ ସିଦ୍ଧ, ବଳବାନ୍, ଈଶ୍ୱର ବା ସର୍ବଜ୍ଞ ମନେକରି ଭଗବାନଙ୍କ ମହିମାକୁ ନିଜର ବଳ ବା ପୁରୁଷାର୍ଥ ସହିତ ତୁଳନା କରିବସେ ଶେଷରେ ସେ ଅଧୋଗାମୀ ହୁଏ ଏବଂ ପ୍ରଭୁଙ୍କ ଚରଣରେ ଆଶ୍ରୟ ନିଏ । ଜୀବନ ସାମାନ୍ୟତମ ଅଧିକାର ପାଇଲେ ଅଭିମାନରେ ଫୁଲିଉଠେ ଏବଂ ଭଗବାନଙ୍କ ମହିମାକୁ ତୁଚ୍ଛାତିତୁଚ୍ଛ ମନେକରେ ; ତେଣୁ ସେହି ମହାମହିମଶାଳୀଙ୍କ ମହିମାକୁ ଚିନ୍ତା ନ କରି ତାଙ୍କର ସ୍ୱଷ୍ଟ

ଚରିତ ଓ ସୁମଧୁର ଲୀଳା ତଥା ଜଗମୋହନ ସ୍ୱରୂପକୁ ଚିନ୍ତାକଲେ ଜୀବ ସଂସାରବନ୍ଧନରୁ ମୁକ୍ତିଲାଭ କରେ ।

ମହର୍ଷି ସୂତ କହିଲେ—"ମୁନିଗଣ ! ଭଗବାନ୍ ବାଛୁରି ଓ ବାଳକ ରୂପ ଧରି ବିଚରଣ କରିବାର ବର୍ଷେ ପୂରିଗଲା; କିନ୍ତୁ ସହସ୍ର ଚତୁର୍ଯୁଗ ଯେଉଁ ବ୍ରହ୍ମାଙ୍କ ପକ୍ଷରେ ଏକ ଅହୋରାତ୍ର ହୁଏ ତାଙ୍କ ପକ୍ଷରେ ମାନବ ବର୍ଷଟି ଅଳ୍ପ ଟିକିଏ ସମୟ ରୂପେ ବିବେଚିତ । ବ୍ରହ୍ମା ବାଳକ ଓ ବାଛୁରିଙ୍କୁ ମୋହିତ କରି ନେଇଯିବା ପରେ ଦେଖିଲେ ଭଗବାନ ପୂର୍ବପରି ବାଳକ ଓ ବାଛୁରିଙ୍କ ସହିତ ଲୀଳା କରୁଛନ୍ତି । ବ୍ରହ୍ମା ବିସ୍ମିତ ହୋଇପଡ଼ିଲେ । ବାଳକ ଓ ବାଛୁରିଙ୍କୁ ମୋହିତ କରିନେଇ ବ୍ରହ୍ମଲୋକରେ ଶୁଆଇଦେଇ ଆସିବା ପରେ ପୁଣି ସେମାନେ ଏଠାକୁ କିପରି ଆସିଲେ ? ବ୍ରହ୍ମା ପୁଣି ଦେଖିବା ପାଇଁ ବ୍ରହ୍ମଲୋକକୁ ଗଲେ ଏବଂ ସେଠାରେ ଦେଖିଲେ ବାଳକ ଓ ବାଛୁରୀଗୁଡ଼ିକ ପୂର୍ବପରି ଶୋଇଛନ୍ତି । ବ୍ରହ୍ମା ଏହାଦେଖି ସନ୍ଦେହରେ ପଡ଼ିଗଲେ, ଏଥିରେ କିଏ ସତ୍ୟ ଓ କିଏ କୃତ୍ରିମ ? ତାଙ୍କ ବୁଦ୍ଧିରେ ସେ କିଛି ଜାଣିପାରିଲେ ନାହିଁ । ସେ ଭାବିଲେ—ବୃନ୍ଦାବନରେ ଯେତେ ବାଳକ ଓ ବାଛୁରୀ ଥିଲେ ସେମାନେ ସତ୍ୟ ଓ ପ୍ରତ୍ୟକ୍ଷ ଥିଲେ । ମୁଁ ସେମାନଙ୍କୁ ନେଇ ମୋହିତ କରି ରଖି ଆସିଲି । ସେମାନେ ଏପର୍ଯ୍ୟନ୍ତ ପୂର୍ବପରି ଶୋଇଛନ୍ତି ; କିନ୍ତୁ ଏଠାରେ ସେମାନେ ପୁଣି କିପରି ଉପସ୍ଥିତ ହେଲେ ? କୃତ୍ରିମ ହୋଇଥିବାର ବି କିଛି ସୂଚନା ମିଳୁନାହିଁ । ଏତେ ବାଳକ ଓ ବାଛୁରୀ ପୂର୍ବବତ୍ କେଉଁଠୁ ଆସିଲେ ?"

ଚତୁର୍ମୁଖ ବ୍ରହ୍ମା ବହୁ ସମୟ ପର୍ଯ୍ୟନ୍ତ ଏହା ଚିନ୍ତା କରିବାକୁ ଲାଗିଲେ; କିନ୍ତୁ ସେ କୌଣସି ସିଦ୍ଧାନ୍ତରେ ଉପନୀତ ହୋଇ ପାରିଲେ ନାହିଁ । ଏପରିକି ଦୁଇଟି ଅବସ୍ଥା କେଉଁଟି ସତ୍ୟ ଓ କେଉଁଟି ମିଥ୍ୟା ତାହା ମଧ୍ୟ ଜାଣିପାରିଲେ ନାହିଁ । ବ୍ରହ୍ମା ବିଶ୍ୱମୋହନକାରୀ ମୋହମୁକ୍ତ ମଦନମୋହନଙ୍କୁ ମୋହିତ କରିବା ପାଇଁ ଆସିଥିଲେ ; କିନ୍ତୁ ସ୍ୱୟଂ ତାଙ୍କରି ମାୟାରେ ମୋହିତ ହୋଇ ପାଗଳ ପାଲଟି ଗଲେ । ଆପଣ କୁହନ୍ତୁ, ଏକ କୁମ୍ଭ ଭିତରେ ସମୁଦ୍ରର ଜଳ ରହିପାରିବ କି ? ଛେଳି ପିଠିରେ ସୁମେରୁ ପର୍ବତ ଲଦା ହେବ କି ? ଏକ ଡବା ମଧ୍ୟରେ ସମ୍ପୂର୍ଣ୍ଣ ଆକାଶକୁ ଧରି ରଖି ହେବ କି ? ଦିବାଲୋକରେ ଜୁଳୁଜୁଳିଆ ପୋକର ଯେପରି କୌଣସି ମହତ୍ତ୍ୱ ନ ଥାଏ, ସେହିପରି ବ୍ରହ୍ମାଙ୍କ ମାୟା ଅନନ୍ତ କୋଟି ବ୍ରହ୍ମାଣ୍ଡର ସ୍ୱାମୀ ଶ୍ରୀକୃଷ୍ଣଙ୍କଠାରେ କି ମହତ୍ତ୍ୱ ରକ୍ଷା କରିପାରିବ ? ଗ୍ଲେଟ ଧ୍ୱନି ଯେପରି ବଡ଼ ଧ୍ୱନି ଭିତରେ ମିଳେଇଯାଏ ସେହିପରି ମାୟାଧର ଶ୍ରୀକୃଷ୍ଣଙ୍କଠାରେ ବ୍ରହ୍ମାଙ୍କ ମାୟାର କିଛି ହେଲେ ପ୍ରଭାବ ରହିଲା ନାହିଁ । ବ୍ରହ୍ମାଙ୍କ ମାୟା ଶ୍ରୀକୃଷ୍ଣଙ୍କର ଲୀଳାକୁ କିଛି ହେଲେ ପ୍ରଭାବିତ କରିପାରିଲା ନାହିଁ ।

ବ୍ରହ୍ମା ଚିନ୍ତା କରିବାକୁ ଲାଗିଲେ—"ଯେଉଁ ଗୋପାଳବାଳକ ଓ ବାଛୁରିଙ୍କୁ ଶୁଆଇ ଦେଇ ଆସିଲି ସେମାନେ ସତ୍ୟ ନା ଯାହା ଆଖି ଆଗରେ ଦେଖୁଛି ତାହା ସତ୍ୟ !

ହଠାତ୍ ସେ ଦେଖିଲେ ବାଛୁରି ନାହାନ୍ତି କି ବାଳକମାନେ ନାହାନ୍ତି । ବାଳକ ଓ ବାଛୁରି ମିଶି ଯେତେଥିଲେ ସେତେ ସଂଖ୍ୟକ ଶ୍ରୀକୃଷ୍ଣ ଦେଖାଗଲେ ଅର୍ଥାତ୍ ସବୁ ବାଳକ ଓ ବାଛୁରି ଶ୍ରୀକୃଷ୍ଣ ରୂପରେ ପରିଣତ ହୋଇଗଲେ । ସମସ୍ତଙ୍କ ବର୍ଣ୍ଣ ନବୀନ ଜଳଧର ସଦୃଶ ଶ୍ୟାମବର୍ଣ୍ଣ । ସମସ୍ତେ ସ୍ୱର୍ଣ୍ଣିମ ପୀତାମ୍ବର ପରିଧାନ କରିଛନ୍ତି । ସମସ୍ତେ ଶଙ୍ଖ, ଚକ୍ର, ଗଦା, ପଦ୍ମଧାରୀ ଚତୁର୍ଭୁଜ । ସମସ୍ତଙ୍କ ମସ୍ତକ ମୁକୁଟ ମଣ୍ଡିତ, କର୍ଣ୍ଣ କମନୀୟ ଦୋଳାୟମାନ କୁଣ୍ଡଳ ଭୂଷିତ, ଭ୍ରମର ମଣ୍ଡିତ ବନମାଳା ଭୂଷିତ ଓ ସମସ୍ତ ବକ୍ଷ ଶ୍ରୀବତ୍ସ ଚିହ୍ନରେ ଚିହ୍ନିତ । ସମସ୍ତଙ୍କର ଆଜାନୁଲମ୍ବିତ ଭୁଜ ମଣିବଳୟ ଓ ବାହୁବନ୍ଧରେ ସୁଶୋଭିତ । ସମସ୍ତଙ୍କ ପାଦରେ ଶବ୍ଦାୟମାନ ନୂପୁର, ଅଙ୍ଗୁଳିଗୁଡ଼ିକ ମୁଦ୍ରିକା ମଣ୍ଡିତ ଏବଂ ସମସ୍ତେ ତୁଳସୀ ମାଳାରେ ଭୂଷିତ । ସମସ୍ତଙ୍କର ଶ୍ୱେତ, ଶ୍ୟାମ ଓ ରକ୍ତରେଖା ରଞ୍ଜିତ ନୟନ ତ୍ରିଦେବଙ୍କ ପ୍ରତୀକ ରୂପେ ଶୋଭାପାଉଥିଲା । ରକ୍ତବର୍ଣ୍ଣ ରଜୋଗୁଣର ଦ୍ୟୋତକ ଚତୁରାନନଙ୍କ ପ୍ରତୀକ, କୃଷ୍ଣବର୍ଣ୍ଣର ପଲକ ସଂହାରକାରୀ ରୁଦ୍ରଙ୍କ ପ୍ରତୀକ ଓ ସ୍ୱଚ୍ଛ ଶୁଭ୍ର ଭାଗ ସତ୍ତ୍ୱଗୁଣଶାଳୀ ଭଗବାନ ବିଷ୍ଣୁଙ୍କ ପ୍ରତୀକ ରୂପେ ପ୍ରତୀତ ହେଉଥିଲା । ଶ୍ରୀକୃଷ୍ଣଙ୍କର ତ୍ରିଗୁଣ ପ୍ରଖ୍ୟାପକ ନୟନ ସୃଷ୍ଟି, ସ୍ଥିତି ଓ ପାଳନ କାର୍ଯ୍ୟ ସମ୍ପାଦନ କଲାପରି ମନେହେଲା ।

ବ୍ରହ୍ମା ସମସ୍ତଙ୍କର ବିଷ୍ଣୁ ରୂପ ଦେଖି ପରମ ବିସ୍ମିତ ହେଲେ । ବ୍ରହ୍ମା ଦେଖିଲେ, ବ୍ରହ୍ମାଙ୍କଠାରୁ ସ୍ତମ୍ଭ ପର୍ଯ୍ୟନ୍ତ ସଚରାଚର ଜୀବ ସାକ୍ଷାତ୍ ସଜୀବ ମୂର୍ତ୍ତି ଧାରଣ କରି ନୃତ୍ୟ, ଗୀତ ସହିତ ବିବିଧ ପୂଜା ସାମଗ୍ରୀଦ୍ୱାରା ତାଙ୍କୁ ପୂଜା କରିବାକୁ ଲାଗିଲେ । ଅଣିମାଦି ଅଷ୍ଟୈଶ୍ୱର୍ଯ୍ୟ, ଅଶେଷ ସିଦ୍ଧି, ଅନାଦି ବିଭୂତି ତଥା ମହତତ୍ତ୍ୱ, ଅହଂତତ୍ତ୍ୱ, ମନସ୍ତତ୍ତ୍ୱ, ପଞ୍ଚଭୂତ, ପଞ୍ଚ ଜ୍ଞାନେନ୍ଦ୍ରିୟ, ପଞ୍ଚ କର୍ମେନ୍ଦ୍ରିୟ, ପଞ୍ଚ ତନ୍ମାତ୍ରା, ଚତୁର୍ବିଂଶତତ୍ତ୍ୱ ଶ୍ରୀକୃଷ୍ଣଙ୍କୁ ଘେରି ରହିଛି । ମହାମହିମ ମାଧବଙ୍କ ମହିମାଦ୍ୱାରା ଯାହାର ମହିମା ନଷ୍ଟ ହୋଇଯାଇଛି ସେହି କାଳ, କର୍ମ, ସ୍ୱଭାବ, ସଂସ୍କାର, କାମ ତଥା ଗୁଣ ଆଦି ମୂର୍ତ୍ତିମାନ୍ ହୋଇ ଶ୍ରୀକୃଷ୍ଣଙ୍କୁ ଉପାସନା କରୁଛନ୍ତି ।

ଲୋକପିତାମହ ବ୍ରହ୍ମା କିଂକର୍ତ୍ତବ୍ୟବିମୂଢ଼ ହୋଇ ଭଗବାନଙ୍କ ବିଭୂତି ଦେଖୁଥିଲେ । ସେ ଦେଖିଲେ ବିଷ୍ଣୁରୂପ ଧରିଥିବା ବାଳକ ଓ ବାଛୁରି ହେଉଛନ୍ତି ସତ୍ୟ, ଜ୍ଞାନ, ଅନନ୍ତ ଓ ଆନନ୍ଦସ୍ୱରୂପ । ଆଉ ମୁଁ ଯାହାଙ୍କୁ ମୋହିତ କରି ରଖି ଆସିଛି ସେମାନେ ମୋର ସଜାତୀୟ ଓ ସମ୍ବନ୍ଧୀୟ ବୋଲି ବ୍ରହ୍ମା ସ୍ଥିର କଲେ । ଏମାନେ ବିଜାତୀୟ; ତେଣୁ ଏମାନଙ୍କ ସହିତ ମୋର କୌଣସି ସମ୍ପର୍କ ନାହିଁ । ଏମାନେ ଭେଦଭାବରହିତ ଓ ଏକ ରସ ସ୍ୱରୂପ ଯାହାର ମହିମା ଉପନିଷଦାଦି ଶାସ୍ତ୍ରରେ ବିଦ୍ୱାନ୍ମାନେ ଜାଣିବା ପାଇଁ ସମର୍ଥ ହୋଇନାହାନ୍ତି । ବ୍ରହ୍ମା ଏହିପରି ଭାବି ସମସ୍ତଙ୍କୁ ଅଦ୍ୱୈତ ବ୍ରହ୍ମ ରୂପେ ଅନୁଭବ କଲେ । ଭଗବାନଙ୍କର ଏପରି ଅସୀମ ମହିମା ଦେଖି ବ୍ରହ୍ମା ନିଜର ଅସ୍ତିତ୍ୱ ଭୁଲିଗଲେ । ବିଶେଷ କୁତୂହଳ ଓ

ବସ୍ତୁସ୍ୱୟଂତ୍ୱେତୁ ତାଙ୍କର ସମସ୍ତ ଇନ୍ଦ୍ରିୟ କ୍ଷୁବ୍ଧ ଓ ସ୍ତବ୍ଧ ହୋଇଗଲା । ଅଚ୍ୟୁତଙ୍କ ଅନୁପମ ଅପାର ଐଶ୍ୱର୍ଯ୍ୟର ଅନ୍ତରେ ଅଭିଭୂତ ହୋଇ ବ୍ରହ୍ମା ଅବାକ୍ ହୋଇପଡ଼ିଲେ । ତାଙ୍କର ଅଙ୍ଗ ପ୍ରତ୍ୟଙ୍ଗ ଜଡ଼ ପାଲଟିଗଲା । ସେ ଭାବିଲେ, ଭଗବାନଙ୍କ ମହିମା ହିଁ ବୃନ୍ଦାବନର ଅଧିଷ୍ଠାତ୍ରୀ ଦେବୀ । ସେହି ଦେବୀ ଆଗରେ ଚତୁର୍ମୁଖ ବ୍ରହ୍ମାଙ୍କୁ କାଠପିତୁଳା ପରି କିଏ ଜଣେ ରଖିଦେଇଛି । ବ୍ରହ୍ମା ମନେ ମନେ ତର୍କଣା—ଏ କ’ଣ ? ଏହା କିପରି ହେଲା ? କିନ୍ତୁ ବହୁତ ଭାବି ଚିନ୍ତି ମଧ୍ୟ ସେ କିଛି ସ୍ଥିର କରିପାରିଲେ ନାହିଁ । ସେ ଅଧୀର ହୋଇ ପଡ଼ିଲେ । ତାଙ୍କର ବିକଳତା ବହୁତ ବଢ଼ିଗଲା । ସେ ମୂଢ଼ବତ୍ ବନଭୂମିର ଚାରିଆଡ଼କୁ ବାରମ୍ବାର ଚାହିଁବାକୁ ଲାଗିଲେ ।

ଭଗବାନ ଯେତେବେଳେ ଦେଖିଲେ ବ୍ରହ୍ମା ମାନସିକ ସନ୍ତୁଳନ ରକ୍ଷା କରି ନ ପାରି ବହୁତ କଷ୍ଟ ପାଇଲେଣି ସେତେବେଳେ ସେ ନିଜର ମାୟାକୁ ଦୂରେଇ ନେଲେ । ଏହାପରେ ବ୍ରହ୍ମାଙ୍କର ବାହ୍ୟଜ୍ଞାନ ଉଦୟ ହେଲା । ଅସଂଖ୍ୟ ବାଳକ, ବାଛୁରି ଓ ଚତୁର୍ଭୁଜ ଶ୍ରୀକୃଷ୍ଣ ତାଙ୍କ ଆଗରୁ ଅଦୃଶ୍ୟ ହୋଇଗଲେ । ଭଗବାନଙ୍କୁ ସ୍ତୁତି କରିବାକୁ ଆସିଥିବା ଅସଂଖ୍ୟ ଦେବତା, ଯକ୍ଷ, ଗନ୍ଧର୍ବ ଓ ଉପଦେବ କେହି ରହିଲେ ନାହିଁ । ତାଙ୍କ ଆଗରେ ରହିଥିବା କେବଳ ବୃନ୍ଦାବନର ଅପୂର୍ବ ଶୋଭା । ନବପଲ୍ଲବିତ ବୃକ୍ଷରାଜି, ପୁଷ୍ପିତ ତରୁଲତା ଓ ଭକ୍ତିଭାବକୁ ଉତ୍ପନ୍ନ କରୁଥିବା ଭବ୍ୟ ଭୂମି । ବ୍ରହ୍ମା ସେହି ବୃନ୍ଦାବନ ଦେଖିଲେ ଯେଉଁଠି ଶ୍ରୀକୃଷ୍ଣଙ୍କ ସାନ୍ନିଧ୍ୟ ହେତୁ ରାଗ, ଦ୍ୱେଷ, ଲୋଭ, ମୋହ, ମଦ, ମାତ୍ସର୍ଯ୍ୟ, କାମ, କ୍ରୋଧ ଆଦି ଅଶୁଭ ବାସନା ପ୍ରାଣୀ ହୃଦୟରୁ ଅନ୍ତର୍ହିତ ହୋଇଯାଏ । ଯେଉଁଠି ବନ୍ୟପଶୁ ସିଂହ, ବ୍ୟାଘ୍ର, ମୃଗ, ସର୍ପ, ମୟୂର ଆଦି ନିଜର ସ୍ୱାଭାବିକ ବୈରଭାବ ପରିହାର କରି ଏକ ସଙ୍ଗରେ ସ୍ୱଚ୍ଛନ୍ଦରେ ବିହାର କରନ୍ତି ଓ ମିଳାମିଶି ପ୍ରେମପୂର୍ବକ ବାସ କରନ୍ତି । ସେହି ନିର୍ବୈର, ପ୍ରଶାନ୍ତ, ସୁଖଦ, ମନୋଜ୍ଞ, ହୃଦୟ ଓ ଇନ୍ଦ୍ରିୟ ସୁଖକର ବୃନ୍ଦାବନକୁ, ନିକଟବର୍ତ୍ତୀ ପୁଣ୍ୟଜଳା କାଳିନ୍ଦୀକୁ ଓ ଗିରିଗୋବର୍ଦ୍ଧନ ପର୍ବତକୁ ବ୍ରହ୍ମା ନିବିଷ୍ଟ ଚିତ୍ତରେ ଚାହିଁ ରହିଲେ ।

ମହର୍ଷି ସୂତ କହିଲେ—“ମୁନିଗଣ ! ବ୍ରହ୍ମାଙ୍କର ଆଖି ଖୋଲିଗଲା । ନିଜର ଭୁଲ୍ ସେ ବୁଝିପାରିଲେ । ସେ ଭାବିଲେ—ଏବେ ଯାଇ ଶ୍ରୀକୃଷ୍ଣଙ୍କ ପାଦ ତଳେ କ୍ଷମାଭିକ୍ଷା କରିବା ଉଚିତ; କିନ୍ତୁ ମୁଁ ଯେ ଚୋର । ପ୍ରଥମେ ବାଛୁରି ଓ ପିଲାମାନଙ୍କୁ ଯଥାସ୍ଥାନରେ ଛାଡ଼ି ତା’ ପରେ ଯାଇ କ୍ଷମା ପ୍ରାର୍ଥନା କରିବି । ଏହାଭାବି ବ୍ରହ୍ମା ଆଗକୁ ଯିବାମାତ୍ରେ ଆଉ ଏକ ଅଦ୍‌ଭୁତ ଦୃଶ୍ୟ ଦେଖିଲେ । ସେହି କଥା କହୁଛି ଶୁଣନ୍ତୁ ।”

**ଛପ୍‌ପୟ**

ସବୁଇ ନିରେଖେ ଶ୍ୟାମ ଚତୁର୍ଭୁଜ ଶୋଭା ସାଗର ।
ଶଙ୍ଖ ଚକ୍ର ଅବୁ ଗଦା ପଦ୍ମ ଧାରେ ନଟନାଗର ॥

ସବୁକେ ଫିରିଫେରି ମୁକୁଟ କଣ୍ଠମହିଁ ମଳ ଶୋହେଁ ।
ବଟରହିଁ ଅଗଣିତ କୃଷ୍ଣ ଭୁବନମୋହନ ମନ ମୋହେଁ ॥
ଜୀବ ଚରାଚର ମଧୁର ସ୍ୱର, କରହିଁ ପ୍ରାର୍ଥନା ବେଶ ଧରି ।
ସେଦେବେଁ କାଳ ସ୍ୱଭାବ ଗୁଣ, ପୂଜା ଅର୍ଚ୍ଚା ସବଧି କରି ॥



## ଈଶ୍ୱରଙ୍କ ଐଶ୍ୱର୍ଯ୍ୟ

କ୍ୱାହଂ ତମୋମହଦହଂଖଚରାଗ୍ନି ବାର୍ଭୂ—
ସଂବେଷ୍ଟିତାଣ୍ଡଘଟସପ୍ତବିତସ୍ତିକାୟଃ ।
କ୍ୱେଦୃଗ୍ବିଧାବିଗଣିତାଣ୍ଡପରାଣୁଚର୍ଯ୍ୟା—
ବାତାଧ୍ୱରୋମବିବରସ୍ୟ ଚ ତେ ମହିତ୍ୱମ୍ ॥

(ଶ୍ରୀ ଭା ୧୦ ସ୍କ, ୧୪ ଅ, ୧୧ ଶ୍ଳୋକ)

### ଛପ୍ପୟ

ଅଗଣିତ ନରଖେ କୃଷ୍ଣ ପିତାମହ ମୁନି ମନରଞ୍ଜନ ।
ସବଇ ସତ୍ୟ ସ୍ୱରୂପ ଜ୍ଞାନମୟ ନିତ୍ୟ ନିରଞ୍ଜନ ॥
ନିତ୍ୟାନନ୍ଦ ସ୍ୱରୂପ ଅଗୋଚର ଅଲଖ ଏକରସ ।
ଭାସେ ଜିନ୍‌ମେ ବିଶ୍ୱ ଚରାଚର ଅଗ ଜଗ ସରବସ ॥
ଶଙ୍କର ବିଷ୍ଣୁ ଅସଂଖ୍ୟ ଅଜ, ଲଖି ଅଜ ମନ ଅତି ହୋତ ସୁଖ ।
ନିରଖେ ବ୍ରହ୍ମା ବିବିଧ ବିଧି, ଦଶମୁଖ, ଶତମୁଖ, ସହସମୁଖ ॥

ସୃଷ୍ଟି ପ୍ରକ୍ରିୟାକୁ ପରିଚାଳିତ କରିବା ପାଇଁ ଭଗବାନ ବିଭିନ୍ନ ରୂପ ଧାରଣ କରନ୍ତି । ଯେ ଜନ୍ମ ହୋଇଛି ତା'ର ମୃତ୍ୟୁ ଅବଶ୍ୟମ୍ଭାବୀ । ଏହି ବିଶ୍ୱ ବ୍ରହ୍ମାଣ୍ଡକୁ ବ୍ରହ୍ମ ଉତ୍ପନ୍ନ କରନ୍ତି । ଏହାର ପାଳନ ଓ ସଂହାରର ବ୍ୟବସ୍ଥା ମଧ୍ୟ ହେବା ଉଚିତ । ତେଣୁ ସୃଷ୍ଟି ପାଇଁ ଭଗବାନ ବ୍ରହ୍ମା ହୁଅନ୍ତି । ପାଳନ ପାଇଁ ବିଷ୍ଣୁ ଓ ସଂହାର ପାଇଁ ଶଙ୍କର ହୁଅନ୍ତି । ଏକମାତ୍ର ଭଗବାନ ହିଁ ଗୁଣ ଓ କାର୍ଯ୍ୟ ଅନୁସାରେ ଭିନ୍ନ ଭିନ୍ନ ରୂପ ଗ୍ରହଣ କରନ୍ତି । ତଥାପି ତ୍ରିଦେବ ହେଲେ ଏକ ବିଲକ୍ଷଣ ରୂପ । ଭଗବାନ ଅତୀବ କ୍ରୀଡ଼ାପ୍ରିୟ । ତାଙ୍କର ଖାଲି ଖେଳ ଦରକାର ।

ସେଥିପାଇଁ ସଖା ଓ ସଖୀଙ୍କ ସହିତ ସେ ସର୍ବଦା ଖେଳୁଥାନ୍ତି । ଭଗବାନଙ୍କ ମାୟା ମଧ୍ୟ ବିଚିତ୍ର । ସେହି ମାୟାରେ ଜୀବଜଗତ୍ ମୋହିତ ହେବା ସଙ୍ଗେ ସଙ୍ଗେ ଭଗବାନ ନିଜେ ବି ମୋହିତ ହୋଇଯା'ନ୍ତି । ନିଜେ ନିଜର ମହିମା ବିସ୍ତାର କରି ବିସ୍ମିତ ହୁଅନ୍ତି । ଏଥିରେ କାହାରି ଦୋଷ ନାହିଁ । କାହାକୁ ଦୋଷୀ କରାଯିବ ? ସମସ୍ତେ ହେଉଛନ୍ତି ତାଙ୍କର ରୂପ । ତେଣୁ ବୁଝିବାକୁ ହେବ ସେ ଖେଳୁଛନ୍ତି ବୋଲି । ଆଗ ପଛ ଚାରିଆଡ଼େ ବଡ଼ ବଡ଼ ଦର୍ପଣ ରଖିଲେ ସେଥିରେ ଯେପରି ଏକ ଆକୃତି ଅସଂଖ୍ୟ ଆକୃତି ରୂପେ ପ୍ରତିଫଳିତ ହୁଏ, ଭଗବାନ ସେହିପରି ଆବଶ୍ୟକତା ଅନୁଯାୟୀ ଅସଂଖ୍ୟ ରୂପ ଧାରଣ କରନ୍ତି । ଏହା ତାଙ୍କର ଲୀଳା ରୂପେ ଅଭିହିତ ।

ମହର୍ଷି ସୂତ କହିଲେ—"ମୁନିଗଣ ! ବ୍ରହ୍ମା ଗୋପାଳବାଳକ ଓ ବାଛୁରି ରୂପରେ କୃଷ୍ଣଙ୍କର ଅସଂଖ୍ୟ ରୂପ ଦେଖି ବିଚଳିତ ହୋଇ ପଡ଼ିବାର ଦେଖି ଭଗବାନ ନିଜ ମାୟାକୁ ଅପସାରଣ କରିଥିଲେ । ମାୟା ଅପସୃତ ହେବାପରେ ବ୍ରହ୍ମା ବୃନ୍ଦାବନର ଶୋଭା ଦେଖି ଆଗେଇ ଯିବାବେଳେ ସମ୍ମୁଖରେ ଏକ ଦିବ୍ୟ ପ୍ରାସାଦ ଦେଖିଲେ । ବ୍ରହ୍ମା ସେହି ପ୍ରାସାଦକୁ ଦେଖି ବିସ୍ମିତ ହୋଇପଡ଼ିଲେ । କାରଣ ପୂର୍ବରୁ ସେଠାରେ କୌଣସି ପ୍ରାସାଦ ଥିବାର ସେ ଦେଖି ନ ଥିଲେ । ସେ ଭାବିଲେ—ଏହା ମଧ୍ୟ ଭଗବାନଙ୍କ ମାୟା । ହେଉ କ'ଣ ଅଛି ଦେଖିବା ଉଚିତ । ଏହା ଭାବି ସେ ପ୍ରାସାଦର ଦ୍ୱାର ଖୋଲିବାମାତ୍ରେ ଚାରିମୁଖ ଥିବା ଦୁଇଜଣ ବ୍ୟକ୍ତି ପହରା ଦେଉଥିବାର ଦେଖିଲେ । ବ୍ରହ୍ମା ବିନୀତ ଭାବେ ପଚାରିଲେ—"ଆପଣ ଦୁହେଁ କିଏ ? ଏ ଭବନ କାହାର ?"

ପହରାବାଲା ଦୁହେଁ କହିଲେ—"ଆମ ଦୁହିଁଙ୍କର ନାମ ବ୍ରହ୍ମା । ଆଜିକାଲି ଆମେ ଏହି କାମ କରୁଛୁ । ଏହା ଭଗବାନ୍ ନନ୍ଦନନ୍ଦନଆନନ୍ଦକନ୍ଦ ଶ୍ରୀକୃଷ୍ଣଚନ୍ଦ୍ରଙ୍କ ଭବନ । ଆପଣ କିଏ ?"

ବ୍ରହ୍ମାଙ୍କ ମୁଣ୍ଡ ଘୂରେଇଦେଲା । କିଛି ସମୟ ଚିନ୍ତା କରି ସେ କହିଲେ—"ଲୋକେ ମୋତେ ବ୍ରହ୍ମା ବୋଲି କହନ୍ତି ।"

ଏହାଶୁଣି ସେ ଦୁହେଁ ପଚାରିଲେ—"ଆପଣ କେଉଁ ବ୍ରହ୍ମାଣ୍ଡର ବ୍ରହ୍ମା ?"

ବ୍ରହ୍ମା ପୁଣି ଅଡୁଆରେ ପଡ଼ିଲେ । ଏପର୍ଯ୍ୟନ୍ତ ସେ ନିଜର ବ୍ରହ୍ମାଣ୍ଡକୁ ଏକମାତ୍ର ବ୍ରହ୍ମାଣ୍ଡ ବୋଲି ବିଚାରୁଥିଲେ । ଏ ପ୍ରଶ୍ନ ଶୁଣି ସେ ଭାବିଲେ ମୋ' ବ୍ରହ୍ମାଣ୍ଡ ବ୍ୟତୀତ ଆହୁରି ବ୍ରହ୍ମାଣ୍ଡ ଅଛି । ଉତ୍ତର ଦେବାରେ ଭୁଲ୍ ଯେପରି ନ ହେବ ସେଥିପାଇଁ ବ୍ରହ୍ମା ଦ୍ୱାରପାଳ ବ୍ରହ୍ମା ଦୁହିଁଙ୍କୁ ପଚାରିଲେ—"ଆପଣ କେଉଁ ବ୍ରହ୍ମାଣ୍ଡର ବ୍ରହ୍ମା ?"

ସେ ଦୁହେଁ କହିଲେ—"ଆମେ ଦୁହେଁ ଗୋଟିଏ ଗୋଟିଏ ବ୍ରହ୍ମାଣ୍ଡର ବ୍ରହ୍ମା ଥିଲୁ । ସେଠାକୁ ଅନ୍ୟ ବ୍ରହ୍ମା ପଠାଇ ଦିଆଗଲା ଏବଂ ଆମକୁ ଏଠାରେ ପହରାଦେବା କାର୍ଯ୍ୟରେ

ରଖାଗଲା । ଏହି କାର୍ଯ୍ୟ ପାଇଁ ଆମେ ନିଜକୁ ସୌଭାଗ୍ୟବାନ୍ ମନେକରୁଛୁ ଏବଂ ପ୍ରଶଂସା କାର୍ଯ୍ୟ କରୁଛୁ । ପୁଣି ଆମକୁ ଅନ୍ୟ କୁଆଡ଼େ ପଠାଇ ଦିଆଯାଇପାରେ ।"

ବ୍ରହ୍ମା ପଚାରିଲେ—"ମୁଁ ଭଗବାନଙ୍କ ସାକ୍ଷାତ୍ ପାଇପାରିବି କି ?"

ସେ ଦୁହେଁ କହିଲେ—"ଆପଣ ଭିତରକୁ ଯାଇ ଦ୍ୱିତୀୟ ପ୍ରହରୀଙ୍କୁ ପଚାରନ୍ତୁ । ସେ କହିପାରିବେ ।"

ଏହାଶୁଣି ବ୍ରହ୍ମା ଭିତରକୁ ଗଲେ ଏବଂ ଅନ୍ୟ ଏକ ଦ୍ୱାରରେ ଦଶମୁଖ ବିଶିଷ୍ଟ ବ୍ରହ୍ମା ପହରା ଦେଉଥିବାର ଦେଖିଲେ । ବ୍ରହ୍ମାଙ୍କ ବ୍ରହ୍ମାପଣିଆ ଆପେ ଆପେ ଚୂର୍ଣ୍ଣ ହୋଇଗଲା । ଦଶମୁଖ ବ୍ରହ୍ମାଙ୍କୁ ପଚାରି ଓ ତାଙ୍କ ଅନୁମତି ନେଇ ପୁଣି ଭିତରକୁ ଗଲେ । ଆଉ ଏକ ଦ୍ୱାରରେ ଶହେ ଶହେ ମୁଖ ଥିବା ବ୍ରହ୍ମା ଦେଖିଲେ । ତା'ପରେ ହଜାରେ ହଜାରେ ମୁଖ ଥିବା ବ୍ରହ୍ମା ଦେଖିଲେ । ଏହିପରି ସାତୋଟି ଦ୍ୱାର ପାରହେଲା ପରେ ବ୍ରହ୍ମା ଦୁଇଟି ସୁନ୍ଦରୀ ଯୁବତୀଙ୍କୁ ଦେଖିଲେ ଓ ତାଙ୍କ ପାଦତଳେ ପ୍ରଣାମ କଲେ । କାରଣ ଏପରି ସୁନ୍ଦରୀ ସେ କେଉଁଠି ଦେଖି ନ ଥିଲେ । ବ୍ରହ୍ମା ହାତଯୋଡ଼ି ବିନୀତଭାବେ ପଚାରିଲେ—"ଦେବି ! ଏହି ଭବନ କାହାର ?"

ଯୁବତୀ ଦୁହେଁ ଅଳ୍ପ ହସି କହିଲେ—"ଏହା ଲକ୍ଷ୍ମୀଙ୍କ ଅନ୍ତଃପୁର ।"

ବ୍ରହ୍ମା ପଚାରିଲେ—"ଭଗବାନ୍ କ'ଣ ଏଇଠି ଅଛନ୍ତି ?"

ଏହାଶୁଣି ସେ ଦୁହେଁ ହସିଲେ ଆଉ କହିଲେ—"ଏ କି ପ୍ରକାର ପ୍ରଶ୍ନ ? ଭଗବାନ କ'ଣ ଅନ୍ୟତ୍ର କୁଆଡ଼େ ଯାଆନ୍ତି ? ଭଗବାନ ସର୍ବଦା ଏଇଠି ଥାଆନ୍ତି ।"

ବ୍ରହ୍ମା ପଚାରିଲେ—"ମୁଁ କ'ଣ ତାଙ୍କୁ ସାକ୍ଷାତ୍ କରିପାରିବି ?"

ଏହାଶୁଣି ସେ ଦୁହେଁ ହସିଲେ ଓ କହିଲେ—"ଆପଣଙ୍କୁ ଦେଖି ମନେ ହେଉଛି ଆପଣ କୌଣସି ପଦବୀରେ ଅଛନ୍ତି ?"

ବ୍ରହ୍ମା ସରଳଭାବରେ କହିଲେ—"ହଁ ମୁଁ ବ୍ରହ୍ମା ପଦରେ ନିଯୁକ୍ତ ଅଛି । ଏକ ବ୍ରହ୍ମାଣ୍ଡର କାର୍ଯ୍ୟ ପରିଚାଳନା କରୁଛି ।"

ଏହାଶୁଣି ଯୁବତୀ ଦୁହେଁ କହିଲେ—"ତାହାହେଲେ ଏଠାରେ ଆପଣଙ୍କର ବିଭାଗ ନାହିଁ । ସେ ପାଖରେ ଐଶ୍ୱର୍ଯ୍ୟ ବିଭାଗ ଅଛି । ଆପଣ ସେଇଠାକୁ ଯାଆନ୍ତୁ । ଏହା ହେଉଛି ମାଧୁର୍ଯ୍ୟ ବିଭାଗ । ଏଠାରେ ଦାଢ଼ି, ନିଶ, ଜଟା ରଖିଥିବା କେହି ପ୍ରବେଶ କରିପାରିବେ ନାହିଁ କି ଏପରି ବିକୃତ ବେଶଧାରୀ କୌଣସି ପଦାଧିକାରୀ ଏହା ଭିତରକୁ ଯାଇପାରିବେ ନାହିଁ । କେବଳ ଭବ୍ୟବେଶଧାରୀ ହିଁ ଏଠାରେ ପ୍ରବେଶ କରିବେ । ଆପଣ ବଦଳି ପାଇଁ ବା ପଦୋନ୍ନତି ବା ସେହିପରି ଅନ୍ୟ କୌଣସି କାମ ପାଇଁ ଯଦି ଆସିଛନ୍ତି ତେବେ ସେ ପାଖକୁ ଯାଆନ୍ତୁ । ଭଗବାନ ସେଇଠି ବସି ଆପଣଙ୍କ କଥା ଶୁଣିବେ ।"

ବ୍ରହ୍ମା ସେଠାରୁ ଐଶ୍ୱର୍ଯ୍ୟ ବିଭାଗ ଆଡ଼କୁ ଗଲେ । ସେଠାରେ ବହୁତ ଭିଡ଼ ଲାଗିଥାଏ । ଅନେକ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ଏପାଖ ସେପାଖ ବୁଲୁଥାନ୍ତି । ଏକ ବିରାଟ ସର୍ପଶଯ୍ୟାରେ ଭଗବାନ ମହାବିଷ୍ଣୁ ଶୋଇଥାନ୍ତି । ମହାଲକ୍ଷ୍ମୀ ପାଦସେବା କରୁଥାନ୍ତି । ମଝିରେ ମଝିରେ ଭଗବାନ ଅନୁରାଗ ଦୃଷ୍ଟିରେ ତାଙ୍କ ଆଡ଼କୁ ଚାହୁଁଥାନ୍ତି । ପୁଣି କିଛି ସମୟ ଆଖି ବନ୍ଦକରି ରଖୁଥାନ୍ତି । ଆମ ପରି ସାଧାରଣଭାବେ ସେ ଶ୍ୱାସପ୍ରଶ୍ୱାସ ନେଉଥାନ୍ତି । ସେ ନିଃଶ୍ୱାସ ଛାଡ଼ିବାମାତ୍ରେ ଏକ ବ୍ରହ୍ମାଣ୍ଡ ସୃଷ୍ଟି ହେଉଥାଏ । ସେଥିରେ ବ୍ରହ୍ମା, ବିଷ୍ଣୁ, ଶିବ, ପ୍ରଜାପତି, ମନୁ, ମନୁପୁତ୍ର, ଯୁଗାବତାର, ଇନ୍ଦ୍ର, ଦେବତା, ଋଷି ସମସ୍ତେ ଥାନ୍ତି । ସମସ୍ତେ ନିଜ ନିଜ କାର୍ଯ୍ୟରେ ଲାଗିପଡ଼ୁଥାନ୍ତି; ପୁଣି ଭଗବାନ ଯେତେବେଳେ ଶ୍ୱାସ ନିଅନ୍ତି ସେତେବେଳେ ଏକ ବ୍ରହ୍ମାଣ୍ଡ ବିଲୀନ ହୋଇଯାଉଥାଏ ଓ ତା' ସହିତ ସମସ୍ତେ ଅନ୍ତର୍ହିତ ହୋଇଯାଉଥାନ୍ତି । ଏହିପରି ଅସଂଖ୍ୟ ବ୍ରହ୍ମାଣ୍ଡ ସୃଷ୍ଟି ହେଉଥିଲା ଓ ବିଲୀନ ହେଉଥିଲା ।

ବ୍ରହ୍ମା ଏହି ଦୃଶ୍ୟ ଦେଖି ସ୍ତମ୍ଭୀଭୂତ ହୋଇଗଲେ । ସେ ଭାବିଲେ—ଅସଂଖ୍ୟ ବ୍ରହ୍ମାଙ୍କ ମଧ୍ୟରେ ମୋତେ କିଏ ପଚାରିବ ? ମୋର କି ମହତ୍ତ୍ୱ ଅଛି ? ଏ ହେଉଛି ଐଶ୍ୱର୍ଯ୍ୟ ବିଭାଗର ଦୃଶ୍ୟ । ବ୍ରହ୍ମା ଏହିପରି ଭାବୁଥିବା ସମୟରେ କ୍ଷଣକ ମଧ୍ୟରେ ସବୁକିଛି ଅନ୍ତର୍ହିତ ହୋଇଗଲା । ସେ ନିଜକୁ ବୃନ୍ଦାବନ ଭୂମିରେ ବିଚରଣ କରୁଥିବାର ଦେଖିଲେ । ବ୍ରହ୍ମା ଆଉ ସ୍ଥିର ହୋଇ ରହିପାରିଲେ ନାହିଁ । କ୍ଷମା ପ୍ରାର୍ଥନା ପାଇଁ ତାଙ୍କର ମନ ଅତ୍ୟନ୍ତ ବ୍ୟାକୁଳ ହେଲା । ସେ ତୁରନ୍ତ ବ୍ରହ୍ମଲୋକକୁ ଯାଇ ଲୁଚାଇ ରଖିଥିବା ବାଳକ ଓ ବାଛୁରୀଙ୍କୁ ଆଣି ଯଥା ସ୍ଥାନରେ ଛାଡ଼ିଦେଲେ ଏବଂ ଶ୍ରୀକୃଷ୍ଣଙ୍କୁ ଖୋଜିବାକୁ ଲାଗିଲେ ।

ମହର୍ଷି ସୂତ କହିଲେ—"ମୁନିଗଣ ! ବ୍ରହ୍ମା ଗୋପବେଶଧାରୀ ଭଗବାନ ଶ୍ରୀକୃଷ୍ଣଙ୍କୁ ବାଛୁରୀ ଖୋଜୁଥିବାର ବହୁ ଦୂରରୁ ଦେଖିଲେ ଏବଂ ଦ୍ରୁତଗତିରେ ତାଙ୍କରି ଆଡ଼କୁ ଗଲେ ।"

## ଛପ୍ପୟ

ଅହିଶୈୟ୍ୟାପେ ବିଷ୍ଣୁ ନିରନ୍ତର ସୁଖତେଁ ସୋୱେଁ ।
କମଲା ପେରି ପଲୋଟି ପ୍ରେମତେଁ ଶ୍ରୀମୁଖ ଜୋୱେଁ ॥
ନିକସେଁ ବହୁ ବ୍ରହ୍ମାଣ୍ଡ ଶ୍ୱାସ ପ୍ରଶ୍ୱାସ ମାଁହିଁ ନିତ ।
ବାମେ ନିତନେ ଲୀନ ହୋହିଁ ନିତ ପ୍ରକଟେ ଅଗଣିତ ॥
ପରମୈଶ୍ୱର୍ଯ୍ୟ ନିହାରି ଅଜ, ହକ୍‌କେ ବକ୍‌କେ-ସେ-ଭୟେ ।
ଲୟେ ବଛରୁ ବାଲ ସବ, ନନ୍ଦନନ୍ଦନ ପଗ ପରି ଗୟେ ॥



# ବ୍ରହ୍ମାସ୍ତୁତି

ନୌମୀଡ଼୍ୟ ତେଽଭ୍ରବପୁଷେ ତଡ଼ିଦମ୍ବରାୟ
ଗୁଞ୍ଜାବତଂସପରିପିଚ୍ଛିଲସନ୍ମୁଖାୟ ।
ବନ୍ୟସ୍ରଜେ କବଳବେତ୍ରବିଷାଣବେଣୁ—
ଲକ୍ଷ୍ମଶ୍ରିୟେ ମୃଦୁପଦେ ପଶୁପାଙ୍ଗଜାୟ ॥

(ଶ୍ରୀ ଭା ୧୦ ସ୍କ, ୧୪ ଅ, ୧ ଶ୍ଳୋକ)

## ଛପ୍ପୟ

ଲକୁଟ ସହିତ ଅଜ ଗିରେ ନୟନତେଁ ନୀର ବହାୱେଁ ।
ପୁନି ପୁନି କରେଁ ପ୍ରନାମ ଉଠେଁ ପୁନି ପୁନି ପଦ ଜାୱେଁ ॥
ରୋମାଞ୍ଚିତ ତନୁ ଭୟୋ ଶ୍ୟାମ ଛବି ସଭୟ ନିହାରେଁ ।
ଗଦ୍‌ଗଦ ବାନୀ ଭଈ କଷ୍ଟତେଁ ବଚନ ଉଚାରେଁ ॥
କଛୁ ଆବେଗ ଘଟ୍ୟୋ ଜବହିଁ, ମାନୋ ସୋବତତେ ଜଗେ ।
କରି ନତ ମସ୍ତକ ଜୋରି କର, ବହୁରି ବିନୟ କରିବେ ଲଗେ ॥

ଜୀବର ନିଜ ପଦ, ଧନ, ଐଶ୍ୱର୍ଯ୍ୟ ଓ ଅଧିକାରର ଅଭିମାନ ଯେ ପର୍ଯ୍ୟନ୍ତ ଥାଏ ସେ ପର୍ଯ୍ୟନ୍ତ ତା' ଠାରେ ବିନୟ ପ୍ରକାଶ ପାଏ ନାହିଁ କି ସେ ନତମସ୍ତକ ହୁଏନାହିଁ । ଯେତେବେଳେ ନିଜର ବିବଶତା, କ୍ଷୁଦ୍ରତା ଓ ପରସ୍ପର ପ୍ରଭୁଙ୍କ ମହତ୍ତ୍ୱର ଅନୁଭୂତି ଆସେ ସେତେବେଳେ ତା'ଠାରେ ଦୀନତା ପ୍ରକାଶ ପାଏ ଏବଂ ନିଜର ଭୁଲ ପାଇଁ ପଶ୍ଚାତ୍ତାପ କରେ । ପ୍ରଭୁଙ୍କ ସମ୍ମୁଖରେ ନତମସ୍ତକ ହୋଇ ନିଜର ନମ୍ରତା ପ୍ରକାଶ କରେ । ହାର୍ଦ୍ଦିକ ବିନୟଦ୍ୱାରା ପ୍ରାଣୀର ସମସ୍ତ କଳୁଷ ପ୍ରକ୍ଷାଳିତ ହୋଇଯାଏ । ସାଧୁ ହୃଦୟର ସ୍ତୁତି ମନର ମଳିନତାକୁ ନଷ୍ଟ କରିଦିଏ । ସ୍ତୁତିରେ, ପ୍ରାର୍ଥନାରେ ଅଶେଷ ବଳ ଥାଏ ।

ମହର୍ଷି ସୂତ କହିଲେ—"ମୁନିଗଣ ! ବ୍ରହ୍ମା ଯେଉଁଠାରୁ ବାଛୁରି ହରାଇ ନେଇଥିଲେ ସେଠାରେ ଆଣି ଛାଡ଼ିଦେଲେ ଏବଂ ଗୋପାଳ ବାଳକମାନଙ୍କୁ ଆଣି ସେମାନେ ଯେପରି ବସିଥିଲେ ସେହିପରି ବସାଇଦେଲେ । ଏହାପରେ ଶ୍ୟାମସୁନ୍ଦରଙ୍କୁ ଖୋଜିବାକୁ

ଖୋଲିଲେ । ଦେଖିଲେ ଶ୍ୟାମସୁନ୍ଦର ସେହିପରି ଅଇଁଠା ହାତରେ ବାଛୁରି ଖୋଜୁଛନ୍ତି । ପୂର୍ଣ୍ଣବ୍ରହ୍ମ, ପରାତ୍ପର ବ୍ରହ୍ମ, ପରମପୁରୁଷ, ଅଦ୍ୱିତୀୟ, ଅନାଦି, ଅନନ୍ତ ଓ ଅବୋଧ ଅଜ ଗୋପାଳ ବାଳକରୂପେ ହାତରେ ବେଣୁ ଧରି ବୃନ୍ଦାବନ ଭୂମିରେ ଖାଲିପାଦରେ ବୁଲୁଛନ୍ତି । ଏକ ଅଜ୍ଞ ବାଳକ ପରି ସେ ଅଇଁଠା ହାତରେ ହଜିଯାଇଥିବା ବାଛୁରିଙ୍କୁ ଖୋଜୁଛନ୍ତି । ଯେ ସର୍ବାନ୍ତର୍ଯ୍ୟାମୀ, ଯାହାର ଅଜ୍ଞେୟ ହୋଇ କିଛି ନାହିଁ, ସେ ଅଜ୍ଞ ପରି ବୁଲୁଥିବାର ଦେଖି ବ୍ରହ୍ମା ଯଥାଶୀଘ୍ର ହଂସପିଠିରୁ ଓହ୍ଲାଇ ପଡ଼ିଲେ । ମୁକୁଟକୁ ଭଗବାନଙ୍କ ଚରଣତଳେ ଲଗାଇ ପ୍ରଣାମ କଲେ ଏବଂ ଶ୍ରୀକୃଷ୍ଣଙ୍କ ପାଦଧୂଳି ଆଣି ମୁଣ୍ଡରେ ଲଗାଇଲେ । ବ୍ରହ୍ମା ଚାରିଟି ମୁକୁଟକୁ ଏପରି ଭାବରେ ଥୋଇଲେ ସତେଯେପରି ସେ ପ୍ରଣାମ କରିବା ଛଳରେ ଶ୍ରୀକୃଷ୍ଣଙ୍କୁ ଆସନ ପ୍ରଦାନ କଲେ । ଆଠୋଟି ନେତ୍ରରୁ ଅଶ୍ରୁଜଳ ବିସର୍ଜନ କରି ପ୍ରଭୁଙ୍କ ପାଦରେ ପାଦ୍ୟ, ଅର୍ଘ୍ୟ ଓ ଆଚମନୀୟ ପ୍ରଦାନ କଲେ । ନିଜେ ଏକ ବ୍ରହ୍ମାଣ୍ଡର ସ୍ୱାମୀ ବ୍ରହ୍ମା ବୋଲି ସେ ଭୁଲିଗଲେ । ଆଗରେ ବସିଥିବା ଗାଈଆଳ ପିଲାକୁ ଦେଖୁଥିଲେ ମଧ୍ୟ ବ୍ରହ୍ମାଙ୍କର ଆଖି ଆଗରେ ଭଗବାନଙ୍କ ମହିମା ବାରମ୍ବାର ନାଚି ଯାଉଥିଲା ; ତେଣୁ ଭାବାବେଶରେ ବ୍ରହ୍ମା ବାରମ୍ବାର ସାଷ୍ଟାଙ୍ଗ ପ୍ରଣାମ କରୁଥିଲେ । ଶେଷରେ ହୃଦୟ ଅତ୍ୟନ୍ତ ଦ୍ରବୀଭୂତ ହୋଇ-ଯିବାରୁ ସେ ଆଉ ଭୂମିରୁ ଉଠିଲେ ନାହିଁ । ବହୁ ସମୟ ଧରି ବ୍ରହ୍ମା ପରମ ପାଦପଦ୍ମରେ ପ୍ରେମପୂର୍ବକ ପଡ଼ିରହିଲେ । କିଛି ସମୟ ପରେ ଅନନ୍ତ ଆବେଗ କମିଗଲା । ଧୀରେ ଧୀରେ ସେ ଉଠି ଠିଆହେଲେ । ନେତ୍ରରୁ ନିରନ୍ତର ଧାର ବହୁଥିଲା । ଆଖିର ଲୁହ ବସ୍ତ୍ରାଞ୍ଚଳରେ ପୋଛି ଶ୍ରୀହରିଙ୍କ ଅନୁପମ ଶୋଭାଯୁକ୍ତ ଆନନକୁ ଚାହିଁ, ମୁଣ୍ଡ ନୁଆଁଇ ଓ ଅଞ୍ଜଳିବଦ୍ଧ ହୋଇ ସେ ନମ୍ରତା, ବିନୟ ଓ ସାବଧାନତାର ସହିତ ଭୟରେ ଥରଥର ହୋଇ କରୁଣାପୂର୍ଣ୍ଣ ସ୍ୱରରେ ଭଗବାନଙ୍କ ସ୍ତୁତି କରିବାକୁ ଲାଗିଲେ ।

ବ୍ରହ୍ମା ସ୍ୱୟଂ ବେଦଗର୍ଭ ଓ ଜ୍ଞାନର ଭଣ୍ଡାର । ତାଙ୍କ ଚାରିମୁଖରେ ଚାରିବେଦ ଆବିର୍ଭାବ ହେଲା । ସେ ଯେଉଁ ସ୍ତୁତିପାଠ କଲେ ତାହା ଥିଲା ସମସ୍ତ ବେଦ ଓ ଧର୍ମଗ୍ରନ୍ଥର ସାରନିର୍ଯ୍ୟାସ । ଶ୍ରୀମଦ୍ଭାଗବତର ବ୍ରହ୍ମସ୍ତୁତି ଏକ ଅନୁପମ ବସ୍ତୁ । ସେଥିରେ ସମସ୍ତ ସିଦ୍ଧାନ୍ତର ସମାବେଶ ଘଟିଛି । ସେହି ମହତ୍ତ୍ୱପୂର୍ଣ୍ଣ ସ୍ତୁତିକୁ ବିସ୍ତାରିତଭାବେ ଏଠାରେ ବର୍ଣ୍ଣନା କଲେ ମୂଳକଥା ପ୍ରସଙ୍ଗ ବାଧାପ୍ରାପ୍ତ ହେବ ; ତେଣୁ ଏହି ସ୍ତୁତିର ଚର୍ଚ୍ଚା ମୁଁ ଅନ୍ୟତ୍ର ସ୍ତୁତି ପ୍ରସଙ୍ଗରେ କରିବାକୁ ଚାହୁଁଛି । ତେବେ ଆପଣମାନେ ଯେଉଁ ମତ ଦେବେ ସେହି ପ୍ରକାରେ ମୁଁ କଥା ବା ସ୍ତୁତି ବର୍ଣ୍ଣନା କରିବି ।

ଶୌନକ କହିଲେ—"ମହାଶୟ ! ଆପଣ ଯାହା କହୁଛନ୍ତି ତାହା ଠିକ୍ । ବ୍ରହ୍ମ ସ୍ତୁତିର ବର୍ଣ୍ଣନା ଆପଣ ସ୍ତୁତି ପ୍ରକରଣରେ କରିବେ । ବର୍ତ୍ତମାନ ପରବର୍ତ୍ତୀ ଘଟଣା କ'ଣ ହେଲା ତାହା କୁହନ୍ତୁ ।"

ମହର୍ଷି ସୂତ କହିଲେ—"ହଁ, ବ୍ରହ୍ମା ସ୍ତୁତି କରିବା ମଧ୍ୟରେ ଭଗବାନଙ୍କ ମହିମା ବର୍ଣ୍ଣନ କଲେ । ନିଜର ଅଜ୍ଞତା ଓ ମୂର୍ଖତା ପାଇଁ ସେ ପଶ୍ଚାତ୍ତାପ କଲେ । ପ୍ରଭୁଙ୍କ ନାନା-ରୂପ, ଲୀଳା ଓ ଧାମର ମହିମା କୀର୍ତ୍ତନ କଲେ । ଏହିପରିଭାବେ ବ୍ରହ୍ମା ବହୁସମୟ ଧରି ସ୍ତୁତି କରିବାକୁ ଲାଗିଲେ ; କିନ୍ତୁ ଶ୍ୟାମସୁନ୍ଦର ତଥାପି ତାଙ୍କ ଆଡ଼କୁ ଚାହିଁଲେ ବି ନାହିଁ । କୁଶଳ ପ୍ରଶ୍ନ ପଚାରିବା ଦୂରେ ଥାଉ, ଏହା ବି ପଚାରିଲେ ନାହିଁ ଯେ, ତୁମେ କିଏ ଆଉ କାହିଁକି ଏପରି ଗୀତ ଗାଇଚାଲିଛ । ସ୍ତୁତି କରୁ କରୁ ବ୍ରହ୍ମାଙ୍କ କଣ୍ଠ ଯେତେବେଳେ ରୁଦ୍ଧ ହୋଇଗଲା ଆଉ ଅଧିକ କିଛି କହିବାପାଇଁ ସେ ସମର୍ଥ ହେଲେ ନାହିଁ ସେତେବେଳେ ଭଗବାନଙ୍କୁ ତିନିଥର ପ୍ରଦକ୍ଷିଣ କରି ବ୍ରହ୍ମଲୋକକୁ ଫେରିଗଲେ ।

ଭଗବାନ ଭାବିଲେ—"ଠିକ୍ ହୋଇଛି । ଗୋଟାଏ ବିଘ୍ନ କଟିଗଲା । ବ୍ରହ୍ମା ଏଠାରେ ଗୁଡ଼ାଏ ସ୍ତୁତି ଏକାନ୍ତରେ କରି ଚାଲିଯିବା ହିଁ ଭଲ ହେଲା । ଯଦି ସେ ଗୋପାଳ ବାଳକମାନଙ୍କ ଉପସ୍ଥିତିରେ ଆସି ଏପରି କରିଥାନ୍ତେ ତେବେ ପିଲାମାନେ ଚାରିଟା ମୁହଁ ଓ ବଡ଼ ବଡ଼ ଦାଢ଼ି ଦେଖି ଡରିଯାଇଥାନ୍ତେ । ଏହିପରି ଭାବି ଭଗବାନ ଆଗରେ ଚାଲୁଥିବା ବାଛୁରୀଙ୍କୁ ଏକାଠି କରି ପୁଣି ଯମୁନା କୂଳକୁ ନେଇ ଆସିଲେ । ଯମୁନା କୂଳର ଯେଉଁ କୋମଳ ବାଲୁକା ଶଯ୍ୟାରେ ସାଙ୍ଗ ପିଲାମାନଙ୍କୁ ବର୍ଷେ ତଳେ ଛାଡ଼ି ଯାଇଥିଲେ ଶ୍ରୀକୃଷ୍ଣ ସେଇଠି ଆସି ପହଞ୍ଚିଲେ । ଭଗବାନଙ୍କୁ ଦେଖିବାମାତ୍ରେ ସମସ୍ତେ ଅତ୍ୟନ୍ତ ଆନନ୍ଦ, ଉଲ୍ଲାସ ଓ ଉତ୍ସାହ ତଥା ଉତ୍କଣ୍ଠା ପୂର୍ବକ କହିଲେ—ଆରେ ଭାଇ ! ତୁ କେତେ ବିଳମ୍ବ କରି ଆସିଲୁ । ତୋ' ବିନା ବଣଭୋଜି ମଉଜ ମାଟି ହୋଇଗଲା । ତୁ ଭାବୁଥିବୁ ଆମେ ସବୁ ଖାଇଦେଇଛୁ ; କିନ୍ତୁ ଆମେ ତୋ'ର ନାମରେ ଶପଥ କରି କହୁଛୁ ଆମେ କେହି ଗୁଣ୍ଡାଏ ବି ଖାଇନାହୁଁ । ତୁ ତ ବାଛୁରୀଙ୍କୁ ଆଣିବାରେ ବହୁତ ଡେରି କରିଦେଲୁ ?"

ଏହାଶୁଣି ଶ୍ରୀକୃଷ୍ଣ ହସିଲେ ଓ ଭାବିଲେ—"ଦେଖ, ଏ ପିଲାଗୁଡ଼ିକ କେଡ଼େ ସରଳ । ଏ ମଧ୍ୟରେ ବର୍ଷଟିଏ କଟିଯାଇଥିଲେ ମଧ୍ୟ ସେମାନେ ଆଜି ଘଟଣାଟି ଘଟିଲା ବୋଲି ଭାବୁଛନ୍ତି ।"

ଶୌନକ ଏହି କଥା ଶୁଣି ପଚାରିଲେ—"ମହାଶୟ ! ଗୋପାଳ ପିଲାମାନେ ଏସବୁ କଥା କାହିଁକି ମନେ ରଖି ପାରିଲେ ନାହିଁ ? ଆଉ ସବୁକଥା ଭୁଲିଯାଇପାରନ୍ତି ; କିନ୍ତୁ ଭଗବାନ ଶ୍ରୀକୃଷ୍ଣଙ୍କଠାରୁ ବର୍ଷେ କାଳ ବିଯୁକ୍ତ ହୋଇ ରହିବା କଥାଟା କିପରି ଭୁଲିଗଲେ ?"

ମହର୍ଷି ସୂତ ହସି ହସି କହିଲେ—"ମହାଭାଗ ! ଜାଦୁକର ଜଣେ ଯଦି ସମସ୍ତଙ୍କୁ ଭୁଲାଇ ରଖିବାକୁ ଚେଷ୍ଟା କରିବ ତେବେ ଯେ କୌଣସି କଥା ମନେ ରଖିବା ପାଇଁ କିଏ ସମର୍ଥ ହେବ ? ଭଗବାନଙ୍କ ମୋହିନୀମାୟାର ଏହି ଶକ୍ତି ଅଛି ଯେ, ପ୍ରାଣୀ ଜାଣିଶୁଣି

ସବୁକଥା ଭୁଲିଯାଏ । ଜ୍ଞାନୀ ଲୋକ ମଧ୍ୟ ଅଜ୍ଞାନଙ୍କ ପରି ଆଚରଣ କରେ ଏବଂ ସବୁକିଛି ଜାଣିଥିଲେ ଯଥା ସମୟରେ ଭୁଲିଯାଏ । ପିଲାମାନଙ୍କ ପକ୍ଷରେ ବର୍ଷେକାଳ ଅତିବାହିତ ହୋଇଯାଇଥିଲେ ମଧ୍ୟ ମାୟାଧାରୀଙ୍କ ମନମୋହିନୀ ମାୟା ପ୍ରଭାବରେ ବର୍ଷକ କ୍ଷଣକ ପରି ମନେ ହୋଇଥିଲା । ଏ ବିଷୟରେ ଆପଣଙ୍କର ସନ୍ଦେହର କୌଣସି କାରଣ ନାହିଁ ! ଭଗବାନଙ୍କ ମାୟା ଅତି ପ୍ରବଳ । ସମଗ୍ର ଜଗତ୍ ସେହି ମାୟାରେ ମୋହିତ । କେବଳ ସେତିକି ନୁହେଁ, ଏହି ବଳବତୀ ମାୟା ଯାହାର ଚିତ୍ତକୁ ହରଣ କରିଛି ସେ ଏ ସଂସାରର ସବୁ କିଛି ଭୁଲିଯାଏ । ମାୟାଚକ୍ରରେ ପଡ଼ି ପ୍ରାଣୀ ଭଗବାନଙ୍କୁ ମଧ୍ୟ ଭୁଲିଯାଏ, ଭଜନ ପୂଜନ ଭୁଲିଯାଏ ଏବଂ ଧର୍ମ, କର୍ମ ଓ କର୍ତ୍ତବ୍ୟକୁ ଭୁଲିଯାଏ । ତେଣୁ ସେହି ଭଗବତୀ ମାୟାଦେବୀଙ୍କ ଚରଣରେ କୋଟି କୋଟି ପ୍ରଣାମ । ଗୋପାଳ ବାଳକମାନେ ଜଗନ୍ମୋହିନୀ ମାୟାର ଚକ୍ରାନ୍ତରେ ପଡ଼ି ନ ଥିଲେ, ସେମାନେ ଇଚ୍ଛାକରି ଭକ୍ତ ବିମୋହିନୀ ମାୟାରେ ପଡ଼ିଥିଲେ, ଠିକ୍ ଯେପରି ଶ୍ୟାମସୁନ୍ଦର ନିଜେ ନିଜମାୟାର ଅଧୀନ ହୋଇ ପଡ଼ିଥିଲେ ।"

ମୁନିଗଣ ! ଖିଆପିଆ ଯେଉଁଠି ବନ୍ଦ ଥିଲା ପୁଣି ଆରମ୍ଭ ହୋଇଗଲା । ପୁଣି ହସଖୁସି, ଥଟ୍ଟାତାମସା, ମଉଜମଜଲିସ୍ ଚାଲିଲା । ହାସ୍ୟ ଧ୍ୱନିରେ ଚତୁର୍ଦ୍ଦିଗ ଗୁଞ୍ଜରିତ ହେବାକୁ ଲାଗିଲା । ଏହିପରି ହସଖୁସି ମଧ୍ୟରେ ବଣଭୋଜି ପର୍ବ ଶେଷ ହେଲା । ସମସ୍ତେ ଯମୁନା କୂଳକୁ ଯାଇ ପାଣି ପିଇଲେ । ଅଘାସୁରର ଶୁଷ୍କ କଳେବର ପଡ଼ିଥିଲା । ଭଗବାନ ସମସ୍ତଙ୍କୁ ତାହା ଦେଖାଇ କହିଲେ—ପିଲାମାନେ ଦେଖ, ଅସୁରର ଶରୀର କିପରି ଶୁଖି ଯାଇଛି । ପିଲାମାନେ କହିଲେ—ସାଇ କହ୍ନେଇ ! ଆଜି ବହୁତ ଡେରି ହେଲାଣି । ଏଥର ଚାଲ ଗୋଠକୁ ଫେରିଯିବା । ଭଗବାନ ପିଲାମାନଙ୍କ କଥାକୁ ସମର୍ଥନ କଲେ ଏବଂ ବାଛୁରୀଙ୍କୁ ଆଗେ ଆଗେ ଅଡ଼େଇ ବ୍ରଜପୁର ଅଭିମୁଖେ ପ୍ରତ୍ୟାବର୍ତ୍ତନ କଲେ ।"

## ଛପ୍‌ପୟ

ବହୁ ବର୍ଷ ବନତ କରୀ ବ୍ରହ୍ମ ନିଜ ଲୋକ ସିଧାୟେ ।
ତବ ବଛରନିକୂଁ ଘେର ଶ୍ୟାମ ଭୋଜନ ଥଲ ଆୟେ ।।
ମାୟା ବଶ ସବ ଭୂଲ କାଲକୀ ଜାନୀ ନହିଁ ଗତ ।
ନିରଖି କୃଷ୍ଣକୂଁ ଭୟେ ଗ୍ୱାଲ ସବଇ ପ୍ରମୁଦିତ ଅତ ।।
ବୋଲେ—କନୁଆ ! ତେଁୌ, କରୀ-ଦେର କହଁା ତକ ତୂ ଗୟୋ ।
ତେରୀ ସୂଁ ହମନେ ନହୀଁ, ଏକ କୌର ମୁହଁ ମେ ଦୟୋ ।।



# ମୋହଲୀଳାର ଉପସଂହାର

ଏତତ୍ ସୁହୃଦ୍ଭିଶ୍ଚରିତଂ ମୁରାରେ—
ରଘାର୍ଦ୍ଦନଂ ଶାଦ୍ୱଲଜେମନଂ ଚ ।
ବ୍ୟକ୍ତେତରଦ୍ ରୂପମଜୋର୍ବ୍ୱଭିଷ୍ଟବଂ
ଶୃଣ୍ୱନ୍ ଗୃଣନ୍ନେତି ନରୋଽଖିଳାର୍ଥାନ୍ ॥
(ଶ୍ରୀ ଭା ୧୦ସ୍କ, ୧୪ଅ, ୬୦ଶ୍ଳୋକ)

## ଛପ୍ପୟ

ହରି ହଁସି ଭୋଜନ କର୍‌ୟୋ ସଖନ ସଙ୍ଗ ଲୈ ବ୍ରଜ ଆୟୋ ।
ସମୁଝି ଆଜ କେ ଖେଲ ସଖନ ବ୍ରଜମାହିଁ ବତାୟୋ ॥
ହରି ମାୟାବଶ ଜୀବ ଭୂଲି ସବ ସୁଧି ବୁଧି ଜାୱେଁ ।
ଜାତେଁ ହୋୱୈ ବନ୍ଧ ତାହି ହଁସି ହରୟୋ ଲଗାୱେଁ ॥
ଏକ କୃଷ୍ଣ ପୁନି ବନି ଗୟୋ, ଗ୍ୱାଲ-ବାଲ ବଛରା ଭୟୋ ।
ପ୍ରେମ ପର୍ବତ ପୁନି ଉଠ୍ୟୋ, ସବର ଭାବ ପହିଲେ ଗୟୋ ॥

ଜୀବ ଆତ୍ମାକୁ ଖୋଜିବାକୁ ଯାଇ ଅନାତ୍ମାରେ ପଶିଯାଏ । ପାଚିଲା ଫଳ ତୋଳିବାକୁ ଗଲେ ହାତରେ କଣ୍ଟା ଫୋଡ଼ିଯାଏ । ପ୍ରେମ କରିବାକୁ ଯାଇ ମୋହରେ ପଡ଼ିଯାଏ । ତୃଷାର୍ତ୍ତ ହୋଇ ମୃଗତୃଷ୍ଣା ପଛରେ ଦୌଡ଼ି ବାଲିରେ ପାଦ ସିଝାଇଦିଏ । ତେଣୁ ଜୀବ ନିଜର ପୌରୁଷ ବଳରେ ପ୍ରଭୁଙ୍କୁ ପାଇପାରେ ନାହିଁ କି ତାଙ୍କର ପବିତ୍ର ପ୍ରେମରସ ଆସ୍ୱାଦନ କରିପାରେ ନାହିଁ । ପ୍ରଭୁ ନିଜେ ଦୟା କଲେ, ଯେକୌଣସି ରୂପରେ ଜୀବକୁ ଦର୍ଶନ ଦେଲେ ଯାଇ ଜୀବ ତାଙ୍କ ପ୍ରେମର ଅଧିକାରୀ ହୁଏ । ଅସୁରମାନେ ପ୍ରଭୁଙ୍କଠାରେ ଶତ୍ରୁ-ଭାବନା ପୋଷଣ କରିଥିଲେ । କୁବ୍ଜା କାମଭାବନାରେ ଶ୍ରୀକୃଷ୍ଣଙ୍କୁ ବରଣ କରିଥିଲା । ଅସୁରମାନଙ୍କର ହେଉ କି କୁବ୍ଜାର ହେଉ, ଶତ୍ରୁଭାବ ହେଉ କି କାମଭାବ ହେଉ ସୌଭାଗ୍ୟବଶତଃ ସେହି ଭାବ ପରାତ୍ପର ପ୍ରଭୁଙ୍କଠାରେ ଜାତ ହୋଇଥିଲା ; ତେଣୁ ସେମାନେ ଉଦ୍ଧାର ପାଇଥିଲେ । ଜୀବ ଅନ୍ଧ ଭାବରେ ଏହି ସଂସାର ରୂପକ ଅରଣ୍ୟରେ ଘୂରି ବୁଲୁଛି । ଭାଗ୍ୟରେ ଥିଲେ ତାକୁ ରତ୍ନ ମିଳିଯାଉଛି ; କିନ୍ତୁ ଜୀବ ଯେତେବେଳେ ନିଜର ସମସ୍ତ

ପୁରୁଷାର୍ଥ ବ୍ୟର୍ଥ ଓ କ୍ଲାନ୍ତ ହୋଇଯାଇ ଏବଂ ନିଜର ସର୍ବସ୍ୱ ପ୍ରଭୁଙ୍କ ପାଦପଦ୍ମରେ ସମର୍ପଣ କରିଦିଏ, ସେତେବେଳେ ଭଗବାନ ଶ୍ୟାମସୁନ୍ଦର ତା' ଆଗରେ ପ୍ରକଟିତ ହୁଅନ୍ତି । ଜୀବର ଅନନ୍ତ ତୃଷ୍ଣା ଶାନ୍ତ ହୋଇଯାଏ । ଜୀବର ସମସ୍ତ ବ୍ୟାକୁଳତା ଦୂର ହୁଏ ଏବଂ ଆନନ୍ଦର ସାଗରରେ ସେ ନିମଜ୍ଜିତ ହୋଇଯାଏ । ଯେ ପର୍ଯ୍ୟନ୍ତ ଏହି ସ୍ଥିତି ନ ଆସିଛି ସେ ପର୍ଯ୍ୟନ୍ତ ଭଗବତ ଲୀଳାର ଶ୍ରବଣ ଓ ମନନ ଦ୍ୱାରା କାଳଯାପନ କରିବା ଉଚିତ ଏବଂ ତାଙ୍କର କୃପାପ୍ରାର୍ଥୀ ହୋଇ କୃପା ପ୍ରତୀକ୍ଷାରେ ରହିବା ଉଚିତ । କୃପାଳୁ କୃଷ୍ଣ କେବେ ନା କେବେ ନିଶ୍ଚୟ କୃପା କରିବେ ସେଥିରେ ସନ୍ଦେହ କରିବାର କିଛି ନାହିଁ ।

ମହର୍ଷି ସୂତ କହିଲେ—"ମୁନିଗଣ ! ବାଛୁରୀ ଓ ବାଳକରୂପଧାରୀ କୃଷ୍ଣ ପ୍ରତ୍ୟହ ସନ୍ଧ୍ୟାରେ ଘରକୁ ଫେରି ଆସୁଥିଲେ । ବର୍ଷେ ପର୍ଯ୍ୟନ୍ତ ଭଗବାନ ଏହିପରି ଲୀଳା ଅଭିନୟ କରୁଥିଲେ । ଯେଉଁ ବାଛୁରୀ ଓ ବାଳକ ବ୍ରହ୍ମାଙ୍କ ମାୟାରେ ମୋହିତ ହୋଇ ପଡ଼ିଥିଲେ ସେମାନେ ବର୍ଷେ ପରେ ଏକ ସୁପ୍ତ ଅବସ୍ଥାରୁ ଫେରି ଆସିଲେ । ସେମାନେ ଭାବୁଥିଲେ ଆଜି ସକାଳେ ଆମେ ଘରୁ ଆସିଥିଲୁ ଏବଂ ଏବେ ସନ୍ଧ୍ୟାରେ ଘରକୁ ଯାଉଛୁ । ସେଥିପାଇଁ ସେମାନେ ଆନନ୍ଦିତ ହେଉଥିଲେ । ସେମାନେ ଏହା ଅନୁଭବ କରୁଥିଲେ ଯେ, ଯଶୋଦା-ନନ୍ଦନ ଶ୍ୟାମସୁନ୍ଦର ଆଜି ଅଘାସୁରକୁ ଉଦ୍ଧାର କଲେ । ଭଗବାନ ଆଜି ମଧ୍ୟ ସେହିପରି ବେଶଭୂଷା ଧାରଣ କରିଥିଲେ । ମସ୍ତକରେ ମୟୂରପୁଚ୍ଛ, କର୍ଣ୍ଣ, ଗଳା, ମଣିବନ୍ଧରେ ସୁନ୍ଦର ସୁଗନ୍ଧିତ ପୁଷ୍ପ ଅଳଙ୍କାର ଶୋଭା ପାଉଥିଲା । ଶ୍ରୀଅଙ୍ଗରେ ବନମାଟିର ବିଭିନ୍ନ ରଙ୍ଗର ଚିତ୍ର ଅଙ୍କିତ ହୋଇଥିଲା । କେତେବେଳେ ସେ ବଂଶୀ ବଜାଉଥିଲେ ତ କେତେବେଳେ ଶିଙ୍ଗା ବଜାଉଥିଲେ । ଭଗବାନଙ୍କର ବୃକ୍ଷଚାଳନ, ଉଠିବା ବସିବା, ହସିବା ଖେଳିବା ପ୍ରଭୃତି ସମସ୍ତ ଚେଷ୍ଟା ସମସ୍ତଙ୍କ ଅନ୍ତରକୁ ହର୍ଷିତ କରୁଥିଲା । ଏହିପରି ଗାଈ ଚରାଇ ପ୍ରଭୁ ନିଜର ଯଶୋଗାନ କରୁଥିବା ସଖାମାନଙ୍କ ଗହଣରେ ବ୍ରଜପୁରକୁ ଫେରି ଆସୁଥିଲେ ।"

ହଜାର ହଜାର ଗୋପାଙ୍ଗନା ଅତ୍ୟନ୍ତ ଉତ୍କଣ୍ଠିତ ହୃଦୟରେ ପ୍ରେମପୂର୍ଣ୍ଣ ନୟନରେ ଯାହାର ଦର୍ଶନ ପାଇଁ ଘରଦ୍ୱାର ବେଙ୍ଗରେ ଠିଆ ହୋଇ ରହିଥିଲେ ସେହି ପ୍ରେମାଭିଳାଷିଣୀ ସୌନ୍ଦର୍ଯ୍ୟବତୀ ଗୋପୀମାନଙ୍କ ଆଡ଼କୁ ଦୃଷ୍ଟି ଦେଇ, ନିଜର ଅମୃତମୟ ମୁଖଚନ୍ଦ୍ରର କିରଣ ଦ୍ୱାରା ସେମାନଙ୍କର ତୃଷିତ କଟାକ୍ଷଯୁକ୍ତ କୁମୁଦଙ୍କ କୁସୁମସଦୃଶ ନୟନକୁ ପ୍ରକାଶିତ ଓ ଆହ୍ଲାଦିତ କରି କୃଷ୍ଣଚନ୍ଦ୍ର ଗୋଷ୍ଠ ଅଭିମୁଖେ ଆସୁଥିଲେ । ବାଛୁରୀମାନଙ୍କର ନାମ ଡାକି, ମନ୍ଦ ମନ୍ଦ ସ୍ୱରରେ ସମସ୍ତଙ୍କ ଚିତ୍ତକୁ ଅପହରଣ କରି ଚତୁରଶ୍ରେଷ୍ଠ କୃଷ୍ଣ ବାଛୁରୀଙ୍କୁ ବାନ୍ଧିଦେଇ ଘରକୁ ଗଲେ । ପ୍ରତିଦିନ ସବୁ ଗୋପୀମାନେ ନିଜ ନିଜର ପିଲାଙ୍କୁ ସ୍ନେହରେ ଆଲିଙ୍ଗନ କଲେ ; କିନ୍ତୁ ସେ ଆଲିଙ୍ଗନରେ ପୂର୍ବର ଆନନ୍ଦ ଅନୁଭୂତ ହେଉନାହିଁ । ଆଜି ପର୍ଯ୍ୟନ୍ତ ସେମାନେ ସାକ୍ଷାତ୍ କୃଷ୍ଣଙ୍କ ସ୍ପର୍ଶ ଲାଭ କରୁଥିଲେ ; କିନ୍ତୁ ଆଜି ଯେଉଁମାନଙ୍କୁ ଆଲିଙ୍ଗନ କଲେ ସେମାନେ ହେଲେ ନିଜର ଆତ୍ମଜ । ବାଳକମାନେ ନିଜ ନିଜର ମା'ମାନଙ୍କୁ

ଅତ୍ୟନ୍ତ ଉଦ୍ବିଗ୍ନଚିତ୍ତା ଓ ଅନନ୍ତର ସହିତ କହିଲେ—"ମା, ମା, ଅଜ ଭାଗ୍ୟରୁ ଏକ ବଡ଼ ଅଜଗର ସାପକୁ ମାରି ଅମକୁ ରକ୍ଷା କର ।"

ମହର୍ଷି ସୂତ କହିଲେ—"ମୁନିଗଣ ! ଏହା ହିଁ ହେଉଛି କାରଣ । ପାଞ୍ଚବର୍ଷ ଅବସ୍ଥାରେ ଶ୍ରୀକୃଷ୍ଣ ଅଘାସୁରକୁ ମାରିଥିଲେ ଓ ବାଳକମାନେ ଛଅ ବର୍ଷ ବୟସରେ ନିଜ ନିଜ ଘରକୁ ଯାଇ 'ଅଜ ଶ୍ୟାମସୁନ୍ଦର ଅଘାସୁରକୁ ମାରିଲେ' ବୋଲି କହିଥିଲେ । ସେମାନେ ଭଗବାନଙ୍କ ମାୟାରେ ଯେ ବର୍ଷେ ଯାଏଁ ଅଚେତ ଥିଲେ ସେ କଥା ଜାଣିପାରିଲେ ନାହିଁ ।"

ଏହା ଶୁଣି ଗଦ୍‌ଗଦ କଣ୍ଠରେ ନୟନରୁ ଅଶ୍ରୁଧାରା ପୋଛି ଶୌନକ କହିଲେ— "ମହାଶୟ ! କୁମାର ଅବସ୍ଥାର ଘଟଣାକୁ ପୌଗଣ୍ଡ ଅବସ୍ଥାରେ ଅଜ ବୋଲି କାହିଁକି କହିଲେ—ଏହି ସନ୍ଦେହ ମୋର ଦୂର ହେଲା, କିନ୍ତୁ ମନରେ ଅଉ ଏକ ସନ୍ଦେହ ଜାତ ହୋଇଛି । ଯଦି ଆପଣ ତାହାକୁ ଅପ୍ରାସଙ୍ଗିକ ମନେ ନ କରନ୍ତି ତେବେ ତାହାକର ବୁଝାଇ ଦିଅନ୍ତୁ ।"

ମହର୍ଷି ସୂତ କହିଲେ—"ଅପଣ ନିଜର ସନ୍ଦେହ ନିଶ୍ଚୟ କହନ୍ତୁ । ଶଙ୍କା ସମାଧାନରେ ହିଁ କଥାର ସରସତା ବୃଦ୍ଧିପାଏ । ଅପଣଙ୍କ ସନ୍ଦେହ ନିଶ୍ଚୟ ଶାସ୍ତ୍ରୀୟ ହୋଇଥିବ । ଆପଣ ତ ଏଣୁତେଣୁ ପଚାରିବା ଲୋକ ନୁହନ୍ତି । କହ ଅପଣଙ୍କ ଶଙ୍କା ପ୍ରକାଶ କରନ୍ତୁ ।"

ଶୌନକ କହିଲେ—"ମହାଭାଗ ! ଅପଣ କହିଲେ ଶ୍ରୀକୃଷ୍ଣ ଯେତେବେଳେ ଗୋପାଳ ବାଳକ ରୂପ ଧରିଥିଲେ ସେତେବେଳେ ଗୋପୀମାନଙ୍କୁ ନିଜ ପୁଅଠାରୁ ବଳି ଅଧିକ ସ୍ନେହ କରୁଥିଲେ । ଏହା ଯୁକ୍ତିତର୍କର ମନେହେଉଛି । ନିଜର ପୁଅ ଯେତେ ଅସୁନ୍ଦର ହେଲେ ମଧ୍ୟ ଅଉ ଅନ୍ୟର ପୁଅ ଯେତେ ସୁନ୍ଦର ହେଲେ ମଧ୍ୟ ମା'ମାନଙ୍କର ସ୍ନେହ ନିଜ ପୁଅ ପ୍ରତି ଅଧିକ ରହିବ । ନିଜ ପୁଅଠାରୁ ବଳି ଅଧିକ ସ୍ନେହ ଅନ୍ୟର ପୁଅଠାରେ ହୋଇପାରିବ ନାହିଁ । ପ୍ରେମ ଏପରି କୌଣସି ବସ୍ତୁ ନୁହେଁ ଯେ, ଯେ କୌଣସିଠାରେ ତାହା ସମ୍ଭବ ହେବ । ପ୍ରେମ ତ ବାହ୍ୟ ବସ୍ତୁ, ଭୂଷଣ ନୁହେଁ ଇଚ୍ଛା ଅନୁସାରେ ଯାହାକୁ ତାହାକୁ ପିନ୍ଧାଇଦେଲେ ହେବ । ପ୍ରେମ ତ ହୃଦୟ ବସ୍ତୁ । ମା' ପେଟରେ ପିଲା ହେଲେ ତାହାର ପାଳନ ପୋଷଣ ମାତୃରକ୍ତରେ ସମ୍ପାଦିତ ହୁଏ । ମା'ର ହୃଦୟ ସହିତ ସନ୍ତାନର ହୃଦୟ ମିଶିଯାଏ । ସେଥିପାଇଁ ଗର୍ଭଗତ ନାଗ ବୃଦ୍ଧିହୁଏ ବୁଝାଯାଏ । ନିଜ ଉଦରରୁ ଜନ୍ମ ହୋଇଥିବା ସନ୍ତାନ ପ୍ରତି ଅଧିକ ସ୍ନେହ ରହିବା ନିତାନ୍ତ ସ୍ୱାଭାବିକ । କାରଣ, ଅତ୍ମା ହିଁ ପୁତ୍ରରୂପେ ପ୍ରକଟିତ ହୁଏ ; ତେଣୁ ସେ ସବୁଠାରୁ ଅଧିକ ପ୍ରିୟ । ଏ ବିଷୟରେ ଏକ ଉଦାହରଣ ଅଛି । ଜନୈକ ଅଧ୍ୟାପକଙ୍କ ପାଠଶାଳାରେ ବହୁତ ପିଲା ପଢୁଥିଲେ ।

ସେମାନଙ୍କ ମଧ୍ୟରେ ସବୁଠୁ ଅସୁନ୍ଦର ପିଲାଟିଏ ଥିଲା । ତା'ର ମା' ଅତି ଦରିଦ୍ର ଓ ବିଧବା ଥିଲେ ; ତେଣୁ ସବୁବେଳେ ସେ ପିଲାଟି ଚିରା ମଇଳା ଲୁଗା ପିନ୍ଧୁଥିଲା । ଅନ୍ୟ ପିଲାମାନେ ଧନୀଘରର ସନ୍ତାନ ଥିଲେ, ସୁନ୍ଦର ଥିଲେ ଏବଂ ବହୁମୂଲ୍ୟ ବସ୍ତ୍ରଭୂଷଣରେ ମଣ୍ଡିତ ହୋଇ ଚାଟଶାଳୀକୁ ଆସୁଥିଲେ ।

ଦିନେ ଅବଧାନ ମହାଶୟ ସେହି ବିଧବାକୁ ଡକାଇ ତା' ହାତରେ ଗୁଚ୍ଛେ ମିଠେଇ ଦେଇ କହିଲେ—"ଏହି ପିଲାମାନଙ୍କ ମଧ୍ୟରୁ ଯେ ସବୁଠୁ ସୁନ୍ଦର ବୋଲି ତୁ ଭାବୁଛୁ ତାକୁ ଏହି ମିଠେଇ ଦେବୁ ।"

ବିଧବା ଜଣକ ନିଜର ପୁଅକୁ ମିଠେଇତକ ଦେଇ କହିଲା—"ସତ କଥା ହେଉଛି, ମୋ' ପୁଅ ପରି ଅନ୍ୟ କୌଣସି ପିଲା ମୋତେ ସୁନ୍ଦର ଦେଖାଗଲେ ନାହିଁ ; ତେଣୁ ମୋର ସନ୍ଦେହ ହେଉଛି, ଯଦି ଜଣେ ଦୁଇଜଣ ଗୋପୀଙ୍କର ସେହିପରି ହୋଇଥାନ୍ତା ତେବେ କହିବାର କିଛି ନ ଥିଲା ; କିନ୍ତୁ ସମସ୍ତ ଗୋପୀ ଯଶୋଦା ଗର୍ଭସମ୍ଭୂତ ଶ୍ରୀକୃଷ୍ଣଙ୍କ ପ୍ରତି ପୁତ୍ରଠାରୁ ଅଧିକ ସ୍ନେହ, ପ୍ରେମ କରୁଥିଲେ । ସେମାନଙ୍କ ହୃଦୟରେ କିପରି ଅଧିକ ପ୍ରେମଜାତ ହେଲା ଓ କାହିଁକି ହେଲା ? ଏହା ହିଁ ମୋର ସନ୍ଦେହ । ଆପଣ ଏହାର ସମାଧାନ କରନ୍ତୁ ।"

ଶୌନକଙ୍କର ସନ୍ଦେହ ବିଷୟ ଶୁଣି ମହର୍ଷି ସୂତ ଗମ୍ଭୀର ହୋଇଗଲେ । କିଛି କାଳ ମୌନ ରହିବା ପରେ ସେ ଧୀରେ ଧୀରେ କହିଲେ—"ମହାଭାଗ ! ମହାରାଜ ପରୀକ୍ଷିତ ମଧ୍ୟ ମୋର ଗୁରୁ ଭଗବାନ ଶୁକଦେବଙ୍କୁ ଏହି ପ୍ରଶ୍ନ ପଚାରିଥିଲେ । ଗୁରୁଦେବ ଯେପରି ଏହି ପ୍ରଶ୍ନର ସମାଧାନ କରିଥିଲେ ତାହା ମୁଁ ଆପଣଙ୍କୁ କହୁଛି । ଆପଣମାନେ ଗମ୍ଭୀରଭାବେ ଏହି ବିଷୟରେ ବିଚାର କରନ୍ତୁ । ପ୍ରାଣୀ କାହାକୁ ପ୍ରେମ କରେ ? ସଂସାରରେ ଯେତେ ଜୀବ ଅଛନ୍ତି ସମସ୍ତେ କାହାରି ନା କାହାରି ପୁତ୍ର । ଯଦି ପୁତ୍ର ହେଉଛି ପ୍ରେମର କାରଣ ତେବେ ସମସ୍ତଙ୍କର ପ୍ରେମ ସମାନ ହୁଅନ୍ତା ; କିନ୍ତୁ ଏହା ଦେଖାଯାଏ ନାହିଁ । ନିଜ ପୁଅ ଅନ୍ୟଠାରୁ ଅଧିକ ଭଲଲାଗେ । ସଂସାରରେ ଏପରି କେହି ହତଭାଗ୍ୟ ନ ଥିବ ଯାହାର କେହି ପାଇଁ ନ ଥିବେ ; କିନ୍ତୁ ସବୁ ମିତ୍ରଙ୍କୁ ପ୍ରେମ କରାଯାଏ ନାହିଁ । ନିଜର ମିତ୍ର ହିଁ ଅଧିକ ପ୍ରିୟପାତ୍ର ହୁଏ । ପଞ୍ଚଭୌତିକ ପଦାର୍ଥରେ ସଂସାରର ସମସ୍ତଙ୍କ ଶରୀର ତିଆରି ହୋଇଛି । କିନ୍ତୁ ସମସ୍ତଙ୍କ ଦେହକୁ ନୁହେଁ ନିଜର ଦେହକୁ ଅଧିକ ଆଦର କରାଯାଏ । ଏଥିରୁ ଜଣାଯାଏ ଯେ, ପ୍ରାଣୀକୁ ନିଜର ଜିନିଷ ହିଁ ଅଧିକ ଭଲଲାଗେ । ନିଜର ବୋଲି କହିଲେ— ପୁତ୍ର, ଧନ-ସମ୍ପଦ, ପଶୁ ପକ୍ଷୀ, ଗଛପତ୍ର, ଘର ଓ ଅନ୍ୟାନ୍ୟ ଯାହା କିଛି ଅଛି ସେ ସମସ୍ତ ନିଜର ହୋଇଥିଲେ ଭଲଲାଗେ । ଯେଉଁଥିରେ ନିଜର ଭାବନା ନାହିଁ ତାହା ଖୁବ୍ ବେଶୀ ଭଲଲାଗେ ନାହିଁ । ଦେଖନ୍ତୁ, ମୋ' ପାଖରେ ଶହେ ଟଙ୍କା ଅଛି । ମୁଁ ତାକୁ ବଡ଼ ଯତ୍ନରେ ରଖିଛି ଏବଂ ସେଥିପାଇଁ ଚିନ୍ତା କରୁଛି । କାରଣ ତାହା ମୋର । କୌଣସି ବନ୍ଧୁ କାଣିବା

ପରେ ସେହି ଟଙ୍କା ଅନ୍ୟକୁ ଦେଇଦେଲେ ତା'ପ୍ରତି ଆଦୌ ମମତା ରହେ ନାହିଁ । ସେ ଟଙ୍କା ନଷ୍ଟ ହୋଇ ଯାଉ, ଚୋରି ହୋଇଯାଉ ଅଥବା କେଉଁଠି ପଡ଼ିଯାଉ, ସେ ବିଷୟରେ ଟିକିଏ ହେଲେ ଚିନ୍ତା ମନକୁ ଆସେ ନାହିଁ ।"

ଏହା ଶୁଣି ଶୌନକ ପଚାରିଲେ—"ନିଜର ବୋଲି କ'ଣ ବୁଝାଯାଏ ।"

ମହର୍ଷି ସୂତ କହିଲେ—"ହଁ ମହାଭାଗ ! ତାହା ହିଁ ବିଚାର୍ଯ୍ୟ ବିଷୟ । ନିଜର ବୋଲି କାହାକୁ କୁହାଯିବ । ଆମେ ବାହାରୁ କବାଟ ଖଟ୍ ଖଟ୍ କଲେ ଭିତରୁ କେହି ପଚାରେ— "କିଏ ?"

ବାହାରେ ଥିବା ଲୋକ କହେ—"କେହି ନୁହେଁ ମୁଁ । ଏହି ମୁଁ କିଏ ? କୌଣସି ବ୍ୟକ୍ତି ସହିତ ଆଉ ଜଣେ କେହି ଥିଲେ—ଆମେ ପଚାରୁ—ଏ କିଏ ? ବ୍ୟକ୍ତି ଉତ୍ତର ଦିଏ— ଏ ମୋର ମିତ୍ର, ମୋର କକେଇଙ୍କ ପୁଅ ଅଥବା ମୋର ପିଉସୀଙ୍କ ପୁଅ । ଏବେ ଚିନ୍ତା କରନ୍ତୁ—ଏହି ମୋର ବୋଲି କହିବାର ତାତ୍ପର୍ଯ୍ୟ କ'ଣ ? ପ୍ରଥମେ ମୁଁ ଓ ପରେ ମୋର— ଏ ବିଷୟରେ ବିଚାର କରନ୍ତୁ ।"

ଶୌନକ କହିଲେ—"ମୁଁ କହିଲେ ଏହି ଶରୀର ଓ ଶରୀର ସହିତ ଯାହାର ସମ୍ବନ୍ଧ ଥାଏ, ଯାହାକୁ କୌଣସି କାରଣରୁ ନିଜର ବୋଲି ଲୋକେ ଭାବନ୍ତି ଓ କହନ୍ତି—ଏ ଜିନିଷ ମୋର ।"

ମହର୍ଷି ସୂତ ଏହାଶୁଣି ହସି ହସି କହିଲେ—"ମହାଭାଗ ! ଏହି ପାଞ୍ଚଭୌତିକ ଶରୀରରେ 'ମୁଁ' ବୋଲି କିଛି ନାହିଁ । ଦେହାତ୍ମବାଦୀ ନାସ୍ତିକମାନେ ଅଜ୍ଞାନତାବଶତଃ ଏ ଦେହକୁ ଆତ୍ମା ବୋଲି କହନ୍ତି । ଅଚ୍ଛା, କିଛି ସମୟ ପାଇଁ ଏ ଶରୀରକୁ 'ମୁଁ' ବୋଲି ମାନି ନିଅନ୍ତୁ । ଏହି 'ମୁଁ' ଓ 'ମୋର' ଏହି ଦୁଇଟି ମଧ୍ୟରେ ବଡ଼ କିଏ ?"

ଶୌନକ କହିଲେ—'ମୋର'ଠାରୁ 'ମୁଁ' ବଡ଼ ।'

ମହର୍ଷି ସୂତ କହିଲେ—"ହଁ ମହାଭାଗ ! ହଁ, ଆପଣ ଯାହା କହିଲେ ତାହା ଠିକ୍ । ଯେଉଁଥିରେ ମୋର ଭାବ ଅଧିକ ଥାଏ, ସେଥିପାଇଁ ଅଧିକ ମମତା, ପ୍ରେମ ଜାତ ହୁଏ । ପରିବାରର ସମସ୍ତେ ନିଜର ; କିନ୍ତୁ ଯାହା ପ୍ରତି ଅଧିକ ମମତା ଥାଏ, ସମସ୍ତଙ୍କଠାରୁ ସେ ଅଧିକ ପ୍ରିୟ ହୁଏ । ଦେହଧାରୀମାନେ ନିଜର ଦେହକୁ ସର୍ବାଧିକ ପ୍ରେମ କରୁଥିବା ସାଧାରଣତଃ ଦେଖାଯାଏ । ନିଜ ଶରୀର ପ୍ରତି ଯେତିକି ପ୍ରେମ ଥାଏ, ନିଜର ବୋଲି କୁହାଯାଉଥିବା ପୁତ୍ର, ଧନ, ଭବନ ପ୍ରତି ସେତିକି ମମତା ଆସେ ନାହିଁ । ଏହା ହେଉଛି ଦେହାତ୍ମବାଦୀମାନଙ୍କ ବିଚାର ; କିନ୍ତୁ ଯେଉଁମାନେ ଦେହ ଓ ଆତ୍ମା ବିଷୟରେ ନିଜର ସାଧନାଦ୍ୱାରା ଜ୍ଞାନ ଅର୍ଜନ କରିଛନ୍ତି ସେମାନେ ଜାଣନ୍ତି ଯେ, ପାଞ୍ଚଭୌତିକ ଶରୀର ଆତ୍ମା

ନୁହେଁ । ସେଥିପାଇଁ ଦେହପ୍ରତି ସେମାନଙ୍କର ମମତା ରହେ ନାହିଁ । ଦେହ ରହିଲେ ଭଲ, ନ ରହିଲେ ବି ଭଲ । ଜ୍ଞାନୀ ଲୋକେ ଧନ ଜନ ପରି ଦେହପ୍ରତି ମଧ୍ୟ ଉଦାସୀନ ହୋଇପଡ଼ନ୍ତି । ଦେହାତ୍ମବାଦୀଙ୍କୁ ଯେଉଁ ଦେହ ଅତି ପ୍ରିୟ ବୋଲି ମନେ ହୁଏ, ଜ୍ଞାନୀଲୋକଙ୍କୁ ଦେହ ଅପେକ୍ଷା ଆତ୍ମା ଅଧିକ ପ୍ରିୟ ବୋଧ ହୁଏ । ଏଥିରୁ ବୁଝାପଡ଼େ ଧନ, ଘର, ଭୂମି ଆଦି ପରି ଦେହ ବି ଏକ ନଶ୍ୱର ବସ୍ତୁ ; ତେଣୁ ଦେହ ବିଷୟରେ ଅହଙ୍କାର ରହିବା ଉଚିତ ନୁହେଁ । ପୁଣି ଦେହ ଅହଙ୍କାରର ଆସ୍ପଦ ନ ହୋଇ ମମତାର ପାତ୍ର ହୋଇଯାଏ । ଏଥିରୁ ସମସ୍ତ ଦେହଧାରୀଙ୍କ ପକ୍ଷରେ ଆତ୍ମା ଅଧିକ ପ୍ରିୟ ବୋଲି ପ୍ରତିପାଦିତ ହୁଏ ଏବଂ ସେହି ଆତ୍ମା ସମ୍ବନ୍ଧରୁ ସଚରାଚର ଜଗତ ପ୍ରିୟ ବୋଲି ପ୍ରତୀତ ହୁଏ । ଏହି ଜଗତରୁ ଆତ୍ମସତ୍ତାକୁ ପୃଥକ୍ କରି ଦିଆଗଲେ ସବୁକିଛି ନିରାନନ୍ଦମୟ ହୋଇଯିବ । ଆତ୍ମସତ୍ତା କାରଣରୁ ହିଁ ଜଗତରେ ସବୁ କିଛି ଆନନ୍ଦମୟ ମନେହେଉଛି । ଆତ୍ମସତ୍ତା ବିନା ଜଗତର ଅସ୍ତିତ୍ୱ କଳ୍ପନା କରିବା ସମ୍ଭବ ନୁହେଁ । ଆତ୍ମାର ସ୍ୱରୂପ ହେଉଛି ନିତ୍ୟ ଚୈତନ୍ୟ । ସଂସାର ହେଉଛି ଜଡ଼ । ଆତ୍ମସତ୍ତା ଦ୍ୱାରା ତାହା ଚୈତନ୍ୟମୟ ହୁଏ ।

ଶୌନକ ପଚାରିଲେ—"ମହାଶୟ ! ସେହି ଆତ୍ମାର ସ୍ୱରୂପ କ'ଣ ? ତା'ର ଅନୁଭୂତି କିପରି ସମ୍ଭବ ହୁଏ ?"

ମହର୍ଷି ସୂତ କହିଲେ—"ମହାଭାଗ ! ଆତ୍ମାର ଅନ୍ୟ କୌଣସି ସ୍ୱରୂପ ଥାଇପାରେ; କିନ୍ତୁ ମୁଁ ଏହି ସଚ୍ଚିଦାନନ୍ଦ ଘନବିଗ୍ରହ, ଅନନ୍ତ କୋଟି ବ୍ରହ୍ମାଣ୍ଡର ଅଧିନାୟକ, ବୃନ୍ଦାବନ-ବିହାରୀ, ନନ୍ଦନନ୍ଦନ, ଆନନ୍ଦକନ୍ଦ, ଯଶୋଦାନନ୍ଦବର୍ଦ୍ଧନ ଶ୍ୟାମସୁନ୍ଦରଙ୍କୁ ଆତ୍ମା ବୋଲି ଜାଣିଛି । ସେ ହିଁ ପରମାତ୍ମା ।"

ଶୌନକ କହିଲେ—"ମହାଶୟ ! ପରମାତ୍ମା ତ ନାମ, ରୂପ, ଦେହାଦି ଉପାଧି ରହିତ ବୋଲି କୁହାଯାଏ ।"

ଏହାଶୁଣି ମହର୍ଷି ସୂତ ହସି ହସି କହିଲେ—"ମହାଭାଗ ! ଭଗବାନ ସଂସାରୀ ଜୀବର କଲ୍ୟାଣ ନିମିତ୍ତ ନିଜ ମାୟାରେ ଦେହଧାରୀ ସଦୃଶ ପ୍ରତୀତ ହୁଅନ୍ତି । ତାଙ୍କର ଦେହ ସାଧାରଣ ପ୍ରାକୃତ ଦେହ ସହିତ ସମାନ ନୁହେଁ । ତାଙ୍କ ଦେହ ହେଉଛି ଚିନ୍ମୟ । ସେଥିପାଇଁ ଜଗତରେ ଚୈତନ୍ୟ ଦୃଷ୍ଟିଗୋଚର ହୁଏ । ଅଜ୍ଞାନ ପୁରୁଷଙ୍କୁ ଭଗବାନଙ୍କ ଭୁବନ ମୋହନ ରୂପ ପ୍ରାକୃତ ପୁରୁଷର ଦେହ ପରି ବୋଧହୁଏ । ସେହି ପ୍ରଭୁଙ୍କ ଅନୁଗ୍ରହରୁ ଯେ ତାଙ୍କର ବାସ୍ତବ ତତ୍ତ୍ୱକୁ ଜାଣିଛି, ରହସ୍ୟ ବସ୍ତୁ ସହିତ ପରିଚିତ ହୋଇଛି, ତା' ଦୃଷ୍ଟିରେ ଏ ସ୍ଥାବର ଜଙ୍ଗମ ସମସ୍ତେ କୃଷ୍ଣମୟ ଓ କୃଷ୍ଣ ସ୍ୱରୂପ । ସେହି ତତ୍ତ୍ୱଜ୍ଞାନୀଙ୍କ ସିଦ୍ଧାନ୍ତ ହେଉଛି—ସମଗ୍ର ଜଗତ କୃଷ୍ଣମୟ, କୃଷ୍ଣ ବ୍ୟତୀତ ଅନ୍ୟ କିଛି ନାହିଁ । ଏସବୁ କେବଳ ଦୃଷ୍ଟିର ବିଚାରର ଭେଦ ରୂପେ ଦିଶୁଛି ।"

ଏହାଶୁଣି ଶୌନକ କହିଲେ—"ମହାଶୟ ! ଆପଣ ଯାହା କହିଲେ ମୁଁ କିଛି ବୁଝି ପାରିଲି ନାହିଁ । ଲୋକ ଯଦି ମାଟିର ପାତ୍ର ହୁଏ ତା'ର ମୁଖ୍ୟକାରଣ ହେଉଛି ପୃଥିବୀ । ତେବେ ପୃଥିବୀକୁ ଆତ୍ମା କହିବାରେ ଆପତ୍ତି ଅଛି କି ? ସମସ୍ତ ଦେହ ପଞ୍ଚଭୂତରୁ ଉତ୍ପନ୍ନ, ତେଣୁ ପଞ୍ଚଭୂତ ହିଁ କାରଣ ହୋଇପାରେ ?"

ଶୌନକଙ୍କ ଯୁକ୍ତି ଶୁଣି ମହର୍ଷି ସୂତ କହିଲେ—"ମହାଭାଗ ! ସମସ୍ତ ଦେହ ପଞ୍ଚଭୂତରୁ ଉତ୍ପନ୍ନ, ଏଥିରେ ସନ୍ଦେହ ନାହିଁ ; କିନ୍ତୁ ଏହି ପଞ୍ଚଭୂତ, ତନ୍ମାତ୍ରା ଓ ଇନ୍ଦ୍ରିୟର କାରଣ ହେଉଛି ତ୍ରିବୃତ୍ତି ଅହଙ୍କାର, ଅହଙ୍କାରର କାରଣ ହେଉଛି ମହତତ୍ତ୍ୱ, ମହତତ୍ତ୍ୱର କାରଣ ତ୍ରିଗୁଣାତ୍ମିକା ପ୍ରକୃତି ଏବଂ ଏ ସମସ୍ତ କାରଣର କାରଣ ହେଉଛନ୍ତି କାରଣ ରହିତ କୃଷ୍ଣଚନ୍ଦ୍ର । ସମସ୍ତ କାରଣ ପର୍ଯ୍ୟବସାନ ଭଗବାନ ବାସୁଦେବଙ୍କଠାରେ ସମ୍ପାଦିତ ହୁଏ । ଏବେ ବୁଝନ୍ତୁ, ଯଦି ଶ୍ରୀକୃଷ୍ଣ ହେଉଛନ୍ତି ସମସ୍ତଙ୍କର କାରଣ ଏବଂ ମାଟିରେ ନିର୍ମିତ ସମସ୍ତ ପାତ୍ରକୁ ଯଦି ମୃଣ୍ମୟ ବୁଝାଯାଏ ତେବେ ଏ ସମସ୍ତଙ୍କୁ କୃଷ୍ଣରୂପ ବ୍ୟତୀତ ଅନ୍ୟ କିଛି ବୁଝାଯାଇ ପାରିବ କି ?"

ଏହାଶୁଣି ଗଦ୍‌ଗଦ କଣ୍ଠରେ ଶୌନକ କହିଲେ—"ମହାଶୟ ! ଆପଣ ଏକ ବଡ଼ ସମସ୍ୟାକୁ ସହଜରେ ସମାଧାନ କରି ଦେଲେ । ଆମେ ତ ଏ ସଂସାର ସାଗରରେ ପଡ଼ି ଉବୁଟୁବୁ ହେଉଛୁ, ଏପରି ଗୂଢ଼ ରହସ୍ୟ ବୁଝିବାକୁ କିପରି ସମର୍ଥ ହେବୁ । ଦୟାକରି ଆପଣ କୌଣସି ଏକ ସହଜ ଉପାୟ କୁହନ୍ତୁ ଯାହାଦ୍ୱାରା ଏହି ସଂସାର ସାଗରକୁ ଅନାୟାସରେ ପାର୍ ହୋଇ ଆମେ ଅପର ପାରରେ ପହଞ୍ଚିପାରିବୁ ।"

ଶୌନକଙ୍କ ନିବେଦନ ଶୁଣି ମହର୍ଷି ସୂତଙ୍କ ନେତ୍ରରୁ ଆନନ୍ଦାଶ୍ରୁ ପ୍ରବାହିତ ହେଲା । ସେ କହିଲେ—"ମହାଭାଗ ! ସମୁଦ୍ରକୁ ପାର ହେବା ପାଇଁ ନାନାବିଧ ଉପାୟ ଅଛି । କିଏ କାଠରେ ତ କିଏ ଲୁହାରେ ନିର୍ମିତ ପୋତଦ୍ୱାରା ଯତ୍ନପୂର୍ବକ ସମୁଦ୍ର ପାର ହୋଇଯାଉଛନ୍ତି । କେହି କେହି ସାହସୀ ପୁରୁଷ ହାତରେ ଆହୁଲା ମାରି ପହଁରି ପହଁରି ସମୁଦ୍ର ପାର ହୋଇପାରନ୍ତି । କିନ୍ତୁ ସଂସାର ସାଗରର ଜଳ ସର୍ବଦା ପ୍ରବଳ ଭାବରେ ତରଙ୍ଗାୟିତ ହେଉଥାଏ ; ତେଣୁ ପୋତ ଜଳମଗ୍ନ ହେବାର ସମ୍ଭାବନା ଥାଏ ; କିନ୍ତୁ ଗୋଟିଏ ବସ୍ତୁ ଅଛି ଯାହା କେବେହେଲେ ଜଳମଗ୍ନ ହୁଏ ନାହିଁ ଏବଂ ଯାହାର ଆଶ୍ରୟ ନେଲେ ମନରେ କୌଣସି ସନ୍ଦେହ ଆସେ ନାହିଁ । ସେହି ବସ୍ତୁଟି ସର୍ବଦା ଜଳରେ ଥାଏ । ତାହା ହେଉଛି କମଳ । ଏକ ବଡ଼ କମଳର ଆଶ୍ରୟ ନିଅ, ଯାହା କେବେହେଲେ ଜଳରେ ବୁଡ଼ିବ ନାହିଁ । ଭଗବାନ କୃଷ୍ଣଚନ୍ଦ୍ରଙ୍କ ଚରଣକମଳ ହିଁ ଭବସାଗର ପାର ହେବାର ଆଶ୍ରୟଭୂତ ଶ୍ରେଷ୍ଠ କମଳ । ସେହି ଚରଣ କମଳକୁ ନୌକା ମନେ କରି ତାହାର ଆଶ୍ରୟ ନେଇ ସାଧକ ଗୋଷ୍ପାଦାକୃତି ଜଳାଧାର ସଦୃଶ ମହାନ୍ ସଂସାର ସାଗରକୁ ସହଜରେ ପାର ହୋଇଯାଆନ୍ତି । ସେହି

ପାଦପଦ୍ମ ସାହାଯ୍ୟରେ ସମସ୍ତ ବିପଦକୁ ଅତିକ୍ରମ କରି ପରମପଦରେ ପ୍ରତିଷ୍ଠିତ ହୁଅନ୍ତି । କମଳ ସର୍ବଦା ଜଳରେ ଥାଇ ବି ଯେପରି ଜଳ ସଂସର୍ଗରହିତ ହୋଇଥାଏ, ସେହିପରି ଭଗବଦ୍‌ଭକ୍ତ ଭଗବାନଙ୍କ ଚରଣକମଳର ଆଶ୍ରୟ ନେଇ ସଂସାରରେ ଥାଇ ମଧ୍ୟ ସେଥିରେ ଲିପ୍ତ ହୁଏ ନାହିଁ । ସେ କେବେହେଲେ ଜନ୍ମ ମରଣ ଚକ୍ରରେ ପଡ଼ି ଘୂରିବୁଲେ ନାହିଁ ।

ହେ ମୁନିଗଣ ! ଆପଣମାନଙ୍କର ଜୀବନ ଧନ୍ୟ । ଆପଣମାନେ ଗାର୍ହସ୍ଥ୍ୟ ଜଞ୍ଜାଳଠାରୁ ଦୂରରେ ରହି ଓ ବିଷୟ ଆକର୍ଷଣ ଉପରେ ବିଜୟ ଲାଭ କରି ନିରନ୍ତର ହରି କଥା ରସରେ ନିମଗ୍ନ ଅଛନ୍ତି । ମୋର ଗୁରୁ ଭଗବାନ ଶୁକଦେବ ରାଜା ପରୀକ୍ଷିତଙ୍କ ଶଙ୍କାକୁ ଏହିପରି ସମାଧାନ କରିଥିଲେ । ହଁ ଏହା ପରବର୍ତ୍ତୀ କଥା ଶୁଣନ୍ତୁ । ଶ୍ରୀକୃଷ୍ଣଚନ୍ଦ୍ର ସପ୍ତମ ବର୍ଷ ବୟସରେ ପଦାର୍ପଣ କଲେ । ଏବେ ସେ ବତ୍ସପାଳ ନ ହୋଇ ଗୋପାଳ ରୂପେ ଅଭିହିତ ହେଲେ ।"

ହେ ମୁନିଗଣ ! ଅଘାସୁର ଉଦ୍ଧାର ପ୍ରସଙ୍ଗରେ ମୁଁ ଭଗବାନଙ୍କ ବନକ୍ରୀଡ଼ା ସମ୍ବନ୍ଧରେ କିଛି ସୂଚନା ଦେଲି । ଅଘାସୁରର କଣ୍ଠକୁ କିପରି ରୁଦ୍ଧ କରିଥିଲେ ତାହା ମଧ୍ୟ କହିଲି । ଭଗବାନ ସଖାମାନଙ୍କ ସହିତ କୋମଳ ଦୁର୍ବାଆସ୍ତରଣ ଉପରେ ବସି ବଣଭୋଜି ମଉଜରେ କିପରି ବିଭୋର ହୋଇ ପଡ଼ିଥିଲେ ସେ କଥା କହିଲି । ଲୋକପିତାମହ ବ୍ରହ୍ମା ଗୋପାଳବାଳକ ଓ ବାଛୁରୀଙ୍କୁ ଚୋରାଇ ନେଇଯିବା ପରେ ଭଗବାନ ନିଜେ କିପରି ବାଳକ ଓ ବାଛୁରୀ ରୂପ ଧାରଣ କରି ଲୀଳା କଲେ ସେ ବୃତ୍ତାନ୍ତ ସହିତ ବ୍ରହ୍ମାଙ୍କ ମୋହଭଙ୍ଗ ଓ ବ୍ରହ୍ମସ୍ତୁତିର ସାରକଥା ସଂକ୍ଷେପରେ କହିଲି । ଏହି ସବୁ ଲୀଳାକୁ ଯେ ଶ୍ରଦ୍ଧା ଓ ଭକ୍ତିର ସହିତ ଶୁଣିବେ ତାଙ୍କର ସମସ୍ତ କାମନା ପୂର୍ଣ୍ଣ ହେବ । ସମସ୍ତ କଥାରୁ ଟିକିଏ ଟିକିଏ କରି ମୁଁ ଅତି ସଂକ୍ଷେପରେ କହିଲି ; କିନ୍ତୁ ଏହି କଥାଗୁଡ଼ିକୁ ଶ୍ରଦ୍ଧା ଓ ଭକ୍ତିର ପୁଟ ଦେଇ ନିୟମିତ ଶୁଣିବା ବାଞ୍ଛନୀୟ । ଶ୍ରୀକୃଷ୍ଣଙ୍କ ବାଲ୍ୟଲୀଳାକୁ ପ୍ରାକୃତ ବାଳକଙ୍କ କ୍ରୀଡ଼ା ବୋଲି କେବେହେଲେ ମନେ କରିବେ ନାହିଁ । ବର୍ତ୍ତମାନ୍ ଭଗବାନ ଶ୍ରୀକୃଷ୍ଣ ବାଛୁରୀଙ୍କୁ ଛାଡ଼ି କିପରି ଗାଈ ଚରାଇବାକୁ ଗଲେ ସେହି ଗୋଚାରଣ ଲୀଳା ବିଷୟ କହୁଛି, ଆପଣମାନେ ମନଦେଇ ଶୁଣନ୍ତୁ ।"

## ଛପ୍‌ପୟ

ଦେହ ଆତ୍ମା ସମ୍ବୁଝି ଜୀବ ଜଗମାଁ ହିଂ ଭଟକେ୍ୟା ।
ମୈଂ ମେରୀମହିଁ ଫସେ୍ୟା ମୋହ ଘାଟୀମହିଁ ଅଟକେ୍ୟା ॥
କୃଷ୍ଣ କୃପା ଜବ କରେ ଘଡ଼ା ମାୟା କୋ ଫୂଟେ ।
ପାଓ୍ୱେ ପ୍ରଭୁ କୋ ପ୍ରେମ କାଲ ଜଗ କୋ ଜବ ଛୂଟେ ॥

କହୀ ଅଘାସୁର କୀ କଥା, ମୋହ ନାଶ ଅଜ କୀ ସୁଖଦ ।
ପଢ଼େ ସୁନେ ଜେ ପ୍ରେମ ତେ, କଟେ ସକଲ ତନକୀ ବିପଦ ।।

# ଗୋ-ଚାରଣ ଲୀଳା

ତତଶ୍ଚ ପୌଗଣ୍ଡବୟଃଶ୍ରିତୌ ବ୍ରଜେ
ବଭୂବତୁସ୍ତୌ ପଶୁପାଲସମ୍ମତୌ ।
ଗାଶ୍ଚାରୟନ୍ତୌ ସଖିଭିଃ ସମଂ ପଦୈ—
ର୍ବୃନ୍ଦାବନଂ ପୁଣ୍ୟମତୀବ ଚକ୍ରତୁଃ ।।
(ଶ୍ରୀ ଭା ୧୦ ସ୍କ, ୧୩ ଅ, ୧୫ ଶ୍ଳୋକ)

## ଛପ୍ପୟ

ଅବ ଜବ କଛୁ ହରି ବଡ଼େ ସଖନ ସଙ୍ଗ ଗୋପାଳନ ହିତ ।
ଗୈୟନ ଲୈ ବନ ଜାହିଁ କର୍ୟୋ ବଳଦେବ ସହିତ ଚିତ ।।
କାର୍ତ୍ତିକ ଶୁକ୍ଳା ବିମଳ ଅଷ୍ଟମୀ ଜବହି ଆଇ ।
ଲୈ ଗୈୟନ ହରି ଚଲେ ସଖା ସଙ୍ଗମହିଁ ବଳ ଭାଇ ।।
କୁସୁମିତ କାନନ ଅତି ସୁଖଦ, ପ୍ରବିଶି କରହିଁ କ୍ରୀଡ଼ା ତହାଁ ।
ଖଗ ମୃଗ ବିହରହିଁ ସୁଖ ସହିତ, ଅଳି କମଲନ ଗୁଞ୍ଜେ ଜହାଁ ।।

ନିର୍ଜନ ବନଭୂମିରେ ସ୍ୱଚ୍ଛନ୍ଦ ବିହାର କଲେ ଯେ ସୁଖ ଓ ଆନନ୍ଦ ମିଳେ, ତାହା ଗ୍ରାମର ସଘନ ବସ୍ତିରେ ଓ ଉଚ୍ଚ ଉଚ୍ଚ ଅଟ୍ଟାଳିକା ପରିବୃତ ସହରରେ ରହୁଥିବା ପିଲାମାନେ କେବେହେଲେ କଳ୍ପନା କରିପାରିବେ ନାହିଁ । ମଣିଷର ପ୍ରାକୃତିକ ଜୀବନ ସହିତ ଯେତିକି ଅଧିକ ସଂସର୍ଗ ରହିବ ସେ ସେତିକି ସୌନ୍ଦର୍ଯ୍ୟପ୍ରିୟ, ସରଳ ଓ ନିରାଡ଼ମ୍ବର ଜୀବନପ୍ରିୟ ହେବ । ଜୀବନ ଯେତିକି କୃତ୍ରିମତାର ନିକଟବର୍ତ୍ତୀ ହେବ ଓ କୃତ୍ରିମ ବନ୍ଧନରେ ଆବଦ୍ଧ ହୋଇ ପଡ଼ିବ ସ୍ୱାଭାବିକ ଆନନ୍ଦ ସେତିକି ନଷ୍ଟ ହେବ । କେବଳ ସେତିକି ନୁହେଁ, ତା'ର ସ୍ୱାଭାବିକ ଜ୍ଞାନ, ଧର୍ମ, ସତ୍ୟ, ଅନୁରାଗ, ପ୍ରେମ, ଉଦାରତା ଆଦି ସମସ୍ତ ସଦ୍‌ଗୁଣ ନଷ୍ଟ

ହୋଇଯିବ । ତା'ପରେ ସେ ହେବ ଦମ୍ଭ, ଛଳନା, କପଟ, କୃତ୍ରିମତା, ମିଥ୍ୟା, ଶିଷ୍ଟାଚାର ପ୍ରଭୃତ ଦୁର୍ଗୁଣରେ ଅଧିକାଂଶ । ପ୍ରାକୃତିକ ଜୀବନ ପ୍ରକୃତିର କୋଳରେ ହିଁ କଟାଇବାକୁ ପଡ଼େ । ପ୍ରଭାତ କାଳରେ ଉଦୀୟମାନ ସୂର୍ଯ୍ୟଙ୍କର ଆଭା କିପରି ହୁଏ, ଅସ୍ତକାଳୀନ ରକ୍ତିମା କିପରି ହୁଏ, ଶାନ୍ତ ଏକାନ୍ତ ବୃକ୍ଷଗୁଡ଼ିକର ଝର୍‌ଝର୍ ଶବ୍ଦ କିପରି ଶୁଣାଯାଏ ଏବଂ ହୃଦୟରେ ତା'ର ପ୍ରଭାବ କେତେଦୂର ପଡ଼େ, ଘୋର ବନରେ ନିଜର ଆତ୍ମୀୟସ୍ୱଜନଙ୍କୁ ପାଇଲେ ସ୍ନେହ କିପରି ଉଚ୍ଛୁଳି ପଡ଼େ ଏବଂ ହୃଦୟର ଅବସ୍ଥା କ'ଣ ହୁଏ, ସେସବୁ କଥାରେ କହିଲେ ବୁଝାପଡ଼େ ନାହିଁ । ଏକାନ୍ତରେ ଗାଈ ବାଛୁରି ମୂକ ଭାଷାରେ କେତେ କଥା କହନ୍ତି, ବୃକ୍ଷ କେତେ ସ୍ନେହ କରେ, ସେହି ସ୍ପର୍ଶରେ କେତେ ଆନନ୍ଦ ମିଳେ, ସେ ସବୁର ଅନୁଭୂତି କୋଳାହଳପୂର୍ଣ୍ଣ ନଗରବାସୀ କେବେହେଲେ କଳ୍ପନା କରିପାରିବେ ନାହିଁ । ଆମର ଯେତେ ଅବତାର ହୋଇଛନ୍ତି ସମସ୍ତେ କିଛିକାଳ ବନରେ ଭ୍ରମଣ କରି ଆମକୁ ଏହା ହିଁ ଶିକ୍ଷା ଦେଇଛନ୍ତି । ଭଗବାନ ଶ୍ରୀକୃଷ୍ଣଙ୍କର ବାଲ୍ୟକାଳ ମଧ୍ୟ ବନ ବିହାର ଓ ଗାଈ ବାଛୁରିଙ୍କୁ ଚରାଇବାରେ ଅତିବାହିତ ହୋଇଛି । ସେ ପ୍ରାୟ ବର୍ଷେ ପର୍ଯ୍ୟନ୍ତ ବାଛୁରି ଚରାଇ ତା'ପରେ ଗାଈ ଚରାଇବାକୁ ବଣକୁ ଯାଇଛନ୍ତି ।

ମହର୍ଷି ସୂତ କହିଲେ—"ମୁନିଗଣ ! ଆନନ୍ଦକନ୍ଦ ଶ୍ରୀକୃଷ୍ଣଚନ୍ଦ୍ର କିଛି ଦିନ ବାଛୁରି ଚରାଇଲେ । ଯେତେବେଳେ ସେ ଛ'ବର୍ଷ ବୟସ ଅତିକ୍ରମ କରି ସପ୍ତମ ବର୍ଷରେ ପାଦ ଦେଲେ ସେତେବେଳେ ଭାବିବାକୁ ଲାଗିଲେ—ଏବେ ତ ମୁଁ ଆଉ ଛୋଟ ପିଲା ହୋଇନାହିଁ । ବର୍ତ୍ତମାନ ବଡ଼ ହେଲିଣି, ଗାଈ ଚରାଇବାକୁ ଯିବିନି କାହିଁକି ? ଏହା ଭାବି ଦିନେ ଖାଇବା ସମୟରେ ସେ ମା' ଯଶୋଦାଙ୍କୁ କହିଲେ—ମା, ମୁଁ ତ ଏବେ ବଡ଼ ହେଲିଣି ; ତେଣୁ ଗାଈ ନେଇ ଚରାଇବାକୁ ଯିବି ।"

ଯଶୋଦା ଶ୍ୟାମସୁନ୍ଦରଙ୍କ ମୁଖ ଚୁମ୍ବନ କରି କହିଲେ—"ନା ପୁଅ ନା । ଏବେ ବି ତୁ ବହୁତ ସାନ । ତୁ ଗାଈଙ୍କୁ ସମ୍ଭାଳି ପାରିବୁ ନାହିଁ ।"

କିନ୍ତୁ ଶ୍ରୀକୃଷ୍ଣ ନିଜ କଥା ଉପରେ ଜୋର୍ ଦେଇ କହିଲେ—"ମା ! ତୁ ମୋ' କଥା ମାନ । ମୋ' କଥାରେ ବିଶ୍ୱାସ କର । ମୁଁ ଗାଈଙ୍କୁ ନିଶ୍ଚୟ ସମ୍ଭାଳି ପାରିବି । ବଳଭଦ୍ର ଭାଇ ବି ମୋ' ସାଙ୍ଗରେ ରହିବେ ଆଉ ଗୋପାଳ ବାଳକମାନେ ବି ଥିବେ । ଗାଈ କୁଆଡ଼େ ପଳାଇ ଯାଇ ପାରିବେ ନାହିଁ ।"

ମା' କହିଲେ—"ଦେଖ, କହ୍ନେଇ ! ମୋତେ ତୋର କଥାଗୁଡ଼ାକ ଭଲଲାଗୁ ନାହିଁ । ତୁ ଯାହା କହୁଛୁ ସେଥିପାଇଁ ଜିଦ୍ କରୁଛୁ । ଅନ୍ୟ କାହାରି କଥା ଶୁଣୁନାହୁଁ । ଏବେ ତୁ କାହିଁକି ଏତେ ଅସ୍ଥିର ହେଉଛୁ । ଆଉ ଦୁଇ ବର୍ଷ ବାଛୁରି ଚରାଉଥା । ଗାଈ ତ ତୋତେ ଚରାଇବାକୁ ପଡ଼ିବ । ଗୋପାଳ ପୁଅର ଗାଈ ଚରାଇବା ହେଉଛି ମୌଳିକ କର୍ମ ।"

ଏହାପରେ ମା' ବହୁତ ବୁଝାଇଲେ; କିନ୍ତୁ ଶ୍ରୀକୃଷ୍ଣ ମାନିଲେ ନାହିଁ । କାନ୍ଦିବାକୁ ଲାଗିଲେ । ଖାଇବା ପିଇବା ବନ୍ଦ କରିଦେଲେ । ଧୂଳିରେ ଗଡ଼ିଲେ । ମାତା ସ୍ନେହରେ ଉଠାଇ ଆଣିଲେ ଆଉ ଧୂଳି ଝାଡ଼ିଦେଇ କହିଲେ—"ଦେଖ, କାଲି ତୋ' ବାପାଙ୍କୁ ମୁଁ କହିବି । ଖାଲି ତ କହିଦେଲେ ହେବନି । ପ୍ରଥମେ ତୁ ଗାଈ ଚରାଇବାକୁ ଯିବୁ ; ତେଣୁ ଶୁଭ ମୁହୂର୍ତ୍ତ ଦେଖିବି, ଉତ୍ସବ କରିବି ଏବଂ ତୋ' ବାପା ଦାନ ଦକ୍ଷିଣା ଦେବେ । ଗୋପାଳ ବାଳକମାନଙ୍କୁ ଖାଇବାକୁ ଦେବି । ତା'ପରେ ବଡ଼ ଧୂମଧାମରେ ତୋତେ ଗାଈଙ୍କ ପଛରେ ପଠାଇବି ।"

ଶ୍ୟାମସୁନ୍ଦର ପ୍ରସନ୍ନ ହୋଇ କହିଲେ—"ମା' ଶୀଘ୍ର ମୁହୂର୍ତ୍ତ ଠିକ୍ କରି ଦେ ।"

ମା' ଖୁସି ହୋଇ କହିଲେ—"ଆରେ କହ୍ନେଇ ! ତୁ ତ ବାୟାଟେ । ମୁହୂର୍ତ୍ତ ସ୍ଥିର କରିବା କ'ଣ ମୋ' ହାତରେ ଅଛି ? ପଣ୍ଡିତ ମହାଶୟ ତୋର ଜାତକ ଓ ପାଞ୍ଜି ଦେଖି ଯେବେ ଦିନ ସ୍ଥିର କରିବେ ସେହିଦିନ ଏସବୁ କାମ ହେବ ।"

ଶ୍ୟାମସୁନ୍ଦର ଖୁସି ହୋଇଗଲେ । ମା' ଯେ ବାପାଙ୍କୁ ଏସବୁ କଥା କହିବେ ସେଥିରେ ତାଙ୍କର ସନ୍ଦେହ ରହିଲା ନାହିଁ । ଦ୍ୱିତୀୟ ଦିନ ଯଶୋଦା ଏକାନ୍ତରେ ନନ୍ଦଙ୍କୁ କହିଲେ—"ଶୁଣୁଛ, କହ୍ନେଇ ଗାଈ ଚରାଇବାକୁ ଯିବ ବୋଲି ଜିଦ୍ କରୁଛି । ମୁଁ ବହୁତ ବୁଝେଇଲିଣି; କିନ୍ତୁ ସେ ମୋ' କଥା ମାନୁନାହିଁ । ପଣ୍ଡିତଙ୍କୁ ଡକାଇ ଭଲ ଦିନଟିଏ ସ୍ଥିର କରି ତାକୁ ଗୋ'ଗ୍ଧରଣ କାର୍ଯ୍ୟରେ ନିଯୁକ୍ତ କରିଦିଅ ।"

ନନ୍ଦ କହିଲେ—"ଏତେ ଶୀଘ୍ର ଏସବୁ କରିବାର କି ଆବଶ୍ୟକତା ଅଛି ? ଏବେ ବି କହ୍ନେଇ ବହୁତ ଛୋଟ ପିଲା !"

ଯଶୋଦା କହିଲେ—"ଯଦି ସେ ନ ମାନୁଛି ତେବେ କ'ଣ କରାଯିବ ? ବଳରାମ ତ ସାଙ୍ଗରେ ରହିବ ; ତେଣୁ ଚିନ୍ତା କରିବାର କିଛି ନାହିଁ । ପିଲାମାନଙ୍କ ମନକୁ ଭାଙ୍ଗିଦେବା ଉଚିତ ହେବନି ।"

ନନ୍ଦ କହିଲେ—"ଯଦି ମା' ପୁଅ ଏକମତ ହୋଇଯାଇଛ ତେବେ ମୋତେ ପଚାରିବାର କି ଆବଶ୍ୟକତା ଥିଲା ? ମୁଁ ପଣ୍ଡିତଙ୍କୁ ଡକାଇ ଆଜି ହିଁ ଶୁଭଦିନ ସ୍ଥିର କରିଦେଉଛି । ଏହା କହି ନନ୍ଦ ଚଉପାଢ଼ିକୁ ଚାଲିଗଲେ । ଶ୍ରୀକୃଷ୍ଣ ଲୁଚି ଲୁଚି ସବୁ କଥା ଶୁଣୁଥିଲେ । ସେ ଦୌଡ଼ିଯାଇ ମା'ଙ୍କୁ କୁଣ୍ଢାଇ ପକାଇଲେ ଆଉ ଉତ୍ସୁକ ହୋଇ କହିଲେ—ମା, ମା, କେଉଁ ଦିନଟି ସ୍ଥିର ହେଲା ?"

ମା' ଶ୍ୟାମର ମୁହଁରେ ପଡ଼ିଥିବା ବାଳ ଆଡ଼େଇ ଦେଇ କହିଲେ—"ଆରେ ବାୟା ! ଏବେ ଦିନ କେଉଁଠି ସ୍ଥିର ହେଲା ? ତୋ' ବାପା ଅନୁମତି ଦେଲେ । ଆଜି ପଣ୍ଡିତ ମହାଶୟ ଯଜ୍ଞ କରିବାକୁ ଆସିବେ ଏବଂ ତୋର ଗୋ-ଗ୍ଧରଣ ପାଇଁ ଦିନ ସ୍ଥିର କରିଦେବେ ।"

ଏହା ଶୁଣି ଶ୍ୟାମସୁନ୍ଦର ବଡ଼ ପ୍ରସନ୍ନ ହେଲେ । ଉତ୍ସୁକତାର ସହିତ ସେ ଗୋ-ଚାରଣର ଶୁଭଦିନକୁ ଅପେକ୍ଷା କରି ରହିଲେ । ପଣ୍ଡିତ ମହାଶୟ ଯଜ୍ଞ କାର୍ଯ୍ୟ ଶେଷ କରିବା ପରେ ନନ୍ଦଙ୍କ ଅନୁରୋଧରେ ପାଞ୍ଜି ଦେଖିଲେ ଏବଂ ବହୁ ସମୟ ଗଣନା କରି କହିଲେ—"ଆଗାମୀ କାର୍ତ୍ତିକ ଶୁକ୍ଳାଷ୍ଟମୀ ଯାହାକୁ ବହୁଳାଷ୍ଟମୀ କହନ୍ତି ସେହି ଦିନଟି ଅତି ଉତ୍ତମ ତିଥି । ସେଦିନ କୃଷ୍ଣ ଗୋଚାରଣ ଆରମ୍ଭ କରିବେ ।" ଶ୍ରୀକୃଷ୍ଣ ପଣ୍ଡିତଙ୍କ ସିଦ୍ଧାନ୍ତ ଶୁଣି ଖୁସି ହେଲେ ଏବଂ ମା'ଙ୍କ କୋଳରେ ବସି ଆଙ୍ଗୁଳି ଗଣି କହିଲେ—ମା' ବହୁଳାଷ୍ଟମୀ ଆହୁରି ସାତ ଦିନ ବାକିଅଛି ।

ମା' କହିଲେ—"ପୁଅ ! କଥା ମୋ' ଆୟତ୍ତରେ ନାହିଁ । ପଣ୍ଡିତ ମହାଶୟ ଯାହା କହିଲେ ତାହା ମାନିବାକୁ ହେବ । ଆମେ ସମସ୍ତେ ଶାସ୍ତ୍ରର ଅଧୀନ । ଏତେଦିନ ତ ଗଲାଣି, ଆଉ ସାତୋଟି ଦିନ ଅପେକ୍ଷା କର । ଗାଈଙ୍କୁ ପୂଜା କରିବ, ବ୍ରାହ୍ମଣମାନଙ୍କୁ ଭୋଜନ ଓ ଦକ୍ଷିଣା ଦେବ ଏବଂ ତୋର ସାଙ୍ଗସାଥିଙ୍କୁ ଖୁଆଇବୁ । ତୋତେ ଗୋପାଳ ବେଶରେ ସଜାଇବୁ ଏବଂ ତେବେ ଯାଇ ତୋତେ ଗାଈ ଚରାଇବାକୁ ପଠାଇବୁ ।"

ମହର୍ଷି ସୂତ କହିଲେ—"ମୁନିଗଣ ! ଶାସ୍ତ୍ର ତ ଭଗବାନଙ୍କର ବଚନ ; ତେଣୁ ଶ୍ରୀକୃଷ୍ଣଙ୍କୁ ମା'ଙ୍କ କଥା ମାନିବାକୁ ପଡ଼ିଲା । ଅତି ଉତ୍ସୁକ ହୋଇ ସେ ସାତୋଟି ଦିନ କଟାଇଲେ । ଏହି ସାତଦିନ ସେ ଅହୋରାତ୍ର କେବଳ ଗାଈଙ୍କ ଚିନ୍ତା କରିବାକୁ ଲାଗିଲେ । ଗାଈଙ୍କ ପାଖକୁ ଯାଇ ତାଙ୍କୁ ଆଦର କରିବା, ଗୋବର ସଫା କରିବା ଏବଂ କିପରି ସେମାନଙ୍କର ସନ୍ତତି ବଢ଼ିବ ସେକଥା ବିଚାର କଲେ । ସେଥିପାଇଁ ଆଜିକାଲି ସେହି ସାତଦିନ ଗୋ'ସପ୍ତାହ ରୂପେ ପାଳିତ ହେଉଛି । ଗୋବର୍ଦ୍ଧନ ପୂଜା ଭ୍ରାତୃ ଦ୍ୱିତୀୟାରୁ ଏକ ସପ୍ତାହ ଆରମ୍ଭ ହୁଏ ଏବଂ ଗୋପାଷ୍ଟମୀ ଦିନ ସମାପ୍ତ ହୁଏ ।"

ଏହିପରି ଅପେକ୍ଷା କରିବା ଭିତରେ ଶୁକ୍ଳାଷ୍ଟମୀ ଦିନଟି ଆସିଲା । ପୂର୍ବଦିନ ସାରାରାତି ଉଜାଗର ରହି ଶ୍ରୀକୃଷ୍ଣ ମଝିରେ ମଝିରେ ଯାଇ ମା'ଙ୍କୁ ପଚାରିଲେ—"କ'ଣ ଏପର୍ଯ୍ୟନ୍ତ ସକାଳ ହୋଇନି ?"

ମା' କହିଲେ—"କହ୍ନେଇ ! ଆଜି କ'ଣ ତୋତେ ନିଦ ମାଡୁନାହିଁ । ଯା, ଶୋଇପଡ଼ିବୁ ଯା' । ଏବେ ସକାଳ ହେବାପାଇଁ ବହୁତ ଡେରି ଅଛି; କିନ୍ତୁ ଶ୍ରୀକୃଷ୍ଣଙ୍କ ଆଖିକୁ ନିଦ ଆସୁ ନ ଥାଏ । ଭାଗବତ ସେ ଗାଈଙ୍କ କଥା ଚିନ୍ତା କରିବାକୁ ଲାଗିଲେ ।"

ସକାଳ ହେଲା । ମା' ଯଶୋଦା ଉତ୍ସବର ପ୍ରସ୍ତୁତି ଆରମ୍ଭ କଲେ । ସାରାଘରେ, ଦୁଆର ଓ ଝରକାରେ ତୋରଣ କଲେ ଓ ଅମ୍ବପତ୍ର ବାନ୍ଧିଲେ । ଅମ୍ବପତ୍ରର ମାଳା ଝୁଲାଇଦେଲେ । ଗାଈଙ୍କୁ ଭଲଭାବରେ ସଫାସୁତୁରା କଲେ । ଶିଙ୍ଗରେ ଲହୁଣୀ ଲଗାଇଲେ ଓ ମୁଣ୍ଡରେ ମୁକୁଟ ବାନ୍ଧିଦେଲେ । ବେକରେ ସୁନାମାଳୀ, ପାଦରେ ଘୁଙ୍ଗୁର ଓ ପିଠିରେ

ନୂଆ ଛିଟ ବସ୍ତ୍ର ପକାଇ ଗାଈଙ୍କୁ ସଜାଇଲେ । ଗାଈଙ୍କୁ ସଜାଇ ସାରିବା ପରେ ଯଶୋଦା ଶ୍ରୀକୃଷ୍ଣ ହାତରେ ସେମାନଙ୍କୁ ପୂଜା କଲେ । ହଜାରେ ଗାଈ ବ୍ରାହ୍ମଣଙ୍କୁ ଦାନ ଦେଲେ । ଭୋଜନ ପରେ ବ୍ରାହ୍ମଣମାନଙ୍କୁ ଦକ୍ଷିଣା ଦେଲେ । ବ୍ରାହ୍ମଣମାନେ ଶ୍ରୀକୃଷ୍ଣଙ୍କୁ ଆଶୀର୍ବାଦ ଦେଇ ବିଦାୟ ନେଲେ । ଏହାପରେ ଗୋପାଳ ବାଳକମାନଙ୍କ ସହିତ ଶ୍ରୀକୃଷ୍ଣ ଭୋଜନ କଲେ । ଯଶୋଦା ଶ୍ରୀକୃଷ୍ଣଙ୍କୁ ସଜାଇ ଦେଲେ ଏବଂ ଶ୍ରୀକୃଷ୍ଣ ପୀତାମ୍ବର ପିନ୍ଧି, ଅଣ୍ଟାରେ ମୁରଲୀ ଖୋସି ସାଙ୍ଗମାନଙ୍କ ସହିତ ଗାଈ ଚରାଇବାକୁ ବାହାରିଗଲେ ।

ମା'ଙ୍କ ହୃଦୟ କାନ୍ଦି ଉଠିଲା । ଆଖିରୁ ଅଶ୍ରୁଧାର ପ୍ରବାହିତ ହେଲା । କୃଷ୍ଣ ଯେତେବେଳେ ବାଛୁରୀଙ୍କୁ ନେଇ ଏଇ ଆଖପାଖରେ ଚରାଉଥିଲେ ସେତେବେଳେ ଯଶୋଦା ମଝିରେ ମଝିରେ ଯାଇ ଦେଖିଆସୁଥିଲେ ; କିନ୍ତୁ ଗାଈଙ୍କୁ ବହୁତ ଦୂର ନେଇ ଚରାଇବାକୁ ପଡ଼ିବ । କେବେ କେବେ ଚାରି ପାଞ୍ଚକୋଶ ଗାଈଙ୍କ ପଛରେ ଯିବାକୁ ହୁଏ ଏବଂ ସନ୍ଧ୍ୟାବେଳକୁ ଘରକୁ ଫେରି ଆସିବାକୁ ପଡ଼େ । ମୋର ଏହି ଛୋଟ ପିଲାଟାର ମୁହଁ ଖରାରେ ଝାଉଁଳି ପଡ଼ିବ । ପିଲାଟା ଏତେ ଜିଦ୍‌ଖୋର ଯେ କାହାରି କଥା ଶୁଣୁନାହିଁ । ଏହିପରି ଭାବି ଯଶୋଦାଙ୍କ ଆଖିରେ ଲୁହ ଆସିଗଲା । କାନ୍ଦି କାନ୍ଦି ସେ ବଳଦେବଙ୍କୁ ଛାତିରେ ଚାପି ଧରି କହିଲେ—"ପୁଅ ବଳଦେବ ! ଦେଖ୍ ତୁ ବୟସରେ ଓ ବଳରେ ବଡ଼ । କୃଷ୍ଣର ଦେଖାଶୁଣା କରିବୁ । ସେ ବଡ଼ ଚଞ୍ଚଳ । କୌଣସି ବଡ଼ ଗଛକୁ କି ଡାଳ ଅଗକୁ ଯେପରି ନ ଚଢ଼େ, ଅନ୍ଧାରୁଆ କୂଅକୁ ଚାହିଁ ଓ ଆ ନ କରେ ଅଥବା କଙ୍କରିଲା ଭୂମିରେ ବହୁତ ଦୌଡ଼ାଦୌଡ଼ି ନ କରେ କି କଣ୍ଟା ଥିବା ଜାଗାକୁ ନ ଯାଏ, ଏସବୁ ପ୍ରତି ଦୃଷ୍ଟି ଦେବୁ । ମୁଁ କହିଲି ଜୋତା ପିନ୍ଧି ବଣକୁ ଯା; କିନ୍ତୁ ସେ ବଡ଼ ସାନ କଥା ମାନିବା ଆଦୌ ଶିଖି ନାହିଁ । ମୋତେ ଆହୁରି କହୁଛି—ଗାଈ ତ ଜୋତା ପିନ୍ଧୁ ନାହାନ୍ତି । ଗାଈ ଯଦି ଖାଲି ପାଦରେ ଯିବେ ମୁଁ କିମିତି ଜୋତା ପିନ୍ଧିବି !

ଶ୍ରୀକୃଷ୍ଣର ସବୁକଥା ମୋତେ ବିଚିତ୍ର ପରି ଲାଗୁଛି । ମୋତେ ତ ଖାତିର କରୁନାହିଁ । ତୋତେ ଟିକିଏ ସେ ଡରେ । ତୁ ସବୁବେଳେ ତାକୁ ପାଖରେ ରଖିବୁ । କେବେହେଲେ ତାକୁ ନିଜଠାରୁ ଅଲଗା କରିବୁ ନାହିଁ । ଏହା କହୁ କହୁ ମା' ଯଶୋଦାଙ୍କ କଣ୍ଠ ଅବରୁଦ୍ଧ ହୋଇଗଲା । ସେ ମୂର୍ଚ୍ଛିତ ହୋଇ ମାଟିରେ ପଡ଼ିଗଲେ । ବଳଦେବ ଯଶୋଦାଙ୍କୁ ତଳୁ ଉଠାଇଲେ ଆଉ କହିଲେ—"ମା' ! ତୁମେ ଆଦୌ ଚିନ୍ତା କରନାହିଁ । କୃଷ୍ଣଙ୍କୁ ମୁଁ ଜୀବନ ବାଜି ଲଗାଇ ରକ୍ଷା କରିବି । ଶ୍ରୀକୃଷ୍ଣ ମଧ୍ୟ ମା'ଙ୍କୁ ଆଶ୍ୱାସନା ଦେଇ ବଳଦେବ ଓ ଗୋପାଳ ବାଳକମାନଙ୍କ ସହିତ ବଂଶୀ ବଜାଇ ଗାଈଙ୍କ ପଛରେ ଚାଲିଲେ । ଶ୍ରୀକୃଷ୍ଣ ନିଜର ପାଦ ଚିହ୍ନରେ ବୃନ୍ଦାବନର ପବିତ୍ର ଭୂମିକୁ ଅଧିକ ପବିତ୍ର କରିଦେଲେ । ବିଶ୍ୱବ୍ରହ୍ମାଣ୍ଡରେ ବୃନ୍ଦାବନ ହେଉଛି ଅନୁପମ ସ୍ଥାନ । ବୃନ୍ଦାବନର ଅଧିବାସୀ ସେଥିପାଇଁ ଗର୍ବ କରନ୍ତି । ନାସ୍ତିକାର

ବକ୍ଷସ୍ଥଳରେ ନିଜ ଚରଣ ସ୍ଥାପନ କଲେ ଯେପରି ନାୟିକାର ସମସ୍ତ ଶରୀର ରୋମାଞ୍ଚିତ ହୋଇଉଠେ ସେହିପରି ଧ୍ୱଜ, ଅଙ୍କୁଶ, ବଜ୍ର ଓ କମଳ ଚିହ୍ନରେ ଚିହ୍ନିତ ଶ୍ରୀକୃଷ୍ଣଙ୍କ ପାଦଚିହ୍ନରେ ଦେବୀ ବସୁନ୍ଧରା ରୋମାଞ୍ଚିତ ହୋଇଉଠିଲେ । ବୃନ୍ଦାବନର ରଜମୟୀ ଭୂମିରେ କେବେ କେବେ ସେହି ଚରଣ ଚିହ୍ନ ପ୍ରକଟିତ ହୁଏ । କେବଳ ଭାଗ୍ୟଶାଳୀ ଲୋକେ ତାହାକୁ ଚର୍ମ ଚକ୍ଷୁରେ ପ୍ରତ୍ୟକ୍ଷଭାବେ ଦେଖିବାର ସୁଯୋଗ ଲାଭ କରନ୍ତି ।

ଭଗବାନ ଶ୍ରୀକୃଷ୍ଣ ଏ ପର୍ଯ୍ୟନ୍ତ ବତ୍ସପାଳ ଥିଲେ । କାର୍ତ୍ତିକ ଶୁକ୍ଳ ଅଷ୍ଟମୀଠାରୁ ସେ ଗୋପାଳ ହୋଇଗଲେ । ସେଥିପାଇଁ ଲୋକସାଧାରଣରେ ସେହି ଅଷ୍ଟମୀ ତିଥିଟି 'ଗୋପାଷ୍ଟମୀ' ନାମରେ ଖ୍ୟାତି ଲାଭ କରିଛି । ସେହି ଅଷ୍ଟମୀ ଦିନ ଗୋପାଳମାନେ ଗୋବର୍ଦ୍ଧନ ଓ ଗାଈଙ୍କୁ ବିଶେଷଭାବେ ଧୂମ୍‌ଧାମର ସହିତ ପୂଜା କରନ୍ତି । ସେହିଦିନଠାରୁ ଶ୍ରୀକୃଷ୍ଣ 'ଗୋପାଳ' ନାମରେ ପରିଚିତ ହୋଇଛନ୍ତି ।

ପ୍ରାତଃକାଳରେ ଶ୍ୟାମସୁନ୍ଦର ନିତ୍ୟକର୍ମ ସାରି ଗୋପାଳ ବାଳକ ଓ ବଳଦେବଙ୍କ ସହିତ ଗାଈଙ୍କୁ ନେଇ ବାହାରି ଯାଉଥିଲେ । ଗାଈଙ୍କୁ ଚରାଇବା ପାଇଁ ନିକଟବର୍ତ୍ତୀ ବଣରେ ବହୁଦୂର ପର୍ଯ୍ୟନ୍ତ ଯାଉଥିଲେ । ମା' ଯଶୋଦା ସେତେବାଟ ପର୍ଯ୍ୟନ୍ତ ଦୁଇପହରେ ଶ୍ରୀକୃଷ୍ଣଙ୍କ ପାଇଁ ଖାଇବାକୁ ନେଇଯାଉଥିଲେ । ରୋଟି, ଡାଲି, ଶାଗ, ଦୁଧ, ଦହି ସହିତ ପିଇବା ପାଣି ବି ନେଉଥିଲେ । ସାଙ୍ଗରେ ମଧ୍ୟ କେତେକ ଦାସୀ ଯାଉଥିଲେ । ଶ୍ୟାମସୁନ୍ଦରଙ୍କୁ ବଣରେ ଦେଖିବା ପାଇଁ ଯଶୋଦା ସର୍ବଦା ଲାଳାୟିତ ହେଉଥିଲେ । ସେଥିପାଇଁ ସେ ପ୍ରତିଦିନ ବଣକୁ ଯାଉଥିଲେ ଏବଂ ପିଲାମାନଙ୍କ ସହିତ ଶ୍ୟାମସୁନ୍ଦରଙ୍କୁ ଖୁଆଉଥିଲେ । ବାରମ୍ବାର ଶ୍ୟାମଙ୍କୁ ଗାଢ଼ ଆଲିଙ୍ଗନ କରି ଫେରି ଆସୁଥିଲେ ଏବଂ ସନ୍ଧ୍ୟାକାଳକୁ ଅପେକ୍ଷା କରି ରହୁଥିଲେ । ଟିକିଏ ଡେରି ହେଲେ ତାଙ୍କ ମନରେ ନାନା-ପ୍ରକାର ଶଙ୍କା ଜାତ ହେଉଥିଲା । ସେ ବ୍ୟାକୁଳ ହୋଇପଡ଼ୁଥିଲେ । ଅତ୍ୟଧିକ ସ୍ନେହହେତୁ ଯଶୋଦା ପଦେ ପଦେ ଶଙ୍କା କରୁଥିଲେ । କାରଣ ପ୍ରେମରେ ଶଙ୍କା ସବୁବେଳେ ଲାଗି ରହିଥାଏ । ସେଥିପାଇଁ ପ୍ରେମର ଗତିକୁ ସର୍ପର ଗତି ପରି କୁଟିଳ ବୋଲି କୁହାଯାଇଛି । ପ୍ରଭୁ ଶ୍ୟାମସୁନ୍ଦର ସମସ୍ତଙ୍କୁ ଆନନ୍ଦ ଦେଉଥିଲେ । ମନ୍ଦ ମନ୍ଦ ହାସ୍ୟପୂର୍ଣ୍ଣ ଅଧରରେ ମୁରଲୀ ବଜାଇ ଶ୍ରୀକୃଷ୍ଣ ଯେତେବେଳେ ଗୋପାଳବାଳକମାନଙ୍କ ସହିତ ଗାଈଙ୍କ ପଛରେ ବ୍ରଜପୁରକୁ ଆସୁଥିଲେ ସେତେବେଳେ ତାଙ୍କର ସେହି ଦେବଦୁର୍ଲ୍ଲଭ ଦର୍ଶନ ପାଇ ବ୍ରଜବାସୀମାନେ ସାରାଦିନର କ୍ଳାନ୍ତି ଓ ଶ୍ରାନ୍ତି ଭୁଲିଯାଉଥିଲେ ।

ମହର୍ଷି ସୂତ କହିଲେ—"ମୁନିଗଣ ! ଶ୍ୟାମସୁନ୍ଦର ଏହିପରି ଗୋପାଳ ବେଶ ଧାରଣ କରି ପ୍ରତିଦିନ ନାନାଭାବରେ ବିହାର କରିବାକୁ ଲାଗିଲେ । ବ୍ରଜବାସୀମାନଙ୍କୁ ନାନାପ୍ରକାର କ୍ରୀଡ଼ାଦ୍ୱାରା ଶ୍ରୀକୃଷ୍ଣ କିପରି ସୁଖ ଓ ସନ୍ତୋଷ ପ୍ରଦାନ କରିଥିଲେ ତାହା ମୁଁ ବର୍ଣ୍ଣନା କରୁଛି ।"

## ଛପ୍‌ପୟ

କୋମଳ କଣଳୟ ଅରୁଣ ବରୁଣ ଶାଖାରେ ଝୁଙ୍କରେ ।
କୃଷ୍ଣ ଓର ବଳ ଚରଣ ଛୁଇଁ ଜନ୍ମ ବୃକ୍ଷ ସକ୍ରିତରେ ॥
ଭେଟ୍ୟା ଦେଖେ କରେ ସଫଳ ଜୀବନ ଧ୍ୟେ ପାଦପ ।
ବୋଲେ ବଲରେ ଶ୍ୟାମ କର୍‌ଯ୍ୟୋ କା ଇନନେ ଜପ ତପ ॥
ତୁମହୁଁ ଅଛି ଅନୁପମ ସମୃଦ୍ଧି, ଝୁଙ୍କ ଝୁଙ୍କରେ ସ୍ୱାଗତ କରେଁ ।
ପତ୍ର, ପୁଷ୍ପ, ଫଳ ନମ୍ର ହ୍ୱେଁ, ସବତବ ପଦତଳମହୁଁ ଧରେଁ ॥



## ଭଗବାନଙ୍କ ଭ୍ରାତୃଭକ୍ତି

ଧନ୍ୟେୟମଦ୍ୟ ଧରଣୀ ତୃଣବୀରୁଧସ୍ତ୍ୱତ୍
ପାଦସ୍ପୃଶୋ ଦ୍ରୁମଲତାଃ କରଜାଭିମୃଷ୍ଟାଃ ।
ନଦ୍ୟୋଽଦ୍ରୟଃ ଖଗ ମୃଗାଃ ସଦୟାବଲୋକୈ-
ର୍ଗୋପ୍ୟୋଽନ୍ତରେଣ ଭୁଜୟୋରପି ଯତ୍ସ୍ପୃହା ଶ୍ରୀଃ ॥

(ଶ୍ରୀ ଭା ୧୦ ସ୍କ, ୧୫ ଅ, ୮ ଶ୍ଳୋକ)

## ଛପ୍‌ପୟ

ଅଲିଗନ ଗୁନ ଗୁନ କରେଁ ସୁୟଶ ତୁମରେ ଜନୁ ଗାଓଁ ।
ମୁନି ଜନ ବେଶ ଛପାଇ ଭ୍ରମର ବନି ଚରନନ ଆଓଁ ॥
ଅଛଥି ଅଲୌକିକ ଜାନି ପ୍ରେମରେ କେକୀ ନାଚେଁ ।
ତକତ ଚକତ କର ଦୃଷ୍ଟି ପ୍ରଣୟ ରସ ହରନୀ ଯାଚେ ॥
କଳକଣ୍ଠନିତେ କୋକିଳା, କୁଜି କୁଜି କୌତୁକ କରହୁଁ ।
ରୂପ ମାଧୁରୀ ତବ ସୁଖଦ, ଜୀବ ନେତ୍ର ରନ୍ଧ୍ରନ ଭରହୁଁ ॥

ଆମ୍ଭେ ଯେତେବେଳେ ନିଜ ସମ୍ବନ୍ଧରେ କିଛି କହିବା ପାଇଁ ଇଚ୍ଛା କରୁ ଅଥବା ନିଜର ସମ୍ପର୍କୀୟମାନଙ୍କ ସମ୍ବନ୍ଧରେ କିଛି କହୁ, ସେତେବେଳେ କଥାଟାକୁ ବହୁତ ଘୁରେଇ ଫେରେଇ କହୁଥାଉ । ଅନେକ ଏକ ସଙ୍ଗରେ ବସି ଖାଉଥିବାବେଳେ ଯାହାର ଅଧିକ କିଛି ଦରକାର ହୁଏ, ସେ ନିଜ ପାଖରେ ବସିଥିବା ଲୋକକୁ ଦେଖାଇ କହେ, ଏ ବାବୁଙ୍କୁ

ମିଠେଇ ଦିଅ । ଦେବାଳୟକ ତାଙ୍କୁ ଦେଇସାରି କହିବା ଲୋକଙ୍କୁ ଯାଚିଲେ ସେ କହନ୍ତି—"ହଉ, କହୁଛ ଯଦି ଦିଅ । ସେହିପରି ଭଗବାନ ଯେତେବେଳେ ନିଜର ସ୍ତୁତି ଶୁଣିବା ପାଇଁ ଇଚ୍ଛା କରନ୍ତି ସେତେବେଳେ ବଳଦେବଙ୍କ ମୁଖରେ ତାହା କରାଇଥାନ୍ତି । ଐଶ୍ୱର୍ଯ୍ୟ ଅବସ୍ଥାରେ ତ ବ୍ରହ୍ମାଦି ଦେବଗଣ ହାତଯୋଡ଼ି ସ୍ତୁତି କରନ୍ତି ; କିନ୍ତୁ ବୃନ୍ଦାବନରେ ଯେଉଁଠି ସମସ୍ତେ ଶ୍ରୀକୃଷ୍ଣଙ୍କ ସହିତ ସଖ୍ୟଭାବ ପୋଷଣ କରୁଛନ୍ତି ସେଠାରେ ତାଙ୍କୁ କିଏ ସ୍ତୁତି କରିବ ? ବୃନ୍ଦାବନରେ ସମସ୍ତେ କହନ୍ତି—"କହ୍ନେଇ ! ତୁ ବଡ଼ ଠକ ।" ଏହା ହିଁ ସ୍ତୁତି । ଭଗବାନ ଜାଣିଲେ, ଏଠାରେ ଯଦି କେହି ମୋର ସ୍ତୁତି କରୁ ନାହାନ୍ତି, ତେବେ ମୋର ସ୍ତୁତି ମୁଁ ନିଜେ କରିବି । ମୁଁ ଯାହା ସ୍ତୁତି କଲେ ବି ତାହା ପ୍ରକାରାନ୍ତରେ ମୋ'ର ସ୍ତୁତି ହେବ । ଆକାଶରେ ଜଳ ଯେଉଁଠି ବର୍ଷା ହେଲେ ବି ତାହା ବୁଲି ବୁଲି ଶେଷରେ ସମୁଦ୍ରରେ ଯାଇ ପଡ଼େ । କାରଣ, ଜଳର ଭଣ୍ଡାର ହେଉଛି ସାଗର । ସେହିପରି ଯାହାର ସ୍ତୁତି କଲେ ବି ତାହା ଭଗବାନଙ୍କ ସ୍ତୁତି ରୂପେ ଗୃହୀତ ହୁଏ । କାରଣ, ସମସ୍ତଙ୍କର ସ୍ତୁତିଯୋଗ୍ୟ ହେଉଛନ୍ତି ଭଗବାନ ଶ୍ରୀକୃଷ୍ଣ ।

ମହର୍ଷି ସୂତ କହିଲେ—"ମୁନିଗଣ ! ଶ୍ରୀକୃଷ୍ଣ ବତ୍ସପାଳରୁ ଗୋପାଳ ହେଲେ । ଦିନକର କଥା । ଭଗବାନ ସକାଳୁ ଉଠିଲେ । ବନକୁ ନେବା ପାଇଁ ଗାଈମାନଙ୍କୁ ଖୋଲି ଦେଲେ । ଗାଈଗୁଡ଼ିକ ଧୀରେ ଧୀରେ ଚାଲିଲେ । ଶ୍ରୀକୃଷ୍ଣ ବଂଶୀ ବଜାଇ ବଳରାମ ଓ ଅନ୍ୟ ବାଳକମାନଙ୍କ ସହିତ ଗାଈଙ୍କ ପଛେ ପଛେ ଚାଲିଲେ । ବନବିହାର କରିବା ଉଦ୍ଦେଶ୍ୟରେ ଶ୍ରୀକୃଷ୍ଣ ସେଦିନ ସମସ୍ତଙ୍କୁ ଏକ ପରମ ପୁଣ୍ୟପ୍ରଦ ବନ ପ୍ରଦେଶକୁ ନେଇଗଲେ । ଗୋପବାଳକମାନେ ଶ୍ରୀକୃଷ୍ଣଙ୍କ ଅଦ୍ଭୁତ କାର୍ଯ୍ୟକଳାପ ବିଷୟରେ ଗପସପ ହୋଇ ଯାଉଥିଲେ । ଶ୍ୟାମସୁନ୍ଦର ମୁରୁକି ମୁରୁକି ହସି ସେମାନଙ୍କ ଆଡ଼କୁ ଚାହୁଁଥିଲେ । ସେହି ବନଟି ଫଳ ଓ ପୁଷ୍ପଯୁକ୍ତ ବୃକ୍ଷଲତା ପରିପୂର୍ଣ୍ଣ ଏକ ବଡ଼ ମନୋହର ସ୍ଥାନ ଥିଲା । କୋମଳ ଘାସରେ ପୂର୍ଣ୍ଣ ବନଭୂମି ଗାଈମାନଙ୍କ ପକ୍ଷରେ ଅତୀବ ସୁଖକର ହୋଇଥିଲା । ପାଖରେ ଥିଲା କାଳନ୍ଦୀର ନିର୍ମଳ ଜଳ ; ତେଣୁ ପାଣି ପିଇବାରେ କୌଣସି ଅସୁବିଧା ନ ଥିଲା । ଗାଈଗୁଡ଼ିକ ଆନନ୍ଦରେ ଚରିବାକୁ ଲାଗିଲେ । ଶ୍ୟାମସୁନ୍ଦର ସଖାମାନଙ୍କ ସହିତ ଏଣେ ତେଣେ ବୁଲି ବୁଲି ବନର ଶୋଭା ସନ୍ଦର୍ଶନ କରିବାକୁ ଲାଗିଲେ । ସେହି ବନରେ ଷଟ୍‌ପଦ ଭ୍ରମରଗଣ ମଧୁର ସ୍ୱରରେ ଗୁଞ୍ଜନ କରୁଥିଲେ । ମୃଗଗଣ ଇତସ୍ତତଃ ଦୌଡ଼ାଦୌଡ଼ି କରୁଥିଲେ । ପକ୍ଷୀଗଣ ଗଛର ଏ ଡାଳରୁ ସେ ଡାଳକୁ ଡେଇଁ କଳରବ କରୁଥିଲେ । ସ୍ଥାନେ ସ୍ଥାନେ ସ୍ୱଚ୍ଛ ମରକତମଣି ସଦୃଶ ନିର୍ମଳ ଜଳପୂର୍ଣ୍ଣ ସରୋବର ଥିଲା । ସେଥିରେ ଅଜସ୍ର କମଳ ଫୁଟିଥିଲା । ସେହି କମଳର ଗନ୍ଧ ବହନ କରି ଗନ୍ଧବହ ସ୍ୱଚ୍ଛନ୍ଦରେ ପ୍ରବାହିତ ହେଉଥିଲା । ଏହିପରି ସୁଖଦ, ଶୀତଳ, ସୁଗନ୍ଧଯୁକ୍ତ ସୁନ୍ଦର ବନକୁ ଦେଖି ଭଗବାନ ସେଇଠି କ୍ରୀଡ଼ା କରିବା ପାଇଁ ସ୍ଥିର କଲେ ।"

ଭଗବାନ ଯେଉଁ ଯେଉଁ ବୃକ୍ଷ ଲତା ସ୍ପର୍ଶ କରି ଚାଲିଯାଉଥିଲେ, ସେଥିରୁ ପୁଷ୍ପବୃଷ୍ଟି ହେଉଥିଲା । ସେଥିରୁ ବୃକ୍ଷଲତାଗଣ ଶ୍ରୀକୃଷ୍ଣଙ୍କ ପାଦ ଚୁମ୍ବନ କଲା ପରି ମନେ ହେଉଥିଲା । ଯତେ ଯେପରି ସେମାନେ ଶ୍ରଦ୍ଧାର ଫୁଲ ଅର୍ପଣ କରୁଥିଲେ । ନବ ପଲ୍ଲବରେ ଅରୁଣକାନ୍ତି ଧାରଣ କରିଥିବା ବୃକ୍ଷଲତାଗୁଡ଼ିକ ଫଳ ପୁଷ୍ପ ଭାରରେ ନମ୍ର ହୋଇ ଯତେ ଯେପରି ଶ୍ରୀକୃଷ୍ଣଙ୍କୁ ପ୍ରଣାମ କରି ନଥିଲେ । ବୃକ୍ଷ ଲତାଗୁଡ଼ିକର ଏହି ଶୋଭା ଦେଖି ମାଧବ ଖୁସି ହେଲେ ଏବଂ ବଳଦେବଙ୍କ କାନରେ ଚୁପ୍ ଚୁପ୍ କିଛି କହିଲେ । କାହିଁକି କହିଲେ ? ତା'ର କାରଣ ହେଉଛି, ପ୍ରେମରେ କିଛି ନ କହି ନୀରବରେ ରହିହେବ ନାହିଁ ।

ଭଗବାନ କହିଲେ—"ଭାଇ ! ତୁମେ ଫଳ ଭାରରେ ନଇଁ ପଡ଼ିଥିବା ଏହି ଗଛଗୁଡ଼ିକୁ ଦେଖିଲ ତ ? କେଉଁ ପାପ କରିଥିବା ହେତୁ ଏମାନେ ପାଦପ ଯୋନିରେ ଜନ୍ମ ହୋଇଛନ୍ତି। ନିଜ ପାପ ପଙ୍କର ପ୍ରକ୍ଷାଳନ ପାଇଁ ଏମାନେ ଆପଣଙ୍କ ପାଦପଦ୍ମରେ ପୁଷ୍ପ ସମର୍ପଣ କରି ପ୍ରେମ ପାଇଁ ପ୍ରାର୍ଥନା କରୁଛନ୍ତି । ଏମାନଙ୍କର ଫଳପୁଷ୍ପ ଭାରରେ ଆନତ ଶାଖା ବାହୁ ପରି ମନେ ହେଉଛି । ସେଥିରେ ଥିବା ପତ୍ର, ପୁଷ୍ପ ଓ ଫଳ ପ୍ରଭୃତି ପୂଜା ସାମଗ୍ରୀ ଧରି ଆପଣଙ୍କୁ ପୂଜା କରିବା ପାଇଁ ସେମାନେ ଉତ୍ସୁକ ଥିବାର ମନେ ହେଉଛି ।"

ଦେଖନ୍ତୁ, ଏହି ଭ୍ରମରଗଣ ଆପଣଙ୍କ ସୁନ୍ଦର ସ୍ୱରୂପକୁ ଦେଖି ଜାଣିପାରିଛନ୍ତି ଯେ, ଆପଣ ହେଉଛନ୍ତି ଆଦିପୁରୁଷ । ସେମାନେ ଗୁଣୁ ଗୁଣୁ ସ୍ୱରରେ ଶ୍ରଦ୍ଧାର ସହିତ ଆପଣଙ୍କର ତ୍ରୈଲୋକ୍ୟ ପାବନ ସୁଯଶ ଗାନ କରୁଛନ୍ତି । ମୋର ମନେହୁଏ ସେମାନେ ବାସ୍ତବରେ ଭ୍ରମର ନୁହନ୍ତି, ସେମାନେ ହେଉଛନ୍ତି ଶ୍ରଦ୍ଧା ଭକ୍ତିଯୁକ୍ତ ଆପଣଙ୍କର ପ୍ରମୁଖ ଭାବୁକ ଭକ୍ତ । ଆପଣ ଗୋପନରେ ବନରେ ବିଚରଣ କରୁଛନ୍ତି ବୋଲି ନିଜ ଅନୁଭବରେ ଜାଣିପାରି ଭ୍ରମର ରୂପରେ ଏଠାରେ ବି ଆପଣଙ୍କୁ ଅନୁସରଣ କରୁଛନ୍ତି । ଆପଣଙ୍କର ଯଶୋଗାନ କରି ନିଜର ବାଣୀକୁ ପବିତ୍ର କରୁଛନ୍ତି ଏବଂ ନେତ୍ରରେ ଆପଣଙ୍କୁ ଦର୍ଶନ କରି ଜୀବନକୁ ସାଫଲ୍ୟମଣ୍ଡିତ କରୁଛନ୍ତି ।

ବିଚିତ୍ର ରଙ୍ଗର ବଡ଼ ବଡ଼ ପୁଚ୍ଛ ଥିବା ମୟୂରକୁ ଦେଖନ୍ତୁ, ଉତ୍ତମ ଗୃହସ୍ଥ ଘରକୁ ଯଦି କେହି ଭଗବଦ୍‌ଭକ୍ତ ଆସେ, ଗୃହସ୍ଥ ଶରୀର ରୋମାଞ୍ଚିତ ହୋଇଯାଏ ଏବଂ ଆନନ୍ଦର ଆବେଗରେ ସେ ନାଚିଉଠେ । ସେହିପରି ଏହି ମୟୂର ଆପଣଙ୍କ ଭଳି ଅଲୌକିକ ଅଦ୍‌ଭୁତ ଅତିଥିଙ୍କୁ ପାଇ ଆନନ୍ଦ ବିଭୋର ହୋଇ ପକ୍ଷ ମେଲାଇ ନାଚୁଛି । ଏହି ମୃଗଗୁଡ଼ିକ ମଧ୍ୟ ଅନୁରାଗ ରସପୂର୍ଣ୍ଣ ନୟନରେ ଉତ୍ସୁକ ହୋଇ ଆପଣଙ୍କୁ ଚାହିଁ ରହିଛନ୍ତି ଠିକ୍ ଯେପରି ବ୍ରଜାଙ୍ଗନାମାନେ ସନ୍ଧ୍ୟା ସମୟରେ ବିଶ୍ୱମୋହନ, ଅନୁପମ ଆନନ ଆପଣଙ୍କୁ ଚାହିଁ ରହନ୍ତି । ଏହି ହରିଣୀଗଣ ପ୍ରେମପୂର୍ଣ୍ଣ କଟାକ୍ଷରେ ଚାହିଁ ଆପଣଙ୍କ ଅନ୍ତରର ଅନୁରାଗକୁ ଉଦ୍‌ଭାସିତ କରୁଛନ୍ତି । ଆମ୍ର ମଞ୍ଜରୀ ଉପରେ ବସିଥିବା କୋକିଳ କୁହୁ କୁହୁ ତାନରେ ଦଶଦିଗକୁ ମୁଖରିତ କରି ଆପଣଙ୍କର ସ୍ୱାଗତ ବନ୍ଦନା ଗାନ କରୁଛି ।

ବନବାସୀ ଏହି ପଶୁପକ୍ଷୀ ଓ ସତ୍ପୁରୁଷଙ୍କ ମଧ୍ୟରେ କୌଣସି ପାର୍ଥକ୍ୟ ମୁଁ ଲକ୍ଷ୍ୟ କରିପାରୁ ନାହିଁ । କାରଣ ସତ୍ପୁରୁଷମାନେ ଘରକୁ ଆସିଥିବା ମହାପୁରୁଷ ତଥା ପୂଜନୀୟ ବ୍ୟକ୍ତିଙ୍କଠାରେ ନିଜର ସର୍ବସ୍ୱ ଅର୍ପଣ କରି ଦିଅନ୍ତି । ସେହି ଅବସ୍ଥା ମୁଁ ବୃନ୍ଦାବନର ପଶୁପକ୍ଷୀଙ୍କଠାରେ ଲକ୍ଷ୍ୟ କରୁଛି । ଆଜି ଆପଣଙ୍କ ବିଶ୍ୱବନ୍ଦିତ ଚରଣ ରଜର ସ୍ପର୍ଶ ଲାଭ କରି ବ୍ରଜପୁରର ଏହି ବୃକ୍ଷଲତା, ପଶୁ ପକ୍ଷୀ ଓ ଏଠାର ପବିତ୍ର ଭୂମି ଅଧିକରୁ ଅଧିକ ପବିତ୍ର ହୋଇଛି । ଏ ସ୍ଥାନର ଭାଗ୍ୟବାନ୍ ବୃକ୍ଷ, ସୌଭାଗ୍ୟଶାଳିନୀ ଲତା ଓ ଅନ୍ୟାନ୍ୟ ଶ୍ରେଷ୍ଠ ଶ୍ରେଷ୍ଠ ପାଦପ ଧନ୍ୟ ହୋଇଛନ୍ତି, ଏମାନଙ୍କର ଜନ୍ମ ଓ ଜୀବନ ସଫଳ ହୋଇଛି । ଆପଣ ସେମାନଙ୍କର ପୁଷ୍ପ ତୋଳିବାବେଳେ ନଖ ସ୍ପର୍ଶରେ ସେମାନେ ପ୍ରେମାଞ୍ଚିତ ହେଉଛନ୍ତି । ଆପଣ ଚାହିଁବାମାତ୍ରେ ବ୍ରଜପୁରର ନଦୀ, ଗୋବର୍ଦ୍ଧନ ଆଦି ପର୍ବତ, ମୃଗ, ବରାହାଦି ପଶୁ, ଶୁକ, ପିକ, ମୟୂର, ପାରାବତ ଆଦି ପକ୍ଷୀ ଧନ୍ୟ ହେଉଛନ୍ତି ।

ହେ ଅନଘ ! ଆଦି ପୁରୁଷ ! ସ୍ତୁତ୍ୟ ! ମୁଁ ଏହି ବ୍ରଜାଙ୍ଗନାମାନଙ୍କ ଭାଗ୍ୟକୁ ଭୂରି ଭୂରି ପ୍ରଶଂସା କରୁଛି । ଆପଣଙ୍କର ଦୁଇ ବିଶାଳ ବାହୁର ମଧ୍ୟ ଭାଗରେ ଅର୍ଥାତ୍ ଆପଣଙ୍କ ବିଶାଳ ବକ୍ଷସ୍ଥଳର ଆଲିଙ୍ଗନ ନିମିତ୍ତ ତ୍ରୈଲୋକ୍ୟପୂଜିତା ଲକ୍ଷ୍ମୀ ମଧ୍ୟ ସର୍ବଦା ଲାଳାୟିତ ହୁଅନ୍ତି । ଆପଣଙ୍କର ସେହି ବକ୍ଷସ୍ଥଳକୁ ନିଜ ବକ୍ଷୋଦେଶରେ ଚାପି ଧରି ଏହି ଗାଭିଳୀ ଗହୁଡ଼ୁଣୀମାନେ ଯେଉଁ ଆନନ୍ଦ ପାଇଛନ୍ତି ତାହା ସଂସାରର କୌଣସି ସୌଭାଗ୍ୟଶାଳୀ ପକ୍ଷରେ ଆଦୌ ସମ୍ଭବ ନୁହେଁ । ଆପଣଙ୍କର ପ୍ରେମାଲିଙ୍ଗନକୁ ଉମା, ରମା, ବ୍ରହ୍ମାଣୀ ଲାଭ କରି ନ ଥିବାସ୍ଥଳେ ବ୍ରଜବନିତାଗଣ ବାତ୍ସଲ୍ୟ ଭାବରେ ଓ ମଧୁରଭାବରେ ସହଜରେ ପାଇପାରିଛନ୍ତି ।

ମହର୍ଷି ସୂତ କହିଲେ—"ହେ ମୁନିଗଣ ! ଭଗବାନ ବଳଦେବଙ୍କୁ ଉପଲକ୍ଷ୍ୟ କରି ନିଜର ମହିମା ହିଁ ଗାନ କଲେ । ନିଜ ସାନଭାଇ ମୁହଁରୁ ନିଜର ପ୍ରଶଂସା ଶୁଣି ମନେ ମନେ ବ୍ରହ୍ମା ଭକ୍ତ ପୋଷଣ କରିବା ସଙ୍ଗେ ସଙ୍ଗେ ପ୍ରକାଶ୍ୟରେ ହସି ହସି ବଳଦେବ ଶ୍ରୀକୃଷ୍ଣଙ୍କୁ ଆଲିଙ୍ଗନ କଲେ । ଶ୍ରୀରାମକୃଷ୍ଣ ଗୋପାଳ ବାଳକମାନଙ୍କ ସହିତ ଗାଈ ଚରାଇବାକୁ ଯାଇ ବଣରେ ଏହିପରି ନାନାବିଧ ଲୀଳା କରିବାକୁ ଲାଗିଲେ ।"

## ଛପ୍ପୟ

ଧନ୍ୟ ଧନ୍ୟ ତୃଣ ଗୁଳ୍ମ ଲତା ପାଦପ ହେଁ ବନକେ ।<br>
ପାୱେଁ କର ପଦ ପରସ ସଫଳ ଜୀବନ ହୀ ଇନ୍‌କେ ।।<br>
ବିଚରତ ନିରଖତ ତୁମହିଁ ଧନ୍ୟ ହେଁ ଖଗ ମୃଗ ଆଲିଙ୍ଗନ ।<br>
ସରିତା ପର୍ବତ ପୁଲିନ ଧନ୍ୟ ପାବନ ବୃନ୍ଦାବନ ।।<br>
ଲାଳାୟିତ ନିତ ଶ୍ରୀ ରହହି, ତବ ଆଲିଙ୍ଗନ ଅଙ୍ଗ ପରସ ।<br>
ବ୍ରଜ ବନିତା ବଡ଼ଭାଗିନ, ପାୱେଁ ତବ ହୁଲସି ହୁଲସି ପରସ ।।



ମୁଦ୍ରକ—କଲ୍ୟାଣୀ ପ୍ରିଣ୍ଟର୍ସ, ପିଠାପୁର, କଟକ-୧